# ଭାଗବତ କଥା

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ



Digitized by srujanika@gmail.com

# ଭାଗବତ କଥା

## ତୃତୀୟ ଖଣ୍ଡ


ଲେଖକ

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା

ଶ୍ରୀ ଅନନ୍ତ ମିଶ୍ର

ଅନୁବାଦ

ଡକ୍ଟର ଭଗବାନ ପଣ୍ଡା



ପ୍ରକାଶକ



[illegible]



*Digitized by srujanika@gmail.com*

# ଭାଗବତ କଥା

## ତୃତୀୟ ଖଣ୍ଡ

ପ୍ରକାଶକ

**ଶ୍ରୀ ଅନନ୍ତ ମିଶ୍ର**

**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର**

କଟକ : ୭୫୩୦୦୨

ପ୍ରଥମ ସଂସ୍କରଣ

ଡିସେମ୍ବର ୧୯୮୨

ପ୍ରଚ୍ଛଦ

**ଶ୍ରୀ ଅସୀତ ମୁଖାର୍ଜୀ**

ମୁଦ୍ରଣ :

**ବ୍ରଜେନ୍ଦ୍ର ପ୍ରେସ**

କଟକ

ମୂଲ୍ୟ :

ବନ୍ଧାଇ ଟ୧୨ଙ୍କା

ଅବନ୍ଧା ଟ୧୦ଙ୍କା

# BHAGABAT KATHA

## Third Part

Publisher

**Sri Anant Misra**

**Cuttack Students' Store**

Cuttack-753002

First Edition

December 1982

Printer

**Brajendra Press**

Cuttack

Price : Delux Rs. **12-00**

Populer Rs. **10-00**

*Digitized by srujanika@gmail.com*

## —ପ୍ରାକ୍‌କଥନ—

**ହେ ଦେବ ହେ ଦୟିତ ହେ ଭୁବନୈକବନ୍ଧୋ**
**ହେ କୃଷ୍ଣ ହେ ଚପଳ ହେ କରୁଣୈକସିନ୍ଧୋ ।**
**ହେ ନାଥ ହେ ରମଣ ହେ ନୟନାଭିରାମ**
**ହା ହା କଦା ନୁ ଭବିତାସି ପଦଂ ଦୃଶୋର୍ମେ ।**

ଗତବର୍ଷ ଶ୍ରାବଣ ଭାଦ୍ରବ ମାସର କଥା । ଖଣ୍ଡଗିରିର ଏଇ କୁଡ଼ିଆରେ ଆଷାଢ଼ ପୂର୍ଣ୍ଣିମା ଦିନ ବସିଥିଲି । ବର୍ଷାମାଡ଼ରେ ଏହାର ମାଟିପାଚେରୀ ଗଡ଼ି ପଡ଼ିଥିଲା । ଏହାର ଏକ କୋଣିଆ ଘେରରେ ଗୋଲାପ, ମାଳତୀ, ଯୁଈ ପ୍ରଭୃତି ଗଛ ଲଗାଇ ଦିଆ ଯାଇଥିଲା । ଦୁଇଟି ଟବରେ ତୁଳସୀ ଗଛ ଲଗା ଯାଇଥିଲା । ପଥୁରିଆ ମାଟିରେ ସେଗୁଡ଼ିକ ବଞ୍ଚିବ ବୋଲି ଆଶା ନ ଥିଲା । ଅନେକ ଏହି କାର୍ଯ୍ୟକୁ 'ଅବ୍ୟାପାରେଷୁ ବ୍ୟାପାର' ବା ନିଷ୍ଫଳ ପ୍ରୟାସ କହି କୌତୁହଳ ପ୍ରକାଶ କରିଥିଲେ; କିନ୍ତୁ ନିଶାରାଣୀର କାକରବିନ୍ଦୁ ଓ ଭଗବାନ୍ ମରୀଚିମାଳୀ ସୂର୍ଯ୍ୟଦେବଙ୍କ ଦୟାରୁ ସେହି ବାଳ ପାଦପଗୁଡ଼ିକ ଧୀରେ ଧୀରେ ବଢ଼ିବାକୁ ଆରମ୍ଭ କଲେ । ପୀତବସ୍ତ୍ରଧାରୀ, ବ୍ରହ୍ମଚାରୀବୃନ୍ଦ ଦୟାପରବଶ ହୋଇ ସ୍ନେହରେ ଏହି ବୃକ୍ଷଗୁଡ଼ିକୁ ବଢ଼ାଇଥିଲେ । କେତେ ଆଶା, ଉଲ୍ଲାସ, ଈର୍ଷା, ବିରକ୍ତି, କୁତୂହଳ ମଧ୍ୟରେ କାଳର ସ୍ରୋତ ବହିଚାଲିଲା । ମୁଁ ଖୁବ୍ ତତ୍ପରତାର ସହିତ ଏହି ଗଛଗୁଡ଼ିକୁ ଲକ୍ଷ୍ୟ କରୁଥିଲି । ଭାବୁଥିଲି ଏସବୁ ହେଉଛି ଖେଳ । ଆମେ ସମସ୍ତେ ଖେଳାଳୀ । ପିଲାମାନେ ବାଲିରେ ଉଦ୍ୟାନ, ଘର, ଦୋକାନ, ପ୍ରଭୃତି ତିଆରି କରି ନିଜ ନିଜର ବୋଲି କହି ପରସ୍ପର ମଧ୍ୟରେ କଳିଗୋଳ କରନ୍ତି । ପିଲା ହେଉଛନ୍ତି ପିଲା, ସେମାନଙ୍କ ମମତା, କଳିଗୋଳ ବା କଥାବାର୍ତ୍ତା ଉପରେ ଗୁରୁତ୍ୱ ଦେବା ଅନାବଶ୍ୟକ ।

ଦିନ ଯାଏ, ରାତି ଆସେ । ରବିବାର ହେଲେ କେତେକ ଧର୍ମପ୍ରାଣ ଲୋକ ଲୁଣ ଛାଡ଼ିଦେଇ ଥରଟିଏ ଖାଆନ୍ତି, ସୂର୍ଯ୍ୟଙ୍କ ବ୍ରତ ପାଳନ କରନ୍ତି । ସେହିପରି ସୋମବାର ଦିନ ଶିବଙ୍କ ପୂଜା କରନ୍ତି, ବେଲପତ୍ର ଖାଆନ୍ତି । ମଙ୍ଗଳବାର ହେଲେ ଜ୍ୟୋତିଷିର ପରାମର୍ଶ ଅନୁସାରେ ଲୋକ ଚଣା ଖାଏ, ମଙ୍ଗଳବ୍ରତ ପାଳନ କରେ । ସେହିପରି ବୁଧବାର ଆସେ । ବୁଧ ସୋମଙ୍କ ସୁତ ଓ ତାରାର ତନୟ । ସେ ବେଶି କିଛି କ୍ଷତି କରନ୍ତି ନାହିଁ । ତଥାପି ଜନ୍ମସ୍ଥାନରେ ଚତୁର୍ଥ, ଅଷ୍ଟମ ଓ ଦ୍ୱାଦଶରେ

Digitized by srujanika@gmail.com

ଥିଲେ ବୁଝି ଦୁଃଖ ହୁଅନ୍ତି । ପରବର୍ତ୍ତୀ ଦିନ ଗୁରୁ ବୃହସ୍ପତିଙ୍କ ଦିନ । ହଳଦି ଖାଇବେ ଓ ହଳଦିଆ ବସ୍ତୁ ଦାନ କରିବେ । ଦେବଗୁରୁ ବୃହସ୍ପତି ସର୍ବଦା ବ୍ରାହ୍ମଣମାନଙ୍କ ଉପରେ ସନ୍ତୁଷ୍ଟ ରହନ୍ତି । ବିଦ୍ୟାଦାନ କରନ୍ତି । ଗୁରୁ ବିତିଗଲେ ଶୁକ୍ରଦେବତା ଆସିଯାଆନ୍ତି । ଦେବତା ହେଲେ ବି ସେ ଦୈତ୍ୟ ଓ ଅସୁରଙ୍କ ଗୁରୁ । ଗୋଟିଏ ଆଖିରେ ଦେଖନ୍ତି । ଏକ ଆଖିଆ ଶୁକ୍ରଙ୍କ ଦୃଷ୍ଟିରେ ଯାହା ଫଳ ହୁଏ, ତାହା ସମସ୍ତେ ଜାଣନ୍ତି । ଯାତ୍ରାକାଳରେ ଯଦି ଗୁରୁ ଶୁକ୍ରଙ୍କ ଆଗରେ ପଡ଼ିଗଲେ ତେବେ ରକ୍ଷା ନାହିଁ । ତା'ପରଦିନ ପିମ୍ପୁଡ଼ି ଭଳି କାମୁଡ଼ିବାବାଲା ଶନି ଆସନ୍ତି । ଧୀରେ ଧୀରେ, ଶନୈଃ ଶନୈଃ ଆସୁଥିବାରୁ ତାଙ୍କ ନାମ ଶନୈଶ୍ଚର । ତାଙ୍କ ଦୃଷ୍ଟିରୁ ଭଗବାନ୍ ହିଁ ରକ୍ଷା କରିପାରିବେ । ପୁତ୍ରବଧୂର ଅଭିଶାପରେ ଶନୈଶ୍ଚର ସର୍ବଦା ଦୃଷ୍ଟି ତଳକୁ କରି ରହନ୍ତି । ସେହି ଅଧୋଦୃଷ୍ଟିରେ ବି ସେ ଯାହାକୁ ଦେଖିଦିଅନ୍ତି ତା'ର ଭେକାଳ ବୁଡ଼ିଲା । ଏହିପରି ଏକ ସପ୍ତାହ ବିତିଗଲା । ତିଥି ହିସାବରେ ଆଜ ସପ୍ତମୀ । ଏହିପରି ଚଉଦଦିନ ଗଲେ କୃଷ୍ଣପକ୍ଷ ଶେଷ ହୋଇଯାଏ ।

କୃଷ୍ଣପକ୍ଷ ପରେ ଶୁକ୍ଳପକ୍ଷ । ଏ ପକ୍ଷରେ ସଂସାର ଆନନ୍ଦରେ ପୂରିଯାଏ । ଶୁକ୍ଳପକ୍ଷରେ ଲୋକେ ଆନନ୍ଦମଗ୍ନ ରହନ୍ତି । ଲୋକେ ଅତ୍ୟନ୍ତ ସ୍ୱାର୍ଥପର । କୃଷ୍ଣ-ପକ୍ଷରେ ଚନ୍ଦ୍ର ସେତିକି ରହନ୍ତି, ଶୁକ୍ଳପକ୍ଷରେ ମଧ୍ୟ ସେତିକି ରହନ୍ତି; କିନ୍ତୁ, କୃଷ୍ଣପକ୍ଷରେ ଆମେ ଶୋଇଯିବା ପରେ ଚନ୍ଦ୍ର ଉଦୟ ହୁଅନ୍ତି । ତେଣୁ ଆମମାନଙ୍କ ପାଇଁ ଚନ୍ଦ୍ରଙ୍କ ଥିବା ନ ଥିବା ସମାନ । ଶୁକ୍ଳପକ୍ଷରେ ଆମେ ଶୋଇବା ପୂର୍ବରୁ ଚନ୍ଦ୍ର ଉଦୟ ହୁଅନ୍ତି । ଦୁଇପକ୍ଷ ସରିଯାଏ । ଶ୍ରାବଣ ମାସ ଶେଷ ହୁଏ । ରାକ୍ଷୀ ବନ୍ଧନ ପାଇଁ ଭାଦ୍ରପଦ ଭଉଣୀ ଆସିଲା । ମାସ ସାରା ସେ ଅଟକି ରହିଲା । ଏଗାରଟି ମାସ ରୂପ ଭାଇର ସେ ଏକମାତ୍ର ଭଉଣୀ । ସେଥିପାଇଁ ସମସ୍ତଙ୍କର ଆଦରସୋହାଗ ତା' ଉପରେ ଅଜାଡ଼ି ହୋଇ ପଡ଼େ । ଏହି ଭାଦ୍ରବ ମାସରେ ଭଗବାନ୍ ଶ୍ରୀକୃଷ୍ଣ, ବାମନ, ଗଣେଶ ଓ ଅନନ୍ତଙ୍କ ବ୍ରତ ଓ ଜନ୍ମୋତ୍ସବ ପାଳିତ ହୁଏ । ପୃଥିବୀ ଶସ୍ୟଶ୍ୟାମଳା ହୁଏ । ଷଠିଆ ଧାନ ପାଚେ । ଭାଦ୍ରପଦର ପୂର୍ଣ୍ଣିମାଠାରୁ ଶ୍ରାଦ୍ଧ ପକ୍ଷ ଆରମ୍ଭ ହୋଇଯାଏ । ଭଉଣୀକୁ ଆଲିଙ୍ଗନ କରି ଆଶ୍ୱିନ ବିଦାୟ ଦିଏ । ସାରା ଆଶ୍ୱିନମାସ ଉତ୍ସବମୁଖର ହୋଇଉଠେ । ଘର ଘର ଷୀରି ପୁରରେ ଭାସେ । ସାରା ମାସଟା ବ୍ରାହ୍ମଣମାନଙ୍କ ନିମନ୍ତ୍ରଣରେ କଟିଯାଏ । କାର୍ତ୍ତିକ ଆସେ । ଦୀପାବଳୀ, ଗୋବର୍ଦ୍ଧନ ପୂଜା, ଅନ୍ନକୂଟାଦି ଉତ୍ସବରେ କେତେବେଳେ ବିତିଯାଏ ଜଣାପଡ଼େ ନାହିଁ । ପୌଷ ପରେ ମକର ସଂକ୍ରାନ୍ତି । ମାଘମାସରେ କାକରା ଥରା ଶୀତ । ସେହି ଶୀତରେ ସୂର୍ଯ୍ୟୋଦୟ ପୂର୍ବର ଗଙ୍ଗାସ୍ନାନ । ବସନ୍ତୋତ୍ସବ ପାଳନ ମଧ୍ୟରେ ଆମ୍ବଗଛରେ ବଉଳ ଦେଖାଯାଏ ।

Digitized by srujanika@gmail.com

ଫାଲ୍‌ଗୁନ ମାସରେ ହୋଲି ଖେଳ । ଗୃହଲକ୍ଷଣ ଧରି ଏ ଉତ୍ସବ ଅନ୍ତ କାଲି ନାହିଁ । ଯାତ୍ରା ମାସ ପିଲାମାନଙ୍କ ରଙ୍ଗ ଖେଳ ଆଉ ନାହିଁ । ଗାମକୁ ମାତ୍ର ଗୋଟିଏ ଦିନରେ ଏହା ପାଳିତ ହେଉଛି । ଚୈତ୍ରରେ ନବବର୍ଷ ଉତ୍ସବ, ନବରାତ୍ରି, ରାମନବମୀ ପାଳନ ପରେ ବୈଶାଖ ଆସିଯାଏ । ମାସ ସାରା ଗଙ୍ଗାସ୍ନାନ ଜ୍ୟେଷ୍ଠ ମାସର ଦଶହରା ଦିନ ଗଙ୍ଗାସ୍ନାନ ପରେ ଆଷାଢ଼ ପୂର୍ଣ୍ଣିମା ଦିନ ଗୁରୁପୂଜା ଉତ୍ସବ । ବର୍ଷା ଆରମ୍ଭ ହୋଇଯାଏ । ଶ୍ରାବଣରେ ନାଗପଞ୍ଚମୀ, ରକ୍ଷାବନ୍ଧନ ଓ ଶ୍ରାବଣୀ ଉତ୍ସବ ସହିତ ପୂରା ବର୍ଷ ଶେଷ ହୁଏ ।

ଗୋଟିଏ ବର୍ଷରେ ଗଛଲତାଗୁଡ଼ିକ ବେଶ୍ ବଢ଼ିଯାଇଛନ୍ତି । ପପୟା ଗଛରେ ଫଳ ଧରିଛି । ବୈଜୟନ୍ତୀର ଲାଲ ଓ ଗୋଲାପୀ ଫୁଲର ଆଭା ଚାରିଆଡ଼େ ଖେଳିଯାଇଛି । ସମସ୍ତଙ୍କର ଉନ୍ନତି ହୋଇଛି; କିନ୍ତୁ ମୁଁ ହତଭାଗ୍ୟ । ମୁଁ କିଛି ଉନ୍ନତି କରିପାରି ନାହିଁ । ମୋ ହୃଦୟର ଭକ୍ତି ବୀଜରେ ଅଙ୍କୁର ଜାତ ହୋଇନି । ଶରୀର ତ ପରିବର୍ତ୍ତନଶୀଳ । ମୋର ଏ ଦେହରେ ଯେ କିଛି ପରିବର୍ତ୍ତନ ହୋଇନି ତାହା ମୁଁ କହିପାରିବି ନାହିଁ; କିନ୍ତୁ ମନ ଯେପରି ଥିଲା, ସେହିପରି ରହିଛି । ସେଥିରେ ଭଗବାନଙ୍କ ପ୍ରତି ଅନୁରାଗ ନାହିଁ କି ଭାଗବତମାନଙ୍କ ପ୍ରତି ଭକ୍ତି ନାହିଁ । ବିଷୟ ପ୍ରତି ବିରକ୍ତି ନାହିଁ କି ପ୍ରଭୁଙ୍କ ପାଦପଦ୍ମରେ ଅନୁରକ୍ତି ନାହିଁ । ପୂର୍ବଭଳି ଜୀବନର ଦୁର୍ବହ ଭାର ବହି ଚାଲିଛି । ଆହାର ଓ ନିଦ୍ରାରେ ଅମୂଲ୍ୟ ସମୟ ଅତିବାହିତ ହେଉଛି । ଜୀବନର ଆଶା ଅପୂର୍ଣ୍ଣ ହୋଇ ରହିଛି । ସ୍ୱପ୍ନରେ ସୁଦ୍ଧା ଭଗବାନ୍‌ଙ୍କ ଦର୍ଶନ ମିଳୁନାହିଁ । ଅନେକ ବନ୍ଧୁ ଭଗବତ୍ସାକ୍ଷାତ୍କାର ବିଷୟରେ ନିଜ ନିଜର ଅନୁଭବ କହନ୍ତି; କିନ୍ତୁ ସେମାନଙ୍କ କଥାରେ ମୋର ବିଶ୍ୱାସ ନାହିଁ । ପ୍ରଭୁ କେବେ ମୋତେ ଦର୍ଶନ ଦେବେ ସେ କଥା ସେ ଜାଣନ୍ତି । ସାରା ଜୀବନ ଏହିପରି କାନ୍ଦି କାନ୍ଦି କଟିଯିବ । 'ଭାଗବତ କଥା'ର ପ୍ରିୟ ପାଠକମାନଙ୍କ ସମୟ ମୁଁ ଅଯଥା ମୋ କାନ୍ଦଣା ଶୁଣାଇ ନଷ୍ଟ କରିବାକୁ ଚାହୁଁନାହିଁ । ପାଠକମାନେ ପରମ ଭାଗବତ ଓ ଭକ୍ତ । ଭକ୍ତ ପର ଦୁଃଖରେ ଦୁଃଖୀ, ପରୋପକାରୀ ଓ ସହାନୁଭୂତିଶୀଳ ହୋଇଥାନ୍ତି । ସେମାନେ ଦୟା କଲେ ସାଧନାର ହିତ ଓ ପଥଭ୍ରଷ୍ଟ ହୋଇଥିବା ମୋ ଭଳି ଲୋକଙ୍କୁ ଉଦ୍ଧାର କରିପାରିବେ । ଏହି 'ଭାଗବତ କଥା' ସହିତ ମୋ କଥା ମନେପକାଇ ଦେବାପାଇଁ ଗୁଡ଼ାଏ ଅପ୍ରାସଙ୍ଗିକ କଥା କହିଦେଲି । ବର୍ତ୍ତମାନ ପ୍ରକୃତ କଥା କହୁଛି ।

ଭାଗବତ କଥାର ପ୍ରଥମ ଖଣ୍ଡରେ ଆପଣ ଶୁଣିଥିଲେ ଯେ, ନାରଦ ବ୍ୟାସଦେବଙ୍କୁ ନିଜର ପୂର୍ବଜନ୍ମ ବୃତ୍ତାନ୍ତ କହୁଥିଲେ । ଦାସୀପୁତ୍ର ଭାବେ ସେ ସାଧୁ ସେବା କରୁଥିଲେ । ଦ୍ୱିତୀୟ ଖଣ୍ଡରେ ଦୟାଳୁ ସାଧୁମାନଙ୍କ ଦୁଃଖଦ ବିୟୋଗ, ନାରଦଙ୍କ ପୂର୍ବ ଶରୀର ଲାଭ ଓ ମହାରାଜ ପରୀକ୍ଷିତଙ୍କ ଜନ୍ମ ପର୍ଯ୍ୟନ୍ତ କାହାଣୀ

Digitized by srujanika@gmail.com

ଆପଣମାନେ ପଢ଼ିଛନ୍ତି । ପ୍ରସ୍ତୁତ 'ଭାଗବତ କଥା'ର ତୃତୀୟ ଖଣ୍ଡରେ ଧର୍ମରାଜଙ୍କ ଅଶ୍ୱମେଧ ଯଜ୍ଞାଦି କଥା ପଢ଼ିବେ । ପାଠକମାନଙ୍କ ସହିତ ଆମର ଏହି ସମ୍ବନ୍ଧ ରହି ପାରିଲେ ୫୦, ୭୦, ୧୦୦, ୨୦୦ ଯେତେ ଭାଗ ହେଲେ; ବି ଭାଗବତ କଥା ଆଦୃତ ହେବ ବୋଲି ଦୃଢ଼ ବିଶ୍ୱାସ ।

ଭାଦ୍ରପଦ କୃଷ୍ଣତୃତୀୟା
ସମ୍ବତ—୨୦୦୩
ସଂକୀର୍ତ୍ତନ ଭବନ, ପ୍ରତିଷ୍ଠାନପୁର,
ପ୍ରୟାଗ

ପାଠକମାନଙ୍କ କୃପାଭିଳାଷୀ
ପ୍ରଭୁଦତ୍ତ ବ୍ରହ୍ମଚାରୀ

Digitized by srujanika@gmail.com

# ସୂଚୀପତ୍ର



*Digitized by srujanika@gmail.com*

# ଅଶ୍ୱମେଧ ଯଜ୍ଞ ନିମିତ୍ତ ଧର୍ମରାଜଙ୍କ ବିଚାର

ଆହୂତୋ ଭଗବାନ୍ ରାଜ୍ଞା ଯାଜୟିତ୍ୱା ଦ୍ୱିଜୈର୍ନୃପମ୍ ।
ଉବାସ କତିଚନ୍ମାସାନ୍ ସୁହୃଦାଂ ପ୍ରିୟକାମ୍ୟୟା ॥
( ଭାଗବତ ୧ । ୧୨ । ୩୫ )

ଛପ୍‌ପୟ

ପରୁଷ ପରୁଷ ପ୍ରତି ପେଖି ପରୀକ୍ଷା କରେଁ ସବନ ମେଁ ।
ଗର୍ଭ ମାଁହ ଯୋ ଲଖ୍ୟୋ ତାହି ଦେଖ୍ୟୋ ଲଖହୁଁ ନରନ ମେଁ ॥
ହରି ହୟମେଧ ହିତାର୍ଥ, ହସ୍ତିନାପୁର ଫିରି ଆୟେ ।
ଦେଖତ ଦ୍ରୌପଦୀରେ ଗୋଦ ବୈଠି ହର୍ଷେ କିଲକାୟେ ॥
ବୋଲେ ବିପ୍ର ବଚନ ସୁଫଲ,
କୃଷ୍ଣ ଅଙ୍କମେ ନିରଖି ସୁତ ।
ନାମ ପରୀକ୍ଷିତ୍ ତେଁ ବିଦିତ,
ହୋଏଁଗେ ନୃପ ଅତି ଭକ୍ତିଯୁତ ॥

ଅଭିଳାଷ ପୂରଣ ନ ହେଲେ ମାନବ ଦୁଃଖୀ ହୁଏ । ଯେଉଁମାନେ ବିଷୟାସକ୍ତ ସେମାନଙ୍କର ବିଷୟ ଭୋଗ ଇଚ୍ଛା କେବେହେଲେ ପୂରଣ ହୁଏନାହିଁ, ବରଂ ବଢ଼େ; କିନ୍ତୁ ଯେଉଁମାନେ ଭଗବଦ୍‌ଭକ୍ତ ସେମାନଙ୍କର ନିଜର ଅଭିଳାଷ ବୋଲି କିଛି ନ ଥାଏ । ସେମାନେ ନିଜର ଇଚ୍ଛାକୁ ଭଗବାନ୍‌ଙ୍କଠାରେ ଅର୍ପଣ କରିଥାନ୍ତି । ଯଦି ଭଗବତ୍ ପ୍ରେରଣାରୁ କେବେ କିଛି ଇଚ୍ଛା ଜାତ ହୁଏ, ତେବେ ତାହା ଯେତେ କଠିନ ହେଲେ ବି ପୂରଣ ହୋଇଯାଏ । ଯାହାର ଇଙ୍ଗିତମାତ୍ରେ ସମଗ୍ର ଚରାଚର ସୃଷ୍ଟି ହୋଇପାରୁଛି, ତାଙ୍କ ପକ୍ଷରେ ଯଜ୍ଞାର୍ଥେ ଲୋକର ସାଧାରଣ ସମ୍ପତ୍ତି ଯୋଗାଡ଼କରିବା କ'ଣ କଠିନ କାମ ?

ମହାରାଜ ପରୀକ୍ଷିତ, ଶୁକ୍ଳପକ୍ଷରେ ଚନ୍ଦ୍ରକଳା ବଢ଼ିବା ଭଳି, ଭିତର ବାହାର ସମସ୍ତଙ୍କଠାରେ ଅତି ଶୀଘ୍ରରେ ବଢ଼ିବାକୁ ଲାଗିଲେ । ଏତେ ବଡ଼ ଅନ୍ତଃପୁରରେ ସେ ହିଁ ଏକମାତ୍ର ବାଳକ । ତେଣୁ ସବୁ ସ୍ତ୍ରୀଲୋକଙ୍କର ଆଦର

Digitized by srujanika@gmail.com

ତାଙ୍କ ଉପରେ ଅଳାଡ଼ିହୋଇ ପଡ଼ୁଥିଲା । ନୟନପିତୁଳା ଭଳି ସେ, ମା', ଆଈ, ଗୋସାଇଁ ମା, ଖୁଡ଼ୀ ଆଦିଙ୍କଦ୍ୱାରା ଅତି ଯତ୍ନରେ ବଢୁଥିଲେ । ତାଙ୍କର ଟିକିଏ କଷ୍ଟରେ ସାରା ଅନ୍ତଃପୁରରେ ଶୋକର ଛାୟା ଖେଳିଯାଉଥିଲା । ତାଙ୍କପାଇଁ ବିଭିନ୍ନ ପ୍ରକାର ଦାନଧର୍ମ କରାଯାଉଥିଲା; ପୂଜାପାଠ, ଦେବତାର୍ଚ୍ଚନ କରାଯାଉଥିଲା । କୃପଣଲୋକ ଯେପରି ନିଜର ପଇସାକୁ ଗୋଟି ଗୋଟି କରି ଗଣି ସାଇତି ରଖେ, ସେହିପରି ପରିବାରର ସମସ୍ତେ ପରୀକ୍ଷିତଙ୍କୁ ଦେଖାଶୁଣା, ଆଦର, ଯତ୍ନ ଓ ରକ୍ଷା କରୁଥିଲେ ।

ପରୀକ୍ଷିତ ପାଣ୍ଡବ ପାଞ୍ଚଭାଇଙ୍କର ପ୍ରାଣସ୍ୱରୂପ ଥିଲେ । ଅବସର ପାଇବା ମାତ୍ରେ ମହାରାଜ ଯୁଧିଷ୍ଠିର ତାଙ୍କୁ ଅନ୍ତଃପୁରକୁ ନେଇ କୋଳରେ ବସାଇ ଘଣ୍ଟା ଘଣ୍ଟା ଧରି ତା'ସହିତ ଖେଳୁଥିଲେ । ବାଳକ ପରୀକ୍ଷିତ ରାଜସଭାକୁ ଯେତେବେଳେ ଆସନ୍ତି, ସେତେବେଳେ ସେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଏକାଗ୍ରଭାବେ ନିରୀକ୍ଷଣ କରନ୍ତି । ଜନ୍ମକାଳରୁ ପରୀକ୍ଷିତଙ୍କ ଏ ପ୍ରକାର ଧ୍ୟାନଦୃଷ୍ଟିକୁ ଲକ୍ଷ୍ୟକରି ଧର୍ମରାଜ ବଡ଼ ବିସ୍ମିତ ହେଉଥିଲେ । ବାଳକ କାହିଁକି ଏପରି ସମସ୍ତଙ୍କୁ ଦେଖୁଛି, ସେ ବିଷୟରେ ଯୁଧିଷ୍ଠିର ଚିନ୍ତା କରୁଥିଲେ । ଅନ୍ତଃପୁରରେ ପରୀକ୍ଷିତ ସେହିପରି ଦେଖୁଛନ୍ତି କି ବୋଲି ପଚାରିବାରୁ ଦାସୀମାନେ କହିଥିଲେ—ଦେବ ! ଭିତରେ ସେ ଅତ୍ୟନ୍ତ ସୌମ୍ୟ ଭାବରେ ରହନ୍ତି । ନିଜର ମା'ଙ୍କୁ ମଧ୍ୟ ଆଖି ପୂରାଇ ଦେଖନ୍ତିନାହିଁ; କିନ୍ତୁ ବାହାରକୁ ଆସିବା ମାତ୍ରେ କୌଣସି ପୁରୁଷ ଲୋକ ଆଗକୁ ଆସିଗଲେ ସେ ଅତି ସାବଧାନତାର ସହିତ ନିରୀକ୍ଷଣ କରୁଥାନ୍ତି । ଏହା ଶୁଣି ଧର୍ମରାଜଙ୍କ ବିସ୍ମୟର ସୀମା ରହିଲାନାହିଁ । ପିଲାଟି କାହିଁକି ଏକାଗ୍ରଚିତ୍ତରେ ସମସ୍ତଙ୍କୁ ଲକ୍ଷ୍ୟକରୁଛି, ଏ ବିଷୟରେ ସେ ପଣ୍ଡିତ, ବ୍ରାହ୍ମଣ, ଜ୍ୟୋତିର୍ବିଦ୍, ରାଜଗୁରୁ ଓ ପୁରୋହିତଙ୍କୁ ପଚାରିଲେ । ବ୍ରାହ୍ମଣ ପଣ୍ଡିତମାନେ କହିଲେ, "ମହାରାଜ୍ ! ସେ କାହାକୁ ଖୋଜୁଛନ୍ତି । ଧର୍ମରାଜ କହିଲେ—କାହାକୁ ଖୋଜୁଛି ? ନିଜ ବାପକୁ ଖୋଜୁଅଛି ନା କୌଣସି ଦେବତା ବା ଋଷିଙ୍କୁ ଖୋଜୁଛି ?"

ଧର୍ମରାଜଙ୍କ ପ୍ରଶ୍ନର ଉତ୍ତର ଦେଇ ବ୍ରାହ୍ମଣମାନେ କହିଲେ, ମହାରାଜ ! ପରୀକ୍ଷିତ ନିଜ ବାପାଙ୍କୁ ତ ଆଦୌ ଦେଖିନାହାନ୍ତି । ସେ ନିଶ୍ଚିତଭାବେ ଗର୍ଭସ୍ଥ ଅବସ୍ଥାରେ କାହାକୁ ଦେଖିଛନ୍ତି । ଲୋକମାନଙ୍କ ମଧ୍ୟରେ ସେହି ପୁରୁଷଙ୍କୁ ସେ ଖୋଜୁଛନ୍ତି । ସେ କିଏ, ଯିଏ ତାଙ୍କୁ ଗର୍ଭରେ ସୁରକ୍ଷିତ ରଖିଥିଲେ । ପୁରୁଷ-ମାନଙ୍କ ମଧ୍ୟରେ ତାଙ୍କୁ ନ ପାଇ ପରୀକ୍ଷିତ ନବାଗତମାନଙ୍କଠାରେ ତାଙ୍କୁ ହିଁ ଅନୁସନ୍ଧାନ କରୁଛନ୍ତି । ସମସ୍ତଙ୍କୁ ପରୀକ୍ଷା କରୁଥିବାରୁ ତାଙ୍କର ପରୀକ୍ଷିତ ନାମ ସାର୍ଥକ ହୋଇଛି । ତାଙ୍କର ଅନ୍ୟ ନାମ "ବିଷ୍ଣୁରାତ", ଖୁବ୍ କମ୍ ଲୋକ ଜାଣନ୍ତି; କିନ୍ତୁ ସମସ୍ତଙ୍କ ଜିଭ ଅଗରେ ପରୀକ୍ଷିତ ନାମଟି ରହିଛି । ଧର୍ମରାଜ ଏହା ଶୁଣି

Digitized by srujanika@gmail.com

ଆଶ୍ଚର୍ଯ୍ୟ ହୋଇଗଲେ । ସେ ଶିଶୁ ରାଜକୁ ପରୀକ୍ଷିତ ନାମରେ ସମ୍ବୋଧନ କଲେ । ସେହିଦିନଠାରୁ ସେ ସର୍ବତ୍ର ପରୀକ୍ଷିତ ନାମରେ ପ୍ରସିଦ୍ଧ ହେଲେ ।

ଶତ୍ରୁ ସଂହାର ହେଲେ । ହୃତରାଜ୍ୟ ପୁନଃ ପ୍ରାପ୍ତହେଲା । ପୃଥିବୀର ସମସ୍ତ ରାଜା ଅଧୀନତା ସ୍ୱୀକାର କଲେ । ବଂଶବୃଦ୍ଧିସୂଚକ ନାତିଟିଏ ମଧ୍ୟ ଜନ୍ମ ହେଲା । ଏହାପରେ ଧର୍ମରାଜ ଚିନ୍ତାକଲେ—"ଆମ୍ଭେମାନେ ବଂଶ ନାଶ କଲୁଁ । ବନ୍ଧୁ ଓ ସ୍ୱଜନଙ୍କୁ ହତ୍ୟା କଲୁ । ଜାତିଦ୍ରୋହ ପାପ ଅର୍ଜ୍ଜନକଲୁ । ଏ ସବୁର ପ୍ରାୟଶ୍ଚିତ୍ତ କରିବା ଆବଶ୍ୟକ ।" ଏହା ଭାବି ଯୁଧିଷ୍ଠିର ବ୍ୟାସ, ଧୌମ୍ୟ, କୃପାଚାର୍ଯ୍ୟ ଆଦି କୁଳ ପୁରୋହିତମାନଙ୍କୁ ଓ ଅନ୍ୟାନ୍ୟ ଜ୍ଞାନୀ, ଧ୍ୟାନୀ, ବେଦଜ୍ଞ ବ୍ରାହ୍ମଣଙ୍କୁ ଡକାଇ ନିଜର ମନୋଭାବ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଜାତିଦ୍ରୋହ ପାପରୁ ମୁକ୍ତପାଇବା ନିମିତ୍ତ କି ପ୍ରକାର ପ୍ରାୟଶ୍ଚିତ୍ତ କରିବା ଉଚିତ ବୋଲି ପଚାରିଥିଲେ ।

ବ୍ରାହ୍ମଣମାନେ କହିଲେ—"ରାଜନ୍ ! ଯୁଦ୍ଧରେ ଶସ୍ତ୍ରଧାରଣପୂର୍ବକ ନିଜ ଇଚ୍ଛାରେ ଲଢ଼େଇ କରିବାକୁ ଆସିଥିବା ଶତ୍ରୁଙ୍କୁ ହତ୍ୟା କରିବାରେ କୌଣସି ପାପ ହୁଏନାହିଁ । ତଥାପି ଯୁଦ୍ଧହେତୁ ଅନେକ ପ୍ରକାର ପାତକ ଓ ଉପପାତକ ହୋଇଥାଏ । ଯୁଦ୍ଧପରେ ସେ ସମସ୍ତ ପାପରୁ ମୁକ୍ତପାଇବା ନିମିତ୍ତ ରାଜା ଅଶ୍ୱମେଧ ଯଜ୍ଞ କରିବା ଉଚିତ । ଆପଣ ମଧ୍ୟ ଅଶ୍ୱମେଧ ଯଜ୍ଞ କରି ଯୁଦ୍ଧଜନିତ ପାପରୁ ମୁକ୍ତ ଲାଭକରି ନିଷ୍ପାପ ହୁଅନ୍ତୁ । ବାସ୍ତବତଃ ଆପଣ ଏବେ ବି ନିର୍ଦ୍ଦୋଷ ଅଛନ୍ତି । ତଥାପି ଲୋକସଂଗ୍ରହ ଓ ଧର୍ମର ମର୍ଯ୍ୟାଦା ପ୍ରତିଷ୍ଠା ନିମିତ୍ତ ଆପଣ ଯେଉଁ କାର୍ଯ୍ୟ ଭଲ ମନେକରୁଛନ୍ତି ତାହା କରନ୍ତୁ ।"

ଧର୍ମରାଜ ଦୁଃଖର ସହିତ କହିଲେ—"ହେ ପଣ୍ଡିତଗଣ ! ଅନ୍ୟାନ୍ୟ ରାଜାମାନଙ୍କ ତୁଳନାରେ ମୋର ପାପ ଅଧିକ । ମୁଁ ତିନୋଟି ବଡ଼ ପାପକାର୍ଯ୍ୟ କରିଛି । ପ୍ରଥମେ ନିଜର ବନ୍ଧୁବାନ୍ଧବ ଓ ଭାଇ, କୁଟୁମ୍ବଙ୍କୁ ହତ୍ୟାକରିଛି । ଦ୍ୱିତୀୟରେ, ଅବଧ ଓ ପୂଜ୍ୟ ଭୀଷ୍ମ, ଦ୍ରୋଣ ଆଦି ଗୁରୁଜନଙ୍କ ପ୍ରାଣ ସଂହାର କରିଛି । ତୃତୀୟରେ, ସମ୍ମାନନୀୟ ହଜାର ହଜାର ଧର୍ମାତ୍ମା ନୃପତିଙ୍କୁ ବଧକରିଛି । ବ୍ରହ୍ମହତ୍ୟା, ଗୁରୁହତ୍ୟା ଓ ରାଜବଧ ଏଭଳି ତିନୋଟି ମହାପାପ ମୋଦ୍ୱାରା ସମ୍ପନ୍ନ ହୋଇଛି । ତେଣୁ ମୋର ତିନୋଟି ଅଶ୍ୱମେଧ ଯଜ୍ଞ କରିବା ଉଚିତ ।" ମହାରାଜାଙ୍କ ବକ୍ତବ୍ୟ ଶୁଣି ସମସ୍ତେ ଏକସ୍ୱରରେ ତାଙ୍କର ପ୍ରଶଂସା ଗାନକଲେ । ଅତ୍ୟନ୍ତ ପ୍ରସନ୍ନହୋଇ ବ୍ରାହ୍ମଣମାନେ କହିଲେ, "ଏହା ହିଁ ମହାରାଜାଙ୍କ ଅନୁରୂପ ବଚନ । ସ୍ୱୟଂ ଧର୍ମରାଜ ନିଷ୍ପାପ ଶରୀର । ନିଷ୍ପାପର ପାପମୁକ୍ତ ପ୍ରଶ୍ନ ଉଠେନା; କିନ୍ତୁ ତିନୋଟି ଯଜ୍ଞଦ୍ୱାରା ଧର୍ମରାଜଙ୍କ ପରି ସମଗ୍ର ପୃଥିବୀରେ ଧର୍ମ ଅଧିକରୁ ଅଧିକ ବିସ୍ତୃତ ଲାଭକରିବ । ଆପଣଙ୍କ ଯଜ୍ଞ ଯଥାବିଧି ସମ୍ପାଦନ କରିବାରେ

Digitized by srujanika@gmail.com

ଆମ୍ଭେମାନେ ସର୍ବବିଧ ସାହାଯ୍ୟ କରିବୁ । ସମସ୍ତ ଯଜ୍ଞର ଅଧିପତି ଭଗବାନ୍ ବାସୁଦେବଙ୍କୁ ଡକାଇ ଏ ବିଷୟରେ ଆଲୋଚନା କରିବା ଉଚିତ । ସମସ୍ତ ପ୍ରକାର ଯଜ୍ଞ ତାଙ୍କରି ପ୍ରସନ୍ନତା ନିମିତ୍ତ ଅନୁଷ୍ଠିତ ହୁଏ । ତାଙ୍କର ସ୍ୱାଗତଦ୍ୱାରା ଯଜ୍ଞର ସର୍ବଶ୍ରେଷ୍ଠ ସିଦ୍ଧି ମିଳେ । ସେ ଆସିଗଲେ ଯଜ୍ଞକାର୍ଯ୍ୟ ପୂର୍ଣ୍ଣ ହେଲା ବୋଲି ବୁଝିବାକୁ ହେବ ।”

ବ୍ରାହ୍ମଣମାନଙ୍କ ଆଦେଶ ଅନୁସାରେ ଧର୍ମରାଜ ଯୁଧିଷ୍ଠିର ଦ୍ୱାରକାରୁ ସଦ୍ୟ ଫେରିଆସିଥିବା ଅର୍ଜୁନଙ୍କୁ ପୁରୋହିତ ଧୌମ୍ୟଙ୍କ ସହିତ ଶ୍ରୀକୃଷ୍ଣଙ୍କୁ ନେଇ ଆସିବା ନିମିତ୍ତ ପୁଣି ଦ୍ୱାରକାକୁ ପଠାଇଲେ । ଧର୍ମରାଜଙ୍କ ଆଦେଶ ପାଇ ଭଗବାନ୍ ବାସୁଦେବ ନିଜର ବନ୍ଧୁବାନ୍ଧବଙ୍କ ସହିତ ହସ୍ତିନାପୁରରେ ଆସି ପହଞ୍ଚିଲେ । ସମଗ୍ର ହସ୍ତିନାରେ ଆନନ୍ଦର ଲହରୀ ଖେଳିଗଲା । ସମସ୍ତେ ଶ୍ରୀକୃଷ୍ଣଙ୍କ ଦର୍ଶନପାଇଁ ଅତ୍ୟଧିକ ଉତ୍କଣ୍ଠିତ ହୋଇପଡ଼ିଲେ । ଖୁବ୍ ଆଡ଼ମ୍ବର ସହକାରେ ଧର୍ମରାଜ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ସ୍ୱାଗତ ଜଣାଇ ରାଜସଭାକୁ ପାଛୋଟି ନେଇଆସିଲେ । ସେଠାରେ ପୁରୋହିତଗଣ ପାଦ୍ୟ ଅର୍ଘ୍ୟ ଦେଇ ଯଥାବିଧି ଶ୍ରୀକୃଷ୍ଣଙ୍କୁ ପୂଜାକଲେ । ଧର୍ମରାଜ କୁଶଳପୃଚ୍ଛା କରିବା ପରେ ଭଗବାନ୍ ଧର୍ମରାଜଙ୍କ ରାଜକୋଷ, ମନ୍ତ୍ରୀ, ପୁରୋହିତ, ଅନ୍ତଃପୁର, ସେନା, ନଗର ଆଦିର ଭଲମନ୍ଦ ପଚାରି ବୁଝିଥିଲେ । ଏହି ସମୟରେ ସହଦେବ ବାଳକ ପରୀକ୍ଷିତଙ୍କୁ କାଖରେ ଧରି ସଭାରେ ପହଞ୍ଚିଲେ । ଶ୍ରୀକୃଷ୍ଣଙ୍କୁ ଦେଖିବାମାତ୍ରେ ଛୋଟ ହେଲେ ବି ପରୀକ୍ଷିତ ସହଦେବଙ୍କ କାଖରୁ ଡେଇଁପଡ଼ିବାକୁ ଚେଷ୍ଟାକଲେ । ସହଦେବ ଯେତେ ଚେଷ୍ଟାକଲେ ବି ବାଳକକୁ ଅଟକାଇ ପାରୁ ନ ଥାନ୍ତି । ପରୀକ୍ଷିତଙ୍କ ଜିଦ୍ ଦେଖି ଧର୍ମରାଜ କହିଲେ, “ସହଦେବ ! ପିଲାଟାକୁ ଛାଡ଼ିଦିଅ, ସେ କ’ଣ କରୁଛି ଦେଖିବା । ଧର୍ମରାଜଙ୍କ ଆଦେଶ ପାଇ ସହଦେବ ପରୀକ୍ଷିତଙ୍କୁ ତଳେ ଛାଡ଼ିଦେଲେ । ସେ ଅତିବେଗରେ ହାମୁଡ଼େଇ ହାମୁଡ଼େଇ ଶ୍ରୀକୃଷ୍ଣଙ୍କ ଆଡ଼କୁ ଗଲେ । ସିଂହାସନ ପାଖରେ ପହଞ୍ଚି ଶ୍ରୀକୃଷ୍ଣଙ୍କ ଗୋଡ଼ ଧରି ତାଙ୍କ କୋଳରେ ଯାଇ ବସିପଡ଼ି ଭଗବାନଙ୍କ ମୁହଁକୁ ବଲବଲ କରି ଚାହିଁରହିଲେ । ବାଳକର ଏ ପ୍ରକାର କାର୍ଯ୍ୟକୁ ସମସ୍ତେ ଅତି କୌତୂହଳରେ ଲକ୍ଷ୍ୟ କରିଥାନ୍ତି । ପୁଣି ଭଗବାନ୍‌ଙ୍କ ହାତକୁ ଚାହିଁ ବାଳକର ମୁହଁରେ ଆଶ୍ଚର୍ଯ୍ୟଭାବ ଫୁଟିଉଠୁଥାଏ । ଏ ବିଷୟରେ ଧର୍ମରାଜ ପଚାରିବାରୁ ବ୍ୟାସ ଉତ୍ତରଦେଲେ, ପିଲାଟା ଗର୍ଭରେ ଥିବାବେଳେ ଭଗବାନ୍‌ଙ୍କୁ ଗଦାଧାରଣ କରିଥିବାର ଦେଖିଥିଲା । ବର୍ତ୍ତମାନ ମୁହଁ ଦେଖି ଚିହ୍ନି ପାରିଲା; କିନ୍ତୁ ହାତରେ ଗଦା ନ ଦେଖି ଆଶ୍ଚର୍ଯ୍ୟ ହେଉଛି । ଯଦି ଭଗବାନ୍ ଗଦା ଧାରଣ-ପୂର୍ବକ ନିଜର ଚତୁର୍ଭୁଜ ରୂପ ଦେଖାଇବେ, ତେବେ ପରୀକ୍ଷିତ ଖୁସି ହେବ । ବ୍ୟାସ ଓ ଧର୍ମରାଜଙ୍କ ଅନୁରୋଧରେ ଭଗବାନ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ

Digitized by srujanika@gmail.com

ଧାରଣପୂର୍ବକ ଦିବ୍ୟ ଚତୁର୍ଭୁଜ ରୂପ ଧାରଣ କରିବା ମାତ୍ରେ ପରୀକ୍ଷିତ ଅତି ଆନନ୍ଦରେ ତାଙ୍କୁ କୁଣ୍ଢାଇ ଧରିଲା । ଭଗବାନ ତାର ମୁଖ ଚୁମ୍ବନକରି ବହୁତ ଆଦର କଲେ ।

ଏହାପରେ ଅଶ୍ୱମେଧ ଯଜ୍ଞ ବିଷୟରେ ଆଲୋଚନା ହେଲା । ଧର୍ମରାଜ ବାସୁଦେବଙ୍କୁ ଲକ୍ଷ୍ୟକରି କହିଲେ, "ଆପଣ ଜାଣନ୍ତି, ମୁଁ ସର୍ବଶ୍ରେଷ୍ଠ ଅଶ୍ୱମେଧ ଯଜ୍ଞ କରିବାକୁ ଇଚ୍ଛୁକ । ସେ ପୁଣି ଗୋଟିଏ ନୁହେଁ, ଏକ ସମୟରେ ତିନୋଟି ଯଜ୍ଞ କରିବା ମୋର ଇଚ୍ଛା । ଯଜ୍ଞାଦି ଶୁଭକାର୍ଯ୍ୟ ନିମିତ୍ତ ରାଜାଗଣ କର ଆକାରରେ ଓ ଦଣ୍ଡ ଅର୍ଥରୂପେ ପ୍ରଜାମାନଙ୍କଠାରୁ ଧନ ଆଦାୟ କରନ୍ତି । ମୁଁ, ପ୍ରଜାମାନଙ୍କ ଉପରେ ବିଶେଷ କରଭାର ଲଦିଦେବାପାଇଁ ଚାହୁଁନାହିଁ । ଦଣ୍ଡ ଦେଇ ଅର୍ଥ ସଂଗ୍ରହ କରିବା ମୋର ଅଭିପ୍ରାୟ ନୁହେଁ । ମହାଭାରତ ଯୁଦ୍ଧରେ ସମସ୍ତେ ନିଜ ନିଜର ସମସ୍ତ ଶକ୍ତି ବିନିଯୋଗ କରିଥିବାରୁ ଅନ୍ୟ ରାଜାମାନଙ୍କଠାରୁ ମଧ୍ୟ ଅର୍ଥ ପ୍ରାପ୍ତିର ଆଶା ନାହିଁ । କୌରବମାନେ ଯୁଦ୍ଧରେ ସମସ୍ତ ରାଜକୋଷ ବ୍ୟୟ କରିଦେଇଛନ୍ତି । ବିନା ଅର୍ଥରେ ଓ ଯଜ୍ଞୋପଯୋଗୀ ଉପାଦାନ ଅଭାବରେ ଏ ଯଜ୍ଞ କିପରି କରିବି, ତାହା ହିଁ ମୋର ଚିନ୍ତାର ବିଷୟ । ଆପଣ ହିଁ ଆମର ଏକମାତ୍ର ଦ୍ରବ୍ୟ । ଆପଣ ଆସିଥିବାରୁ ଆମର ଯଜ୍ଞ ପୂର୍ଣ୍ଣହୋଇଛି ବୋଲି ମନେ କରୁଛୁ । ଆପଣ ନିଜର ଇଚ୍ଛା ଅନୁସାରେ ଯଜ୍ଞକାର୍ଯ୍ୟ ସମାଧାନ କରନ୍ତୁ । ବର୍ତ୍ତମାନ ଏ ବିଷୟରେ ମୁଁ ନିଶ୍ଚିନ୍ତ ।"

ଧର୍ମରାଜ ନୀରବ ହେବାପରେ ଭଗବାନ୍ ବାସୁଦେବ କହିଲେ—"ମହାରାଜ ! ଆପଣ ଆଦୌ ଚିନ୍ତା କରନ୍ତୁନାହିଁ । ମୁଁ ଆପଣଙ୍କର ସମସ୍ତ ଅଭିଳାଷ ପୂରଣ କରିବି ! ଆପଣ ସସାଗରା ଧରାର ଏକମାତ୍ର ପ୍ରଭୁ । ଆପଣଙ୍କର ଅଭାବ କ'ଣ ? ପାପୀରାଜାମାନଙ୍କ ପାପଭାର ହେତୁ ପୃଥିବୀ ସମସ୍ତ ରତ୍ନ ନିଜର ଗର୍ଭରେ ଲୁଚାଇ ରଖେ । ତେଣୁ ପାପୀ, ଧର୍ମହୀନ ରାଜାଗଣ ଅର୍ଥ ନିମିତ୍ତ ପରମୁଖାପେକ୍ଷୀ ହୁଅନ୍ତି । ପ୍ରଜାମାନଙ୍କ ଉପରେ କର ଉପରେ କର, ଋଣ ଭାର ଓ ବିଭିନ୍ନ ପ୍ରକାର ଦଣ୍ଡ ବ୍ୟବସ୍ଥା ଲଦି ଦିଅନ୍ତି । ତଥାପି ସେମାନଙ୍କ ଅଭାବ ମେଣ୍ଟେନାହିଁ । ଋଦ୍ଧି, ବୃଦ୍ଧି ଓ ସମୃଦ୍ଧି ଭାବନାନୁସାରୀ ହୋଇଥାଏ । ଧାର୍ମିକ ରାଜାପାଇଁ ପୃଥିବୀ କାମଧେନୁ ପାଲଟିଯାଏ ଏବଂ ନିଜର ବସୁନ୍ଧରା ନାମକୁ ସାର୍ଥକ କରିଥାଏ । ଆପଣ ଧର୍ମର ଅବତାର । ତେଣୁ ଆପଣଙ୍କୁ ଧନାଭାବ ଘଟିବ କାହିଁକି ? ପୂର୍ବେ କରନ୍ଧମ ମହାରାଜଙ୍କ ପୁତ୍ର ମରୁତ୍ତ ଥିଲେ ଜଣେ ଯଶସ୍ୱୀ ରାଜା । ସେ ଗୁରୁ ସମ୍ବର୍ତ୍ତଙ୍କ ସାହାଯ୍ୟରେ ଏପରି ଏକ ସମୃଦ୍ଧିଶାଳୀ ଯଜ୍ଞ କରିଥିଲେ ଯେ, ସେପରି ଯଜ୍ଞ ଆଜି ପର୍ଯ୍ୟନ୍ତ ପୃଥିବୀରେ ଆଉ କେହି କରିନାହାନ୍ତି; କରି ପାରିବେନାହିଁ ମଧ୍ୟ ଭବିଷ୍ୟତରେ । ସେ ଯଜ୍ଞରେ ସମସ୍ତ ଯଜ୍ଞୋପକରଣ ସୁନାରେ ତିଆରି

Digitized by srujanika@gmail.com

ହୋଇଥିଲା । ଏପରିକି ଯଜ୍ଞଶାଳା, ପ୍ରାସାଦ ଓ ଭବନ ସବୁ ସୁବର୍ଣ୍ଣମୟ ହୋଇଥିଲା । ସେ ଯଜ୍ଞରେ ରାଜା ଏତେ ସୁନା ଦାନ ଦେଇଥିଲେ ଯେ ବ୍ରାହ୍ମଣମାନେ ତାକୁ ଉଠାଇ ପାରି ନ ଥିଲେ । ସେ ସମସ୍ତ ସେଇଠାରେ ଛାଡ଼ି ବ୍ରାହ୍ମଣମାନେ ଚାଲି ଯାଇଥିଲେ । ସେଠାରେ ସେ ସମସ୍ତ ଏବେ ବି ପଡ଼ିରହିଛି । ଆପଣ ଲକ୍ଷ ଲକ୍ଷ ହାତୀ, ଓଟ ପ୍ରଭୃତିଙ୍କ ସାହାଯ୍ୟରେ ସେଠାରୁ ସୁନାତକ ନେଇ ଆସି ପାରିବେ ।"

ଧର୍ମରାଜ କହିଲେ—"ବାସୁଦେବ ! ବ୍ରାହ୍ମଣ ପରିତ୍ୟକ୍ତ ଓ ଯଜ୍ଞର ଉଦ୍‌ବୃତ୍ତ ଧନରେ ଆମର କି ଅଧିକାର ଅଛି । ସେହି ଧନରେ ଯଜ୍ଞକରିବା କ'ଣ ଠିକ୍ ହେବ ? ଭଗବାନ୍ ବୁଝାଇବାକୁ ଯାଇ ଉତ୍ତରଦେଲେ—ଆପଣ ସମଗ୍ର ପୃଥିବୀର ଏକମାତ୍ର ସମ୍ରାଟ୍ । ପୃଥିବୀରେ ଥିବା ବନ, କାନନ, ପର୍ବତ, ବୃକ୍ଷ ଓ ଧାତୁ ଉପରେ ଆପଣଙ୍କର ପୂର୍ଣ୍ଣ ଅଧିକାର ରହିଛି । ସେହି ଧନରେ ଆପଣଙ୍କର ପୂର୍ଣ୍ଣ ସ୍ୱତ୍ୱ ରହିଛି । ଆପଣ ଶିବଙ୍କ ପୂଜାକରି ନିଃଶଙ୍କଚିତ୍ତରେ ସେ ଧନ ମଗାଇ ପାରିବେ । ସେହି ଧନରେ ଆପଣ ଯଜ୍ଞର ଯାବତୀୟ ଉପାଦାନ ସଂଗ୍ରହପୂର୍ବକ ଯଜ୍ଞକାର୍ଯ୍ୟ ପୂର୍ଣ୍ଣ କରନ୍ତୁ ।"

ଧର୍ମରାଜ କହିଲେ—"ବାସୁଦେବ ! ଆପଣ ଆଦେଶ ଦେଲେ, ଯେ କୌଣସି ଅନୁଚିତ କାର୍ଯ୍ୟ ମଧ୍ୟ ଉଚିତଭାବେ ଗ୍ରହଣୀୟ । ବିଧି ଓ ନିଷେଧର ନିର୍ମାତା ହେଉଛନ୍ତି ଆପଣ । ମୁଁ ମହାରାଜ ମରୁତ୍ତଙ୍କ ଯଜ୍ଞ ଓ ତାଙ୍କର ବିପୁଳ ଧନପ୍ରାପ୍ତି ପ୍ରସଙ୍ଗ ପୂର୍ଣ୍ଣତଃ ଶୁଣିବାକୁ ଇଚ୍ଛାକରୁଛି । ସେହି ବୃତ୍ତାନ୍ତ ଶୁଣିବା ପରେ ସେଠାରୁ ଧନ ସଂଗ୍ରହ କରିଆଣି ଯଜ୍ଞାରମ୍ଭ କରିବି ।" ସତ୍ୟବତୀନନ୍ଦନ ମୁନିବର ବ୍ୟାସ ମରୁତ୍ତଙ୍କର ସମ୍ପୂର୍ଣ୍ଣ ଇତିହାସ ଶୁଣାଇବେ ବୋଲି କହି ଭଗବାନ୍ ଶ୍ରୀକୃଷ୍ଣ ନୀରବ ହୋଇଗଲେ ।

**ଯୋଡେ ରାଜା ହନେ ନୃପତି ସମ୍ବନ୍ଧୀ ସବଈ ।**
**ଜବ ହୋଓେ ହୟମେଧ ଝରି‌ଂଗେ ପାତକ ତବଈ ॥**
**ମମ ଚିନ୍ତା ତେଂ ଭଲି କହୋ କା କାଜ ସରିଂଗେ ।**
**ଓେ ହୋଓେ ସମ୍ପନ୍ନ ଜାହି ଶ୍ରୀକୃଷ୍ଣ କରିଂଗେ ॥**
**ହରି ଭକ୍ତନ କେ କାଜ ପ୍ରଭୁ,**
**କରତା ବନ କର ତେଁ କରେଁ ।**
**ଜେ ଶରଣାଗତ ହ୍ୱୈ ଗୟେ,**
**ତିନକେ ସବ ଦୁଃଖ ହରି ହରେଁ ॥**



Digitized by srujanika@gmail.com

# ଅଶ୍ୱମେଧ ଯଜ୍ଞ

ତଦଭିପ୍ରେତମାଲକ୍ଷ୍ୟ ଭ୍ରାତରୋଽଚ୍ୟୁତ ଚୋଦିତାଃ ।
ଧନଂ ପ୍ରହୀଣମାଜହ୍ରୁ ରୁଦୀଚ୍ୟାଂ ଦିଶି ଭୂରିଶଃ ॥
ତେନ ସଂଭୃତସଂଭାରୋ ଧର୍ମପୁତ୍ରୋ ଯୁଧିଷ୍ଠିରଃ ।
ବାଜିମେଧୈ ସ୍ତ୍ରିଭି ର୍ଭୀତୋ ଯଜ୍ଞୈଃ ସମଯଜଦ୍ଧରିମ୍ ॥
( ଭାଗବତ ୧-୧୨-୩୩-୩୪ )

## ଛପ୍‌ପୟ୍ୟ

କୁନ୍ତୀନନ୍ଦନ କହେ—କୃଷ୍ଣ ! କାହି ବିଧି ମଖ ହୋଓୈ ।
କୌନ କାଜ କରି କହୋ କାଳିମା କୁଳକୀ ଧୋଓୈ ॥
ଛଠେ ଅଂଶ ଅରୁ ଦଣ୍ଡ ଦ୍ରବ୍ୟ ତେ କାମ ଚଲାଓୈ ।
ଭୂମିପାଲ କୋ କିହିଁ ବେଦବ୍ରତ ବୃତ୍ତି ବତାଓୈ ॥
ହରି ବୋଲେ—ହିମଶିଖର ପୈ,
ଧନ ହେ ବିପୁଲ ମରୁତ୍ତକୋ ।
ଲାଇ କରୋ ମଖ କିହିଁତେ,
ସଦୁପଯୋଗ ହୈ ବିତ୍ତକୋ ॥

ଅସତ୍ୟଠାରୁ ସତ୍ୟ ଶ୍ରେଷ୍ଠ । ଐଶ୍ୱର୍ଯ୍ୟ ଉପଭୋଗଠାରୁ ତ୍ୟାଗ ଶ୍ରେଷ୍ଠ । କ୍ରୋଧଠାରୁ କ୍ଷମା ଶ୍ରେଷ୍ଠ । ସେହିପରି ଅଧର୍ମଠାରୁ ଧର୍ମ ଶ୍ରେଷ୍ଠ । ନିଜର ସମସ୍ତ କର୍ମକୁ ଶ୍ରୀକୃଷ୍ଣଙ୍କ ପାଦ ପଦ୍ମରେ ସମର୍ପଣ କରିବା ସର୍ବଶ୍ରେଷ୍ଠ କାର୍ଯ୍ୟ । ତା' ଠାରୁ ବଳି ସଂସାରରେ ଆଉ ଶ୍ରେଷ୍ଠ କାର୍ଯ୍ୟ କିଛି ନାହିଁ । ମହାଭାଗ ପାଣ୍ଡବମାନେ ତାହା ହିଁ କରିଥିଲେ ।

ଅଶ୍ୱମେଧ ଯଜ୍ଞ ନିମିତ୍ତ ବିପୁଳ ଧନର ଆବଶ୍ୟକତା ଥିଲା । ସାଧାରଣ ଦ୍ରବ୍ୟଦ୍ୱାରା ଏପରି ବିରାଟ ଯଜ୍ଞାନୁଷ୍ଠାନ କରିବା ସମ୍ଭବ ନୁହେଁ । ପାଣ୍ଡବମାନଙ୍କ ପାଖରେ ସେତେ ଧନ ନ ଥିଲା । ରାଜକୋଷ ଭାବେ ଯାହା କିଛି ପୂର୍ବରୁ ଥିଲା ସେ ସମସ୍ତ ଯୁଦ୍ଧରେ ହିଁ ନିଃଶେଷ ହୋଇସାରିଥିଲା । ଭଗବାନ୍ ଯେତେବେଳେ ହିମାଳୟର ଗନ୍ଧମାଦନ ଶିଖରରେ ମରୁତ୍ତଙ୍କ ଯଜ୍ଞଶେଷ ଧନ ଆଣିବାପାଇଁ ଆଦେଶ ଦେଲେ, ସେତେବେଳେ ଧର୍ମରାଜ ନିକଟରେ ଉପବିଷ୍ଟ ଥିବା ମହର୍ଷି ବ୍ୟାସଙ୍କୁ ପଚାରିଥିଲେ—"ପ୍ରଭୋ ! ମହାରାଜ ମରୁତ୍ତ କିଏ ? ସେ କିପରି ଏତେ ବଡ଼

Digitized by srujanika@gmail.com

ବିଭବଶାଳୀ ହୋଇଥିଲେ ? କେଉଁ ଉପାୟରେ ସେ ଏତେ ବିପୁଳ ଧନ ସଂଗ୍ରହ କରିଥିଲେ, ଆଉ ସେ ସମସ୍ତ ସେହି ଯଜ୍ଞସ୍ଥଳରେ କାହିଁକି ଛାଡ଼ିଯାଇଥିଲେ, ତାହା ମୋତେ ବୁଝାଇ କହନ୍ତୁ । ତା'ପରେ ମୁଁ ଭାଇମାନଙ୍କୁ ପଠାଇ ଶ୍ରୀକୃଷ୍ଣଙ୍କ ଉପଦେଶ ଅନୁସାରେ ସେ ଦ୍ରବ୍ୟସମସ୍ତ ଅଣାଇବାର ବ୍ୟବସ୍ଥା କରିବି ।" ଯୁଧିଷ୍ଠିରଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଭଗବାନ୍ ବେଦବ୍ୟାସ କହିଲେ—"ରାଜନ୍ ! ଭାଇମାନଙ୍କ ସହିତ ଆପଣ ସେହି ଯଜ୍ଞବୃତ୍ତାନ୍ତ ସାବଧାନ ହୋଇ ଶୁଣନ୍ତୁ !"

ପୂର୍ବେ କରନ୍ଧମ ନାମରେ ଜଣେ ବଡ଼ ପ୍ରତାପଶାଳୀ ରାଜା ଥିଲେ । ଆପଣଙ୍କ ପୁରୋହିତ ଧୌମ୍ୟ ଓ କୃପାଚାର୍ଯ୍ୟଙ୍କ ଭଳି ଧର୍ମାତ୍ମା କରନ୍ଧମଙ୍କର ବେଦ-ଶାସ୍ତ୍ର ପାରଙ୍ଗମ ମହାମୁନି ଅଙ୍ଗିରା ଥିଲେ ପୁରୋହିତ । ଅଙ୍ଗିରା ପୁରୋହିତଭାବେ ସେହି ରାଜାଙ୍କର ଦେବ, ଋଷି ଓ ପିତୃକାର୍ଯ୍ୟମାନ କରାଉଥିଲେ । ଅଙ୍ଗିରା ଋଷିଙ୍କର ବୃହସ୍ପତି ଓ ସମ୍ବର୍ତ୍ତ ନାମରେ ଦୁଇ ପୁଅ ଥିଲେ । ବୃହସ୍ପତିଙ୍କୁ ଦେବରାଜ ଇନ୍ଦ୍ର ନିଜର ପୁରୋହିତ ରୂପେ ବରଣକଲେ । ଦୁଇଭାଇଙ୍କ ମଧ୍ୟରେ କିଛିଟା ମନୋ-ମାଳିନ୍ୟ ଥିଲା । ଭାଇ ଭାଇ, ପିତାପୁତ୍ର, ମିତ୍ର ମିତ୍ର ଓ ଆତ୍ମୀୟସ୍ୱଜନଙ୍କ ମଧ୍ୟରେ ଯେଉଁ ମନୋମାଳିନ୍ୟ ସୃଷ୍ଟି ହୁଏ, ତାହାର ପ୍ରଧାନ କାରଣ ହେଉଛି ଐଶ୍ୱର୍ଯ୍ୟ, ଯଶ ଓ ଇନ୍ଦ୍ରିୟବିଷୟାସକ୍ତି । ଭୋଗଲାଳସା ଓ ଐଶ୍ୱର୍ଯ୍ୟରେ ମଦାନ୍ଧ ହୋଇ ମଣିଷ ନିଜର ଅତି ଆପଣାର ଲୋକକୁ ମଧ୍ୟ ତିରସ୍କାର କରିଥାଏ । ବିପ୍ରବର ସମ୍ବର୍ତ୍ତ ନିଜ ବଡ଼ଭାଇଙ୍କ ସହିତ ବିରୋଧ କରିବାକୁ ଉଚିତ ଭାବୁ ନ ଥିଲେ । ସେ ନିଜର ସର୍ବସ୍ୱ ତ୍ୟାଗକରି ବାରାଣସୀରେ ଦିଗମ୍ବର ବେଶରେ ଭଗବାନ ବିଶ୍ୱନାଥଙ୍କ ଉପାସନା କରିବାକୁ ଲାଗିଲେ ଏବଂ ସହରର ଗଳି କନ୍ଦିରେ ଉନ୍ମତ୍ତଙ୍କ ଭଳି ଘୂରି ବୁଲିଲେ ।

ବର୍ତ୍ତମାନ ଅଙ୍ଗିରାଙ୍କ ସମ୍ପତ୍ତି ଓ କୁଳ ପରମ୍ପରାଗତ ଯଜମାନ ବୃତ୍ତିର ଏକମାତ୍ର ଅଧିକାରୀ ହେଲେ ବୃହସ୍ପତି । ମହାରାଜ କରନ୍ଧମଙ୍କ ପରେ ତାଙ୍କ ପୁତ୍ର ମରୁତ୍ତ ରାଜସିଂହାସନରେ ଅଭିଷିକ୍ତ ହେଲେ । ଅଙ୍ଗିରାଙ୍କ ଭଳି ବୃହସ୍ପତି ମଧ୍ୟ ମହାରାଜ ମରୁତ୍ତଙ୍କର ଦେବଋଷି ପିତୃକାର୍ଯ୍ୟମାନ ପୁରୋହିତଭାବେ ସମ୍ପାଦନ କଲେ । ମରୁତ୍ତଙ୍କ ବଳ, ଗୁଣ ଓ ଐଶ୍ୱର୍ଯ୍ୟ ଦେଖି ଇନ୍ଦ୍ର ଈର୍ଷାନ୍ୱିତ ହୋଇପଡ଼ିଲେ । ମୁକ୍ତିମାର୍ଗରେ ଏହି ଈର୍ଷାଦୋଷ ହେଉଛି ସବୁଠାରୁ ବଡ଼ ବାଧକାରକ । ପୃଥିବୀର ସାଧାରଣ ଜୀବଙ୍କଠାରୁ ଆରମ୍ଭକରି ବ୍ରହ୍ମଲୋକ ପର୍ଯ୍ୟନ୍ତ ସର୍ବତ୍ର ଏହି ଦୋଷଥିବାର ପରିଲକ୍ଷିତ ହୁଏ । ଜଣେ ନିଜଠାରୁ ଅନ୍ୟକୁ ଶ୍ରେଷ୍ଠତର ଦେଖିଲେ ହିଁ ଈର୍ଷା କରେ । ଦୁଇଜଣ ବିଦ୍ୱାନ୍ ପରସ୍ପର ମଧ୍ୟରେ ପାଣ୍ଡିତ୍ୟର ପରାକାଷ୍ଠାକୁ ଭିତ୍ତିକରି ଈର୍ଷାନ୍ୱିତ ହୁଅନ୍ତି । ଜଣେ ଧନୀ ଅନ୍ୟ ଜଣେ ଧନୀକୁ ଦେଖି ଈର୍ଷାରେ ଜଳିଯାଏ । ସ୍ୱର୍ଗରେ ଦେବତାମାନେ ମଧ୍ୟ ପରସ୍ପର ମଧ୍ୟରେ ଦ୍ୱନ୍ଦ୍ୱ କରନ୍ତି । ସେହି ଈର୍ଷା କାରଣରୁ ଜୀବ ଭଗବତ୍ ପାଦପଦ୍ମ ପର୍ଯ୍ୟନ୍ତ

Digitized by srujanika@gmail.com

ଯାଇପାରୁନାହିଁ । ଏହି ଦୋଷଟି ଯଦି ନ ଥାନ୍ତା, ତେବେ ଜୀବ ନିତ୍ୟ, ଶୁଦ୍ଧ ଓ ମୁକ୍ତ ହୋଇପାରିଥାନ୍ତା । ଦେବରାଜ ଇନ୍ଦ୍ର ଭାବିଲେ ମୁଁ ଦେବତାମାନଙ୍କର ରାଜା । ତଥାପି ମର୍ତ୍ତ୍ୟର ରାଜା ମରୁତ୍ତଙ୍କ ଭଳି ଐଶ୍ୱର୍ଯ୍ୟ ମୋର ନାହିଁ । ଯେ କୌଣସି ଉପାୟରେ ହେଉ ପଛକେ ମରୁତ୍ତଙ୍କ ଧର୍ମକାର୍ଯ୍ୟରେ ବିଘ୍ନ ସୃଷ୍ଟି କରିବାକୁ ହେବ । ତା' ନୋହିଲେ ଦିନେ ସେ ମୋର ଏହି ଇନ୍ଦ୍ରପଦକୁ ଛଡ଼ାଇ ନେବେ ।

ଦେବରାଜ ଇନ୍ଦ୍ର ଈର୍ଷାବଶତଃ ଏହିପରି ଭାବି ନିଜଗୁରୁ ବୃହସ୍ପତିଙ୍କୁ ଡକାଇ କହିଲେ—"ହେ ଦେବଗୁରୋ ! ଆପଣ ମରୁତ୍ତଙ୍କର ଯେଉଁ ଦେବ, ଋଷି, ପିତୃ କାର୍ଯ୍ୟମାନ କରାଉଛନ୍ତି, ତାହା ଆଉ କରନ୍ତୁନାହିଁ । ତଦ୍ଦ୍ୱାରା ମୋର ଅପ୍ରତିଷ୍ଠା ବଢ଼ୁଛି । ଆପଣ ଦିବ୍ୟ ଦେବଗଣଙ୍କ ଗୁରୁ ହୋଇ ମଧ୍ୟ ମର୍ତ୍ତ୍ୟଧର୍ମା ମନୁଷ୍ୟ ଜଣକର ଧର୍ମାନୁଷ୍ଠାନ କରିବା ଠିକ୍ ନୁହେଁ । ଆପଣ ଦେବଗୁରୁ ହୋଇ ମଣିଷର ପୁରୋହିତ ବୋଲି କହିବାରେ ଅପମାନ ଅନୁଭବ କରୁନାହାନ୍ତି ? ଦେଖନ୍ତୁ ମୁଁ ଦୁଇଟି କଥା କହୁଛି, ଆପଣ ମୋର ପୁରୋହିତଭାବେ ରହିବାକୁ ଯଦି ଚାହୁଁଛନ୍ତି, ତେବେ ମରୁତ୍ତଙ୍କ ପୌରୋହିତ୍ୟ ତ୍ୟାଗକରନ୍ତୁ । ଯଦି ତାଙ୍କର ପୌରୋହିତ୍ୟ କାର୍ଯ୍ୟ ଛାଡ଼ିବାକୁ ଇଚ୍ଛା ନାହିଁ, ତେବେ ମୋଠାରୁ ବିଦାୟ ନିଅନ୍ତୁ । ଏ ଦୁଇଟି କଥାରୁ ଯାହା ଭଲ ମନେ କରୁଛନ୍ତି ତାହା କରନ୍ତୁ ।

ଇନ୍ଦ୍ରଙ୍କ କଥାରେ ବୃହସ୍ପତି ହଡ଼ବଡ଼େଇ ଗଲେ । ସେ ଭାବୁଥିଲେ ଦୁଇଆଡ଼ୁ ଲାଭ ଉଠାଇବେ ବୋଲି । କିଛି ସମୟ ସେ ନିଜର ଲାଭ କ୍ଷତି ଚିନ୍ତାରେ ବୁଡ଼ି ରହିଲେ । ଶେଷରେ ସେ ଏହି ସିଦ୍ଧାନ୍ତରେ ପହୁଞ୍ଚିଲେ ଯେ, ଦେବରାଜ ଇନ୍ଦ୍ରଙ୍କ ପୌରୋହିତ୍ୟ ମୋତେ ରଖିବାକୁ ପଡ଼ିବ ଏବଂ ମହାରାଜ ମରୁତ୍ତଙ୍କ ପୌରୋହିତ୍ୟ ଛାଡ଼ିବା ଉଚିତ ହେବ । ଏହିଭଳି ସିଦ୍ଧାନ୍ତରେ ଉପନୀତ ହୋଇ ବୃହସ୍ପତି କହିଲେ—"ଦେବରାଜ ! ଆପଣଙ୍କ ସହିତ ମରୁତ୍ତଙ୍କ ତୁଳନା ଅସମ୍ଭବ । ଆପଣ ସ୍ୱର୍ଗ ଓ ସେ ପୃଥିବୀର ରାଜା । ଆପଣ ଦେବଗଣଙ୍କ ପ୍ରଭୁ, ଆଉ ସେ ମରଣଶୀଳ ମନୁଷ୍ୟଙ୍କ ସ୍ୱାମୀ । ଆପଣ ଅଜର ଅମର ଓ ଯଜ୍ଞଭାଗ ଭୋକ୍ତା, ଆଉ ମରୁତ୍ତ ସ୍ୱୟଂ ମରଣଧର୍ମା । ତାଙ୍କପାଇଁ ମୁଁ ଆପଣଙ୍କୁ କିପରି ପରିତ୍ୟାଗ କରିବି ? ତାଙ୍କର ପୁରୋହିତଗିରି ଚଳାଇଥିବାରୁ ମୋର ଅପମାନ ହେଉଛି ନିଶ୍ଚୟ । ଲୋକେ କହୁଛନ୍ତି ଦେବରାଜ ଇନ୍ଦ୍ରଙ୍କ ପୁରୋହିତ ହୋଇ ମଧ୍ୟ ମୁଁ ମର୍ତ୍ତ୍ୟରାଜାଙ୍କର ଯଜ୍ଞାଦି କାର୍ଯ୍ୟ ଲୋଭବଶତଃ କରୁଛି ବୋଲି; କିନ୍ତୁ ସ୍ୱଭାବବଶତଃ ଓ କୁଳ ପରମ୍ପରାଗତ ବୃତ୍ତିବଶତଃ ମୁଁ ମରୁତ୍ତଙ୍କ ଧର୍ମକାର୍ଯ୍ୟ କରିଦେଉଥିଲି । ଏବେ ଆପଣ ଯେତେବେଳେ ମନା କରୁଛନ୍ତି, ସେତେବେଳେ ତାଙ୍କ କାମ ଆଉ କାହିଁକି କରିବି । ସେ ଡାକିବାକୁ ଆସିଲେ ମୁଁ ମୋର ଅସାମର୍ଥ୍ୟ ପ୍ରକାଶପୂର୍ବକ ମନାକରିଦେବି ।

Digitized by srujanika@gmail.com

ଦେବରାଜ ଇନ୍ଦ୍ର ବୃହସ୍ପତିଙ୍କ ଉତ୍ତର ଶୁଣି ଖୁସି ହୋଇଗଲେ । ଶତ୍ରୁ ବା ପ୍ରତିଦ୍ୱନ୍ଦ୍ୱୀର ପରାଭବ ଦେଖିଲେ ଲୋକ, କାହିଁକି ଯେ ଆନନ୍ଦ ଅନୁଭବ କରେ, ତାହା କହିହେବ ନାହିଁ । ଇନ୍ଦ୍ର ମନେ ମନେ ସିଦ୍ଧାନ୍ତ ନେଲେ ଯେ ଏବେ ମରୁତ୍ତଙ୍କୁ ଐଶ୍ୱର୍ଯ୍ୟଭ୍ରଷ୍ଟ କରିବା ସହଜ ହେବ; କିନ୍ତୁ କୌଣସି କଥା କେବେ ଲୁଚି ରହେନାହିଁ । ଏ ସମ୍ବାଦ ପାଇ ମରୁତ୍ତ ବିଶେଷ ମର୍ମାହତ ହେଲେ । ତାଙ୍କର ଇଚ୍ଛା ହେଲା —"ମୁଁ ଏପରି ଏକ ଯଜ୍ଞ କରିବି ଯେ ଯାହା ଆଜି ପର୍ଯ୍ୟନ୍ତ କେହି କରିନାହାନ୍ତି" —ଏହା ଭାବି ମରୁତ୍ତ କୁଳଗୁରୁ ବୃହସ୍ପତିଙ୍କ ପାଖକୁ ଯାଇ ତାଙ୍କଠାରେ ନିଜର ମନୋଭାବ ପ୍ରକାଶ କଲେ । ରାଜାଙ୍କ କଥା ଶୁଣି ବୃହସ୍ପତି କହିଲେ —"ରାଜନ୍ ! ଆପଣଙ୍କର ମଙ୍ଗଳ ହେଉ । ଆପଣ ଆଜିଠାରୁ ମୋଦ୍ୱାରା ଯଜ୍ଞାଦି କାର୍ଯ୍ୟ କରାଇବା ଆଶା ପରିତ୍ୟାଗ କରନ୍ତୁ । ମୁଁ ଏବେ ଆପଣଙ୍କୁ କୌଣସି ପ୍ରକାର ପୁଣ୍ୟକାର୍ଯ୍ୟ କରିବାରେ ସାହାଯ୍ୟ କରିପାରିବି ନାହିଁ, ଆପଣ ଅନ୍ୟ କୌଣସି ପୁରୋହିତଙ୍କଦ୍ୱାରା ନିଜ କାର୍ଯ୍ୟ କରାନ୍ତୁ ।"

ରାଜା ମରୁତ୍ତ ବିନୀତଭାବେ କହିଲେ—"ବ୍ରହ୍ମନ୍ ! ଆପଣ ଏହା କିପରି କହୁଛନ୍ତି ? ମୁଁ ଅନ୍ୟ ବ୍ରାହ୍ମଣଙ୍କଦ୍ୱାରା କିପରି ଯଜ୍ଞକାର୍ଯ୍ୟ କରିପାରିବି ? ନିଜର ସୁଯୋଗ୍ୟ କୁଳପୁରୋହିତ ଥାଉଁ ଥାଉଁ ଅନ୍ୟ ପୁରୋହିତଙ୍କଦ୍ୱାରା ପୁଣ୍ୟକାର୍ଯ୍ୟ କରିବା ମହାପାପ । ମୁଁ କିପରି ଆପଣଙ୍କୁ ଛାଡ଼ି ଅନ୍ୟଦ୍ୱାରା କାର୍ଯ୍ୟ କରିବି ?" ବୃହସ୍ପତି ଯେତେବେଳେ କହିଲେ—"ତୁମେ ତ ପରିତ୍ୟାଗ କରୁନାହିଁ, ମୁଁ ସ୍ୱେଚ୍ଛାରେ ତୁମର ପୌରୋହିତ୍ୟ ଛାଡ଼ୁଛି," ସେତେବେଳେ ରାଜା କହିଲେ— "ଯଜମାନର ଘୋର ପାପ ଦେଖିଲେ ପୁରୋହିତ ତାକୁ ପରିତ୍ୟାଗ କରନ୍ତି । ଆପଣ କେଉଁ ଅପରାଧ କାରଣରୁ ମୋତେ ପରିତ୍ୟାଗ କରୁଛନ୍ତି । ମୋର ଏଭଳି କେଉଁ ମହାପାତକ ଆପଣ ଲକ୍ଷ୍ୟ କରିଛନ୍ତି ?"

ବୃହସ୍ପତି କହିଲେ—"ରାଜନ୍ ! ଆପଣ ପରମଧର୍ମାତ୍ମା । ଆପଣଙ୍କର ଅପରାଧ ନାହିଁ । ଆପଣ କୌଣସି ପାପ କରିଥିବାରୁ ମୁଁ ପୌରୋହିତ୍ୟ ତ୍ୟାଗ କରୁନାହିଁ । ମୁଁ ଆନନ୍ଦରେ ଆପଣଙ୍କୁ ଆଦେଶ ଦେଉଛି, ଆପଣ ଅନ୍ୟ କୌଣସି ବେଦଜ୍ଞ ବ୍ରାହ୍ମଣଦ୍ୱାରା ଯଜ୍ଞକାର୍ଯ୍ୟ କରାନ୍ତୁ । ମୁଁ କିଛି ଖରାପ ଭାବିବିନାହିଁ କି ଆପଣଙ୍କ ଉପରେ ଅସନ୍ତୁଷ୍ଟ ହେବିନାହିଁ ।" ଏହା ଶୁଣି ରାଜା ଅତି ବିନୀତଭାବେ ଜଣାଇଲେ— "ଭଗବନ୍ ! ଏହା କିପରି ହେବ ? କୁଳପରମ୍ପରାକ୍ରମେ ଆମେ ଆପଣଙ୍କ ପାଦପୂଜା କରିଆସୁଛୁ । ଯଦି ଦୁର୍ଭାଗ୍ୟବଶତଃ ଯଜମାନ ଧନହୀନ, ଦରିଦ୍ର ହୋଇଯାଏ ତେବେ ସୁଯୋଗ୍ୟ ତଥା ଐଶ୍ୱର୍ଯ୍ୟଶାଳୀ ପୁରୋହିତ ତାକୁ କ'ଣ ପରିତ୍ୟାଗ କରନ୍ତି ? ସେହିପରି ପୁରୋହିତବଂଶର ଲୋକେ ବିଦ୍ୟାହୀନ ଓ ବୁଦ୍ଧିହୀନ ହୋଇଗଲେ ଯଜମାନ ତାଙ୍କୁ କ'ଣ ପରିତ୍ୟାଗ କରିପାରିବେ ? ଯେପରି ହେଉ ପଛକେ ଉଭୟଙ୍କ ସମ୍ବନ୍ଧ

Digitized by srujanika@gmail.com

କେବେହେଲେ ତୁଟେ ନାହିଁ । ତେଣୁ ମୁଁ ବର୍ତ୍ତମାନ ସୁଦ୍ଧା କୌଣସି ଅପରାଧ କରି ନାହିଁ କି ଐଶ୍ୱର୍ଯ୍ୟହୀନ ହୋଇନାହିଁ, ଆପଣଙ୍କର ସମସ୍ତ ସେବା କରିବାପାଇଁ ମୁଁ ଏବେ ମଧ୍ୟ ପ୍ରସ୍ତୁତ ରହିଛି ।''

ଗୁରୁ ବୃହସ୍ପତି ଟିକିଏ ବିରକ୍ତ ହୋଇ କହିଲେ—''ରାଜନ୍ ! ଆପଣ ଯାହା କହନ୍ତୁ ପଛକେ ମୁଁ ଦେବରାଜ ଇନ୍ଦ୍ରଙ୍କ ପୁରୋହିତ ହୋଇସାରିଛି । ତେଣୁ ଆପଣଙ୍କ ପୌରୋହିତ୍ୟ କାର୍ଯ୍ୟ କରିବାକୁ ଅସମ୍ମାନ ମନେ କରୁଛି । ସେହେତୁ ଆପଣ ମୋଦ୍ୱାରା ଯଜ୍ଞକାର୍ଯ୍ୟ କରାଇବାରେ ଆଶା ରଖନ୍ତୁନାହିଁ ।'' ଏ ପ୍ରକାର ସୁସ୍ପଷ୍ଟ ଓ ଅହଙ୍କାରପୂର୍ଣ୍ଣ ଉତ୍ତର ଶୁଣି ରାଜା ଅତ୍ୟନ୍ତ ଦୁଃଖିତ ହେଲେ । ତାଙ୍କ ଆଖିରୁ ଲୋତକଧାରା ପ୍ରବାହିତ ହେଲା । ତଥାପି ସେ ଧୈର୍ଯ୍ୟର ସହିତ ନିଜକୁ ସମ୍ଭାଳି ରଖି କହିଲେ—''ଭଗବାନ୍ ! ଆପଣ ହିଁ ଇନ୍ଦ୍ରଙ୍କ ସ୍ରଷ୍ଟା । ଇନ୍ଦ୍ର ତ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ନୁହେଁ । ଆପଣଙ୍କଦ୍ୱାରା ଶହେଟି ଯଜ୍ଞ କଲେ ଯେ କୌଣସି ବ୍ୟକ୍ତି ଇନ୍ଦ୍ରପଦର ଅଧିକାରୀ ହେବ । ମୁଁ ଆପଣଙ୍କର କୁଳପରମ୍ପରାଗତ ଯଜମାନ, ସେବକ ଓ ଆପଣଙ୍କର ଆଜ୍ଞାନୁବର୍ତ୍ତୀ । ମୋ ଉପରେ ଆପଣଙ୍କର ଓ ଆପଣଙ୍କ ଉପରେ ମୋର ଅଧିକାର ରହିଛି । ମୁଁ ମଧ୍ୟ ପଛେଇ ଯିବା ଲୋକ ନୁହେଁ । ଆପଣ ଇଚ୍ଛା ଅନୁସାରେ ମୋଦ୍ୱାରା ଶହେ ଦୁଇଶହ ଅଶ୍ୱମେଧ ଓ ରାଜସୂୟ କରାଇବାରେ ମୋର କୌଣସି ଆପତ୍ତି ନାହିଁ ।''

ବେଶି କଥାବାର୍ତ୍ତା କରିବା ଅନାବଶ୍ୟକ । ତେଣୁ ସବୁଦିନ ପାଇଁ ମୋ ଆଶା ତ୍ୟାଗ କରିବା ଉଚିତ୍ ବୋଲି ସାମାନ୍ୟ ଉତ୍ତେଜିତ ହୋଇ ବୃହସ୍ପତି କହିବାରୁ ରାଜା ଆଉ କୌଣସି ଉତ୍ତର ଦେଲେନାହିଁ । ସେ ଅତି ଦୁଃଖରେ ବୃହସ୍ପତିଙ୍କୁ ପ୍ରଣାମ ଜଣାଇ ବିଦାୟ ନେଲେ । ନିରପରାଧ ଯଜମାନଙ୍କୁ ପୁରୋହିତ ତ୍ୟାଗ କରିବାର କାରଣ କ'ଣ ବୋଲି ରାଜା ନିରନ୍ତର ଭାବିବାକୁ ଲାଗିଲେ । ଏହି ସମୟରେ ସେ ସୁମଧୁର କଣ୍ଠସ୍ୱର ଶୁଣିଲେ, —'ଶ୍ରୀକୃଷ୍ଣ ଗୋବିନ୍ଦ ହରେ ମୁରାରେ, ହେ ନାଥ ନାରାୟଣ ବାସୁଦେବ ।' ସେ ମୁହଁ ଉଠାଇ ଦେଖିଲେ, ନାରଦ ବୀଣା ବଜାଇ ଆସୁଛନ୍ତି । ସମ୍ମୁଖରେ ଦେବର୍ଷି ନାରଦଙ୍କୁ ଦେଖି ରାଜା ଶ୍ରଦ୍ଧା ଓ ଭକ୍ତିର ସହିତ ତାଙ୍କ ଚରଣ ବନ୍ଦନା କଲେ । ନାରଦ ଆଶୀର୍ବାଦ ଦେଇ ପଚାରିଲେ, 'ରାଜନ୍ ! ଆପଣ ଏତେ ଦୁଃଖିତ କାହିଁକି ? ଦୁଃଖର କାରଣ କ'ଣ ?' ରାଜା କ୍ଷୁବ୍ଧ ମନରେ ଉତ୍ତର ଦେଲେ—''ଭଗବନ୍ ! କ'ଣ କହିବ ? ମୋର ପୂର୍ବଜନ୍ମର ପାପରୁ କୁଳପୁରୋହିତ ବିନା ଅପରାଧରେ ମୋତେ ଛାଡ଼ି ଚାଲିଗଲେ ।'' ଏହାପରେ ପୂର୍ବର ସମସ୍ତ ଘଟଣା ବର୍ଣ୍ଣନାକରି ରାଜା ଅନୁରୋଧ କଲେ—''ଆପଣ କହନ୍ତୁ ! ଯେତେବେଳେ କୁଳ ପୁରୋହିତ ମୋତେ ପରିତ୍ୟାଗ କରିଗଲେ, ସେତେବେଳେ କାହା ସାହାଯ୍ୟରେ ମୋର ଯଜ୍ଞ କାର୍ଯ୍ୟ କରିବ ?''

Digitized by srujanika@gmail.com

ସବଙ୍କ ଦେବର୍ଷି ନାରଦ କହିଲେ—"ରାଜନ୍ ! ଆପଣ ଏତେ ବ୍ୟସ୍ତ, ବିବ୍ରତ କାହିଁକି ହେଉଛନ୍ତି । ମୁଁ ତା'ର ଦାୟିତ୍ୱ ନେଉଛି । ଆପଣଙ୍କ ଯଜ୍ଞକାର୍ଯ୍ୟ ଆପଣଙ୍କ କୁଳପୁରୋହିତଙ୍କଦ୍ୱାରା ହିଁ ପୂର୍ଣ୍ଣ ହେବ ।" ଅତୀବ ଆନନ୍ଦିତ ହୋଇ ରାଜା ପଚାରିଲେ—"ଭଗବନ୍ ! ମୋର କୁଳଗୁରୁ ବୃହସ୍ପତି ଦେବରାଜ ଇନ୍ଦ୍ରଙ୍କ ଐଶ୍ୱର୍ଯ୍ୟ ଦେଖି ପାଗଳ ହୋଇଯାଇଛନ୍ତି । ତାଙ୍କଦ୍ୱାରା ମୋର ଯଜ୍ଞକାର୍ଯ୍ୟ ଆପଣ କରାଇପାରିବେ କିପରି ?" ଦୁଇଜଣଙ୍କ ମଧ୍ୟରେ କଳି ଲଗାଇ ନାରଦ ଆନନ୍ଦିତ ହୁଅନ୍ତି । ତେଣୁ ସେ ରାଜାଙ୍କୁ ବୁଝାଇଲେ—"ରାଜନ୍ ! ଶୁଣନ୍ତୁ, ନ୍ୟାୟତଃ ବୃହସ୍ପତି ଆପଣଙ୍କର ପୁରୋହିତ ନୁହନ୍ତି । ଆପଣଙ୍କ ପିତାଙ୍କ ପୁରୋହିତ ଥିଲେ ମୁନିବର ଅଙ୍ଗିରା । ତାଙ୍କର ଦୁଇ ପୁଅ ଅଛନ୍ତି । ବଡ଼ ବୃହସ୍ପତି ଓ ସାନ ହେଲେ ସମ୍ବର୍ତ୍ତ । ଦୁଇଭାଇଙ୍କ ମଧ୍ୟରେ ଯଜମାନ ଭାଗବଣ୍ଟା ହେଲେ ନ୍ୟାୟତଃ ଆପଣ ସମ୍ବର୍ତ୍ତଙ୍କ ଭାଗରେ ପଡ଼ିବେ । ଆପଣ ସେହି ସମ୍ବର୍ତ୍ତଙ୍କଦ୍ୱାରା ଯଜ୍ଞ କରାଇବେ ।"

ରାଜା ବିନୀତଭାବେ ଉତ୍ତର ଦେଲେ—"ଭାଗବଣ୍ଟା କଥା ଛାଡ଼ନ୍ତୁ । ଉଭୟ ଗୁରୁପୁତ୍ର ମୋର ପୂଜ୍ୟ ଓ ବନ୍ଦନୀୟ ଏବଂ ଉଭୟ ମୋର ପୁରୋହିତ; କିନ୍ତୁ ମୁଁ ଶୁଣିଛି ଯେ, ସମ୍ବର୍ତ୍ତ ଦିଗମ୍ବର ବେଶ ଧାରଣକରି କୁଆଡେ ପଳାଇ ଯାଇଛନ୍ତି । ତାଙ୍କୁ ମୁଁ କେଉଁଠି ପାଇବି, କେଉଁଠି ଖୋଜିବି ? ଯଦି ସେ ମିଳିଯିବେ, ତେବେ ମୋର ସମସ୍ତ ମନୋରଥ ପୂର୍ଣ୍ଣ ହେବ ।"

ନାରଦ କହିଲେ—"ବ୍ରହ୍ମଜ୍ଞାନୀ ମହାମୁନି ସମ୍ବର୍ତ୍ତ ବିଶ୍ୱନାଥ ପୁରୀ କାଶୀରେ ହିଁ ପାଗଳ ଭଳି ବୁଲୁଛନ୍ତି । ତାଙ୍କୁ ଚିହ୍ନିବା ପାଇଁ ମୁଁ ଉପାୟ କହୁଛି । ଆପଣ ଶବଟିଏ ନେଇ ବାରାଣସୀ ପୁରୀର ଦ୍ୱାରଦେଶରେ ରଖିଦେବେ । ଯେଉଁ ନଗ୍ନ ପୁରୁଷ ଶବ ଦେଖି ଫେରିଯିବ, ତାଙ୍କୁ ଆପଣ ପୁରୋହିତ ଅଙ୍ଗିରାଙ୍କ ପୁତ୍ର ବୋଲି ଚିହ୍ନିବେ । ସେ ଆପଣଙ୍କୁ ବହୁଭାବରେ ପ୍ରତ୍ୟାଖ୍ୟାନ କରିବେ ଏବଂ ସବୁଦିଗରୁ ନିଜକୁ ଅଯୋଗ୍ୟ ବୋଲି କହିବେ; କିନ୍ତୁ ଆପଣ ସେଥିରେ ଭୁଲିଯିବେ ନାହିଁ । ସେ ଯାହା କହିବେ ସେ ସମସ୍ତ ଅକ୍ଷରେ ଅକ୍ଷରେ ପାଳନ କରିବେ । ମୋ ବିଷୟ ପଚାରିଲେ ଆପଣ କହିବେ ନାରଦ ଅଗ୍ନିରେ ପଶି ଆତ୍ମୋତ୍ସର୍ଗ କରିଛନ୍ତି ।" ଏହା କହି ନାରଦ ଆଖି ପିଛୁଳାକେ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ମହାରାଜ ମରୁତ୍ତ ବିଶେଷ ଆନନ୍ଦିତ ହେଲେ । ଦେବର୍ଷି ନାରଦଙ୍କ ଆଦେଶ ଅନୁସାରେ କାଶୀର ମୁଖ୍ୟଦ୍ୱାରରେ ଶବଟିଏ ଥୋଇ ଅପେକ୍ଷା କରି ବସିଲେ । ଠିକ୍ ସମୟରେ ଉନ୍ମତ୍ତଭାବେ ଦିଗମ୍ବର ବେଶରେ ସମ୍ବର୍ତ୍ତ ସେଠାରେ ପହଞ୍ଚିଲେ; କିନ୍ତୁ ଶବକୁ ଦେଖିବାମାତ୍ରେ ସେ ଫେରିବାକୁ ବସିଲେ । ମହାରାଜ ମରୁତ୍ତ ତାଙ୍କୁ

Digitized by srujanika@gmail.com

ନଜର ପୁରୋହିତ ବ୍ରହ୍ମଜ୍ଞାନୀ ସମ୍ବର୍ତ୍ତି ବୋଲି ଜାଣିପାରି ତାଙ୍କ ପଛେ ପଛେ ଗ୍ଲଲେ । ରାଜା ଅନୁଗମନ କରୁଥିବାର ଦେଖି ସମ୍ବର୍ତ୍ତି ନଜର ଉନ୍ମତ୍ତତା ପ୍ରକାଶପୂର୍ବକ ଧୂଳି, କାଦୁଅ, ଛେପ ଆଦି ରାଜାଙ୍କ ଉପରକୁ ପକାଇବା ସଙ୍ଗେ ସଙ୍ଗେ ଅସଭ୍ୟଭାଷାରେ ବହୁତ ଗାଳିଗୁଲଜ କରିବାକୁ ଲଗିଲେ । ଏହିପରି ଭାବରେ ସମ୍ବର୍ତ୍ତି ଗଙ୍ଗାକୂଳକୁ ଯାଇ ଗୋଟିଏ ନିରୋଳା ସ୍ଥାନରେ ବସି- ପଡ଼ିଲେ । ମହାରାଜା ମରୁତ୍ତ ସେଠାରେ ତାଙ୍କୁ ପ୍ରଣାମ ଜଣାଇ ହାତଯୋଡ଼ି ଆଗରେ ଠିଆହୋଇ ରହିଲେ ।

ମହାମୁନି ସମ୍ବର୍ତ୍ତି ପଚାରିଲେ—"ରାଜନ୍ ! ଆପଣଙ୍କୁ ମୋ ସମ୍ବାଦ କିଏ ଦେଲା ?" ରାଜା ମହାମୁନି ନାରଦଙ୍କ ନାମ କହିବାରୁ ମୁନି ସମ୍ବର୍ତ୍ତି ପ୍ରସନ୍ନ ହୋଇ କହିଲେ—"ତୁମେ ମୋଠାରୁ କ'ଣ ଚାହୁଁଛ ?" ମହାରାଜ ମରୁତ୍ତ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମସ୍ତ ଘଟଣା ବର୍ଣ୍ଣନାକରି ପ୍ରାର୍ଥନା କଲେ—"ପ୍ରଭୋ ! ଆପଣ ମୋ ଯଜ୍ଞକାର୍ଯ୍ୟ କରିବେ । ମୁଁ ମୋ କୁଳଗୁରୁଙ୍କଦ୍ୱାରା ଯଜ୍ଞ ସମ୍ପନ୍ନ କରାଇବା ପାଇଁ ଇଚ୍ଛୁକ ।"

ସମ୍ବର୍ତ୍ତି ଅତ୍ୟନ୍ତ ବିସ୍ମିତ ହୋଇ କହିଲେ—"ଆରେ, ମୁଁ ତ ପାଗଳ । ମୋ ସହିତ ତୁମେ ବି କାହିଁକି ପାଗଳ ହେଲ ? ପାଗଳ ତା'ର ମନ ଇଚ୍ଛାରେ ଯାହା ତାହା କରେ । ମୁଁ ଜଣେ ପାଗଳ, ଯେତେବେଳେ ଯାହା ମନ ହେଉଛି, କରୁଛି, ମୁଁ ଯାଗଯଜ୍ଞ କ'ଣ ଜାଣେ ? ତୁମକୁ କିଏ କହିଲା, ଆଉ ତୁମେ ବା କିପରି ବିଶ୍ୱାସ କଲ ? ଯଜ୍ଞକରାଇବା ଯୋଗ୍ୟତା କ'ଣ ମୋର ଅଛି ?"

ହାତଯୋଡ଼ି ବିନୀତଭାବେ ରାଜା କହିଲେ—"ପ୍ରଭୋ ! ଆପଣ ସବୁ କିଛି କରିପାରିବେ । ଯଜ୍ଞ କଥା ତ ଅତି ସାମାନ୍ୟ, ଆପଣ ଇଚ୍ଛାକଲେ ନୂତନ ସୃଷ୍ଟି ମଧ୍ୟ କରିପାରିବେ । ଆପଣ ମୋତେ ଭୁଲାନ୍ତୁନାହିଁ । ନାରଦ ମୋତେ ସମସ୍ତ କଥା କହିଛନ୍ତି । ଯେଭଳି ହେଉ ଆପଣଙ୍କୁ ମୋର ଯଜ୍ଞକାର୍ଯ୍ୟ କରିବାକୁ ପଡ଼ିବ ।

ଏହା ଶୁଣି ସମ୍ବର୍ତ୍ତି ମୁନିଙ୍କର ହୃଦୟ ତରଳିଗଲା । ଆନନ୍ଦିତ ହୋଇ ସେ କହିଲେ—"ରାଜନ୍ ! ମୁଁ ଆପଣଙ୍କ ଯଜ୍ଞ କରିପାରିବ । ସେ ଯଜ୍ଞ, ପୃଥିବୀର ରାଜାମାନଙ୍କ କଥା ଛାଡ଼ନ୍ତୁ, ଇନ୍ଦ୍ର ମଧ୍ୟ କରିପାରିବେ ନାହିଁ; କିନ୍ତୁ ମୋର ଗୋଟିଏ ସର୍ତ୍ତ ଅଛି । ମୁଁ ତୁମ ଯଜ୍ଞ କଲେ ଇନ୍ଦ୍ର ଓ ବୃହସ୍ପତି ନାନା ଉପାୟରେ ଭେଦ- ଭାବ ସୃଷ୍ଟି ନିମିତ୍ତ ଯତ୍ନ କରିବେ । ତାଙ୍କ ପ୍ରଲୋଭନରେ ପଡ଼ି ତୁମେ ମୋତେ ପରିତ୍ୟାଗ ନ କରିବା ପାଇଁ ପ୍ରତିଜ୍ଞା କଲେ, ମୁଁ ତୁମର ଯଜ୍ଞକାର୍ଯ୍ୟ କରାଇବି ।" ମହାରାଜ ମରୁତ୍ତଙ୍କ ପ୍ରତିଜ୍ଞାରେ ସନ୍ତୁଷ୍ଟ ହୋଇ ସମ୍ବର୍ତ୍ତି କହିଲେ—"ରାଜନ୍ ! ତୁମ

Digitized by srujanika@gmail.com

ପ୍ରଜାଙ୍କୁ ସ୍ମରଣ ରଖିବ । ମୋ ବଡ଼ ଭାଇର କଥାରେ ତୁମେ ଯଦି ମୋତେ ପରିତ୍ୟାଗ କରିବ, ମୁଁ ବଡ଼ଭାଇଙ୍କୁ କିଛି କହିପାରିବି ନାହିଁ; କିନ୍ତୁ ତୁମର ସର୍ବସ୍ୱ ବିନାଶ କରିବ । ତୁମେ ତୁମ ପ୍ରଜାଙ୍କ ରକ୍ଷାକଲେ ମୁଁ ତୁମକୁ ଅକ୍ଷୟ କୋଷ ଦାନକରିବି । ତୁମ ଆଗରେ ଇନ୍ଦ୍ର ମଧ୍ୟ ଲଜ୍ଜିତ ହେବ । ହେ ରାଜନ୍ ! ତୁମର ମଙ୍ଗଳ ହେଉ ! ତୁମେ ଏବେ ତପସ୍ୟାଦ୍ୱାରା ଶିବଙ୍କୁ ପ୍ରସନ୍ନ କର । ଶିବ ପ୍ରସନ୍ନହୋଇ ଗୁହ୍ୟକ, କିନ୍ନର ଓ ଗନ୍ଧର୍ବଙ୍କଦ୍ୱାରା ସୁରକ୍ଷିତ ଥିବା ସୁବର୍ଣ୍ଣରାଶି ଆପଣଙ୍କୁ ଦେବେ । ସେହି ସୁବର୍ଣ୍ଣଦ୍ୱାରା ମୁଁ ଆପଣଙ୍କ ଯଜ୍ଞକାର୍ଯ୍ୟ ସମ୍ପାଦନ କରିବି ।

ମହାମୁନି ସମ୍ବର୍ତ୍ତଙ୍କ ଆଦେଶ ଅନୁସାରେ ମହାରାଜ ମରୁତ୍ତ ତପସ୍ୟାଦ୍ୱାରା ଶିବଙ୍କୁ ପ୍ରସନ୍ନ କରି ଅକ୍ଷୟ ସୁବର୍ଣ୍ଣରାଶି ଲାଭକଲେ । ସମ୍ବର୍ତ୍ତଙ୍କ ଉପଦେଶ ଅନୁସାରେ ମରୁତ୍ତ ସେହି ସୁବର୍ଣ୍ଣରେ ଯଜ୍ଞନିମିତ୍ତ ବିଭିନ୍ନ ପାତ୍ର, ଖମ୍ବ, ବେଦି, ଗୃହ ଆଦି ସମସ୍ତ ଆବଶ୍ୟକୀୟ ଦ୍ରବ୍ୟ ପ୍ରସ୍ତୁତ କଲେ । ସୁବର୍ଣ୍ଣ ବ୍ୟତୀତ ଅନ୍ୟ କୌଣସି ଧାତୁ ଯଜ୍ଞରେ ବ୍ୟବହୃତ ହୋଇ ନ ଥିଲା । ଇନ୍ଦ୍ର ଏ ସମ୍ବାଦ ପାଇ ଅତ୍ୟନ୍ତ କ୍ରୋଧରେ ଗୁରୁ ବୃହସ୍ପତିଙ୍କ ଆଦେଶ ନେଇ ଅଗ୍ନି ଓ ଗନ୍ଧର୍ବମାନଙ୍କୁ ପଠାଇ ନାନାପ୍ରକାର ବିଘ୍ନ ସୃଷ୍ଟି ନିମିତ୍ତ ଯତ୍ନକଲେ; କିନ୍ତୁ ରାଜା ମରୁତ୍ତଙ୍କର ଅବିଚଳିତ ଭାବ ଦେଖି ଇନ୍ଦ୍ର ବଜ୍ରଧାରଣ ପୂର୍ବକ ସ୍ୱୟଂ ଯଜ୍ଞସ୍ଥଳରେ ଉପସ୍ଥିତ ହେଲେ । ଏଥିରେ ରାଜା ମରୁତ୍ତ ସାମାନ୍ୟ ବିଚଳିତ ହେବାର ଦେଖି ସମ୍ବର୍ତ୍ତ ସାନ୍ତ୍ୱନା ଦେଇ କହିଲେ—"ରାଜନ୍ ! ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ମନ୍ତ୍ରବଳରେ ଇନ୍ଦ୍ରଙ୍କୁ ସ୍ତମ୍ଭିତ କରିଦେବି । ଆପଣ ଚିନ୍ତାକରି ଅସ୍ଥିର ହୁଅନ୍ତୁ ନାହିଁ । ମୋ ଶକ୍ତି ଉପରେ କ'ଣ ବିଶ୍ୱାସ ନାହିଁ ? ମୁଁ ବର୍ତ୍ତମାନ ଇନ୍ଦ୍ରଙ୍କୁ ମନ୍ତ୍ରଦ୍ୱାରା ଆହ୍ୱାନ କରାଉଛି ।"

ପରିଶେଷରେ ବ୍ରହ୍ମଜ୍ଞାନୀ ସମ୍ବର୍ତ୍ତଙ୍କ ପାଖରେ ଇନ୍ଦ୍ର ପରାଜୟ ସ୍ୱୀକାର କଲେ । ସେ ପ୍ରସନ୍ନଚିତ୍ତରେ ରାଜାଙ୍କ ଯଜ୍ଞସ୍ଥଳରେ ସୋମରସ ପାନକରି ରାଜାଙ୍କ ଯଜ୍ଞକୁ ନିର୍ବିଘ୍ନରେ ସମ୍ପନ୍ନକରିବା ନିମିତ୍ତ ପ୍ରତିଶ୍ରୁତି ଦେଲେ । ଇନ୍ଦ୍ରଙ୍କ ଆଦେଶରେ ବିଶ୍ୱକର୍ମା ହଜାର ହଜାର ମନ୍ଦିର, ବାସଗୃହ ସୁବର୍ଣ୍ଣରେ ନିର୍ମାଣ କରିଦେଲେ । ମହାରାଜ ମରୁତ୍ତ ସମସ୍ତଙ୍କର ପ୍ରାର୍ଥନା ପୂରଣ କଲେ । ବ୍ରାହ୍ମଣମାନଙ୍କୁ ସେ ଏତେ ସୁବର୍ଣ୍ଣ ଦାନ କରିଥିଲେ ଯେ, ତାହା ସେମାନେ ନେଇ ନ ପାରି ସେହିଠାରେ ଛାଡ଼ି ଦେଇଗଲେ । ଯଜ୍ଞ ଶେଷରେ ମରୁତ୍ତ ଯଜ୍ଞର ସମସ୍ତ ସାମଗ୍ରୀ ସେହିଠାରେ ଛାଡ଼ି ଯାଇଥିଲେ । ସେ ସମସ୍ତ ଅଦ୍ୟାବଧି ଗୁହ୍ୟକ, ରାକ୍ଷସ ଓ ଗନ୍ଧର୍ବମାନଙ୍କଦ୍ୱାରା ସୁରକ୍ଷିତ ରହିଛି ।

Digitized by srujanika@gmail.com

ବ୍ୟାସଦେବ କହିଲେ—''ଶ୍ରୀକୃଷ୍ଣଙ୍କ ଆଦେଶ ଅନୁସାରେ ସେଠାରୁ ଆପଣ ଇଚ୍ଛା ଅନୁରୂପ ଧନ ଆଣି ଯଜ୍ଞକାର୍ଯ୍ୟ କରନ୍ତୁ । ପ୍ରଥମେ ଶିବଙ୍କୁ ପ୍ରସନ୍ନ କରିବାକୁ ହେବ । ତା'ନୋହିଲେ ଆପଣ ସେଠାରୁ ଟିକିଏହେଲେ କିଛି ଆଣିପାରିବେ ନାହିଁ ।

ଭଗବାନ୍ ଶ୍ରୀକୃଷ୍ଣଙ୍କ ଆଦେଶ, ବ୍ୟାସଦେବଙ୍କ ସମ୍ମତି ଓ ଶିବଙ୍କ କରୁଣାରୁ ସେଠାରୁ ପର୍ଯ୍ୟାପ୍ତ ସୁବର୍ଣ୍ଣ ସଂଗ୍ରହପୂର୍ବକ ଗଙ୍ଗାକୂଳରେ ତ୍ରିଗୁଣ ଅଶ୍ୱମେଧ ଯଜ୍ଞ ଅନୁଷ୍ଠିତ ହେଲା । ଧର୍ମରାଜ ଯୁଧିଷ୍ଠିର ସମସ୍ତଙ୍କୁ ଆଶାତୀତ ପାନ, ଭୋଜନ ଓ ଉପକରଣ ଦାନଦେଇ ଯଥାବିଧି ଯଜ୍ଞକାର୍ଯ୍ୟ ସମ୍ପନ୍ନ କରିଥିଲେ । ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣ ହେବା ପରେ ଭଗବାନ ଶ୍ରୀକୃଷ୍ଣ ହସ୍ତିନାରେ ଆଉ କିଛି ଦିନ ରହି ସମସ୍ତଙ୍କ ଅନୁମତି ନେଇ ଯାଦବମାନଙ୍କ ସହିତ ଦ୍ୱାରକାକୁ ଫେରିଆସିଥିଲେ ।

ଅଚ୍ୟୁତ ଆଜ୍ଞା ପାଇ ହିମାଳୟୁ ପାଣ୍ଡବ ଘାୟେ ।
ଶିବକୁଁ କରି ସନ୍ତୁଷ୍ଟ ମରୁତ ମଖକୋ ଧନ ଲ୍ୟେ ॥
କରି କୃଷ୍ଣାର୍ପଣ ସଭୀ ଯଜ୍ଞକେ କାରଜ କୀହ୍ନେଁ ।
ଅନ୍ନ ବସ୍ତ୍ର, ଧନ, ଧାମ, ଗ୍ରାମ ବିପ୍ରନ କୁଁ ଦୀହ୍ନେ ॥

ଇନ୍ଦ୍ର ସରିସ କୁନ୍ତୀତନୟୁ,
ନବଜଲଧର ସମ ଶ୍ୟାମ ହେ ।
ସ୍ୱର୍ଣ୍ଣବାରି ବରସୈଁ ବିପୁଲ,
ପୂରେ ସବକେ କାମ ହୈ ॥



Digitized by srujanika@gmail.com

# ଜ୍ଞାନୀ ବିଦୁର

ଅବିଭ୍ରଦର୍ଯମା ଦଣ୍ଡଂ ଯଥାବଦଘକାରିଷୁ ।
ଯାବଦ୍ ଦଧାର ଶୂଦ୍ରତ୍ୱଂ ଶାପାଦ୍ ବର୍ଷଶତଂ ଯମଃ ॥
(ଭାଗବତ ୧. ୧୩. ୧୫.)

### ଛପ୍ପୟ

ମୁନି ମାଣ୍ଡବ୍ୟ ମହାନ୍ ମନସ୍ୱୀ ମୌନୀ ଦୁଷ୍କର ।
କରେ ତପସ୍ୟା ତୀବ୍ର ଦ୍ୱାର ଆଶ୍ରମକେ ତରୁତର ॥
କରିକେ ଚୋରୀ ଚୋର ଓର ଆଶ୍ରମକୀ ଆୟେ ।
ଦେଖି ଦୂରତେଁ ଦୂତ ଦ୍ରବ୍ୟ ଧରି ତହାଁ ଲୁକାୟେ ॥
ପୂଛେ ମୁନିତେଁ ଦୂତ ସବ,
ମୌନୀ ଉତ୍ତର ଦେହିଁ କସ ।
ସୂଳୀ ଚୋର ସରଦାର ହୈ,
ସବ ମିଲି ନିଶ୍ଚୟ କୟୋ ଅସ ॥

ତେଜସ୍ୱୀ, ତପସ୍ୱୀ ପୁରୁଷଙ୍କୁ ମଧ୍ୟ ପ୍ରାରବ୍ଧକର୍ମର ଫଳ ଭୋଗ କରିବାକୁ ପଡ଼େ । ପ୍ରାରବ୍ଧ କର୍ମ, ବିନା ଭୋଗରେ ଶେଷ ହୁଏନାହିଁ । ଜୀବନ୍ମୁକ୍ତଙ୍କୁ ମଧ୍ୟ ଶରୀର ଥିବାଯାଏ ପ୍ରାରବ୍ଧଭୋଗ କରିବାକୁ ପଡ଼େ; କିନ୍ତୁ ସାଧୁଲୋକ କେବେହେଲେ ସୁଖଦୁଃଖରେ ଲିପ୍ତ ହୁଏନାହିଁ କି ତାତ୍କାଳିକ କର୍ମଦ୍ୱାରା ସାଧୁଙ୍କର ଭାବୀ ପ୍ରାରବ୍ଧ ସୃଷ୍ଟି ହୁଏନାହିଁ । ତଥାପି ଏ ଶରୀର ଥିବା ପର୍ଯ୍ୟନ୍ତ ସମସ୍ତଙ୍କୁ ପ୍ରାରବ୍ଧ ଭୋଗ କରିବାକୁ ହେବ । ଋଷି, ମୁନି, ଯକ୍ଷ, କିନ୍ନର, ଦେବତା, ପ୍ରଜାପତି, ଲୋକପାଳ ସମସ୍ତେ ପ୍ରାରବ୍ଧର ବଶୀଭୂତ ହୋଇ କାର୍ଯ୍ୟ କରନ୍ତି ଏବଂ ନାନା ଉଚ୍ଚ ନୀଚ ଯୋନିରେ ଜନ୍ମ ହୁଅନ୍ତି ।

ବିଦୁର ସାକ୍ଷାତ୍ ଧର୍ମରାଜ ଥିଲେ । ମୁନିଙ୍କ ଅଭିଶାପବଶତଃ ତାଙ୍କୁ ଶହେ ବର୍ଷ ପର୍ଯ୍ୟନ୍ତ ଶୂଦ୍ରଯୋନିରେ ରହିବାକୁ ପଡ଼ିଲା ବୋଲି ମହର୍ଷି ସୂତ କହିବାରୁ ଶୌନକ ପ୍ରଶ୍ନ କରିଥିଲେ—''ମହାଶୟ ! ଯମରାଜ ଏପରି କି ଅପରାଧ କଲେ ଯେ, ମହାମୁନି ମାଣ୍ଡବ୍ୟ ତାଙ୍କୁ ଶୂଦ୍ରଯୋନିରେ ଜନ୍ମ ହେବା ନିମିତ୍ତ ଅଭିଶାପ ଦେଲେ । ଏ ବିଷୟରେ ଆମ ମନରେ ବଡ଼ କୌତୁହଳ ଜାତ ହୋଇଛି । ଯଦି କହିବା

Digitized by srujanika@gmail.com

ଯୋଗ୍ୟ ବୟସ୍କ ହୋଇଥିବ, ତେବେ ଦସ୍ୟୁକର କହିବା ହେଉନ୍ତୁ । ଶୌନକଙ୍କ କଥା ଶୁଣି ମହର୍ଷି ସୂତ କହିଲେ—"ହେ ମୁନିଗଣ ! ଆଗରୁ ମୁଁ ଆପଣମାନଙ୍କୁ କହିଛି, ନିଜ ଇଚ୍ଛା ଅନୁସାରେ କେହି କେବେ କାହା ପ୍ରତି ଅଭିଶାପ ଦେଇପାରେ ନାହିଁ କି ଅନୁଗ୍ରହ ପ୍ରଦର୍ଶନ କରିପାରେନାହିଁ । ସମସ୍ତେ ଦୈବର ଅଧୀନ । ସମସ୍ତଙ୍କର ସମସ୍ତଙ୍କ ସହିତ ସବୁ ସମୟରେ ସମସ୍ତକାର୍ଯ୍ୟରେ ସଂଯୋଗ ରହିଥାଏ । ସେହି ସଂଯୋଗବଶତଃ ପ୍ରାଣୀମାନଙ୍କର ବୁଦ୍ଧି ସ୍ୱତଃ ଅନ୍ୟପ୍ରକାର ହୋଇଯାଏ ଏବଂ ସେହି ଅନୁସାରେ ସେମାନେ କାର୍ଯ୍ୟ କରନ୍ତି । ଧର୍ମଧ୍ୱଜଙ୍କ ଅଭିଶାପବୃତ୍ତାନ୍ତ ମଧ୍ୟ ଅତୀବ ମନୋରଞ୍ଜକ । ମୁଁ ସଂକ୍ଷେପରେ ସେହି କଥା ବର୍ଣ୍ଣନା କରୁଛି, ଆପଣମାନେ ଧୀରସ୍ଥିରଭାବେ ଶୁଣନ୍ତୁ !"

ପୂର୍ବକାଳରେ ମାଣ୍ଡବ୍ୟ ନାମରେ ଜଣେ ଋଷିଥିଲେ । ତପସ୍ୟାରତ ସେହି ତେଜସ୍ୱୀ ମୁନିଥିଲେ ଜିତେନ୍ଦ୍ରିୟ ଓ ଅତୀବ ଧର୍ମପରାୟଣ । ସର୍ବଦା ଧର୍ମକାର୍ଯ୍ୟରେ ସେ କାଳ ଅତିବାହିତ କରୁଥିଲେ । ତାଙ୍କ ଆଶ୍ରମ ଆଗରେ ଏକ ବିରାଟ ଛାୟାପ୍ରଦ ବୃକ୍ଷ ଥିଲା । ସେ ସେହି ଗଛମୂଳେ ମୌନବ୍ରତ ଧାରଣକରି ଊର୍ଦ୍ଧ୍ୱବାହୁ ହୋଇ ତପସ୍ୟା କରୁଥିଲେ । ସେ ଏପରି ସମାଧିସ୍ଥ ରହୁଥିଲେ ଯେ, ତାଙ୍କର ବାହ୍ୟ ଜଗତ୍ ସମ୍ପର୍କରେ କୌଣସି ଜ୍ଞାନ ରହୁ ନ ଥିଲା । ଦିନେ କେତେକ ଚୋର ରାଜପ୍ରାସାଦରେ ଚୋରି କରି ବହୁ ଧନରତ୍ନ ନେଇ ପଳାଇଗଲେ । ରାଜାଙ୍କ ଜଗୁଆଳମାନେ ଚୋରି ଘଟଣା ଜାଣିବାମାତ୍ରେ ଚୋରଙ୍କ ପଛେ ପଛେ ଗୋଡ଼ାଇଲେ । ଜଗୁଆଳମାନେ ନିକଟବର୍ତ୍ତୀ ହେବାର ଦେଖି ଚୋରମାନେ ଚୋରି ଧନକୁ ନେଇ ମାଣ୍ଡବ୍ୟ ମୁନିଙ୍କ ଆଶ୍ରମରେ ଲୁଚିଗଲେ । ଜଗୁଆଳମାନେ ଚାରିଆଡ଼େ ଖୋଜାଖୋଜି କରି ଋଷିଙ୍କୁ ଯାଇ ପଚାରିଲେ—"ବ୍ରହ୍ମନ୍ ! ଚୋରମାନେ ଅନେକ ଧନସମ୍ପଦ ନେଇ ପଳାଇଆସିଛନ୍ତି । ସେମାନେ ଏଇବାଟେ ଯିବାର ଆପଣ ଦେଖିଛନ୍ତି କି ?

ମୁନି ତ ମୌନଥିଲେ ଆଉ ଧ୍ୟାନମଗ୍ନ ଥିଲେ । ସେ ଚୋରଙ୍କ ସମ୍ବନ୍ଧରେ କିଛି ଜାଣି ନ ଥିଲେ କି ଜଗୁଆଳମାନଙ୍କ କଥା ଶୁଣି ନ ଥିଲେ । ସେ କିଛି ଉତ୍ତର ନ ଦେବାରୁ ଜଗୁଆଳମାନେ ସନ୍ଦେହକରି ଆଶ୍ରମ ତନଖି କଲେ । କାହୁ ପଛରେ ଲୁଚିରହିଥିବା ଚୋରମାନଙ୍କୁ ହାତକଡ଼ିଦେଇ ଚୋରିଧନ କ'ଣ ହେଲା ବୋଲି ଜଗୁଆଳମାନେ ପଚାରିଲେ; କିନ୍ତୁ କିଛି ଉତ୍ତର ନ ପାଇ ଜଗୁଆଳମାନେ ଭାବିଲେ, ଆରେ ଏଠି ତ ମୌନିବାବାମାନଙ୍କର ଏକ ଆଡ୍ଡା ହୋଇଛି । ସେମାନେ ଚୋରଙ୍କୁ ପଚାରିଲେ—"ବାବୁ, ତୁମେ ଚୋର ନା ସାଧୁ ?" ତଥାପି କିଛି ଉତ୍ତର ନ ମିଳିବାରୁ ଜଗୁଆଳମାନଙ୍କ ସନ୍ଦେହ ହେଲା । ସେମାନେ ଚାରିଆଡ଼େ ଖୋଜା ଖୋଜି କରି ସମସ୍ତ ଧନରତ୍ନ ଉଦ୍ଧାର କଲେ । ଫଳରେ ସନ୍ଦେହ ତାଙ୍କର

Digitized by srujanika@gmail.com

ଦୃଢ଼ହେଲା । ସେମାନେ ଭାବିଲେ, ଏମାନେ ଦମ୍ଭରେ ମୌନ ହୋଇଯାଇଛନ୍ତି । ମୌନ ଅବଲମ୍ବନ ଏଭଳି ଏକ ଅସ୍ତ୍ର ଯେ, ଏହାର ଆଢ଼ୁଆଳରେ ସବୁ କିଛି କୁକର୍ମ ଲୁଚିଯାଇ ରହିପାରିବ । ଆଉ ଏ ମହାତ୍ମା, ମହାତ୍ମା ନୁହନ୍ତି ମହାତମା ଅଟନ୍ତି । ଏ ହେଉଛନ୍ତି ଚୋରଙ୍କ ସରଦାର । ଏ ସମସ୍ତେ ଗୋଟିଏ ଭାଡ଼ିର ପାରି । ଦିନରେ ମୌନ ରହି ରାତିରେ ଚୋରି କରୁଛନ୍ତି । ଏଭଳି ବହୁ କଥା ଭାବି ଚୋରଙ୍କ ସହିତ ସାଧୁ ମାଣ୍ଡବ୍ୟଙ୍କୁ ଜଗୁଆଳମାନେ ବାନ୍ଧି ନେଇଗଲେ । ଫଳରେ ଧୂଆମୂଳା ଅଧୂଆମୂଳା ସମାନ ହୋଇଗଲା । ଦୁର୍ଜନ ସଂସର୍ଗ ହେତୁ ସାଧୁ ମଧ୍ୟ ଦୁଃଖ ଭୋଗ କଲେ ।

ଆଜି କାଲି ତ କଳିଯୁଗ ଆସିଯାଇଛି । ସମସ୍ତେ ଚୋର ପାଲଟି ଯାଇଛନ୍ତି । ନ୍ୟାୟଦାତା ବିଚାରକ ମଧ୍ୟ କୌଣସି ନା କୌଣସି ଉପାୟରେ ଚୋରି କରୁଛି । ତେଣୁ ଏବେ ଚୋରି କରିବାଟା ଖୁବ୍ ବଡ଼ ଅପରାଧ ବୋଲି ଗୃହୀତ ହେଉନାହିଁ । ଆଜିକାଲି ଚୋରିଟାକୁ ଜୀବନର ଏକ କଳାଭାବେ ଲୋକେ ଗ୍ରହଣ କରୁଛନ୍ତି । ଏପରିଭାବେ ଚୋରି କରିବ ଯେ, ଯେପରି ଧରା ନ ପଡ଼ିବ । ଯଦି ବା ଧରାପଡ଼ିଯାଏ ତେବେ ସାମ୍ପ୍ରତିକ ନ୍ୟାୟ ବିଧାନରେ ଏପରି ବ୍ୟବସ୍ଥା ଅଛି ଯେ. ନାନାପ୍ରକାର ମିଛ ସତ ପ୍ରମାଣ ଉଆରି କରି ଚୋର ଓ ଚୋରି ଧନର ପ୍ରତିବନ୍ଧି ସିଦ୍ଧ କରିଦେବେ ଯେ, ନିୟମ ଅନୁସାରେ ଚୋରିଟା ଚୋରି ନୁହେଁ । ଏହାଫଳରେ ଚୋର ଦୋଷ-ମୁକ୍ତ ହୋଇଯାଉଥିବାବେଳେ ସାଧୁ ଓ ନିରପରାଧ ଦଣ୍ଡିତ ହେଉଛି; କିନ୍ତୁ ମୁଁ ଯେଉଁକଥା କହୁଛି, ସେ ଆଜିର କଥା ନୁହେଁ । ସେ ଯୁଗରେ ଚୋରି କରିବା ସବୁଠୁ ବଡ଼ ଅପରାଧ ଥିଲା । ସେ ସମୟରେ ଚୋରକୁ ଶୂଳିଦଣ୍ଡ ଦିଆଯାଉଥିଲା । ଚୋରକୁ ଏକ ଛକ ସ୍ଥାନରେ ସମସ୍ତଙ୍କ ଆଗରେ ଶୂଳିରେ ବସାଯାଉଥିଲା । ଶୂଳି ଭେଦହେବା ସହିତ ଧୀରେ ଧୀରେ ଚୋରର ମୃତ୍ୟୁ ଘଟୁଥିଲା । ଶେଷରେ ଚଣ୍ଡାଳ ଶବକୁ ଉଠାଇ ନେଇଯାଉଥିଲା ।

ଜଗୁଆଳମାନେ ସମସ୍ତଙ୍କୁ ନେଇ ରାଜାଙ୍କ ସମ୍ମୁଖରେ ପେଶ୍ କଲେ । ଚୋରି ଜିନିଷ ସହିତ ଚୋର ଧରା ପଡ଼ିଛନ୍ତି । ରାଜା ଆଉ ବିଶେଷ ବିଚାର ବ୍ୟବସ୍ଥା ନ କରି ସମସ୍ତଙ୍କୁ ଶୂଳିଦଣ୍ଡ ଆଦେଶ ଦେଲେ । ଚୋରମାନଙ୍କ ସହିତ ମାଣ୍ଡବ୍ୟ ମୁନିଙ୍କୁ ମଧ୍ୟ ଶୂଳିଉପରେ ବସାଇ ଦିଆଗଲା । ଅନ୍ୟ ଚୋରମାନେ ଶୂଳିରେ ଚଢ଼ିବାମାତ୍ରେ ମୃତ୍ୟୁବରଣ କଲେ; କିନ୍ତୁ ତପସ୍ୟା ପ୍ରଭାବହେତୁ ମୁନି ଶୂଳିରେ ବସି ମଧ୍ୟ ଧ୍ୟାନ କରିବାକୁ ଲାଗିଲେ । ଦିନେ ଗଲା, ଦୁଇଦିନ ଗଲା । ଋଷିଙ୍କୁ ସେହିପରି ଶୂଳି ଉପରେ ବସିଥିବାର ଦେଖି ସେବକମାନେ ଯାଇ ରାଜାଙ୍କୁ ଜଣାଇଲେ—"ପ୍ରଭୋ ! ଜଣେ ଚୋର ଆଜିପର୍ଯ୍ୟନ୍ତ ପୂର୍ବପରି ଜୀବିତ ଅବସ୍ଥାରେ ବସି ରହିଛି । ଶୂଳିଟି ମଳଦ୍ୱାରରୁ ମୁଣ୍ଡ ପର୍ଯ୍ୟନ୍ତ ଯାଉ ନାହିଁ । ଆଉ ସେଲୋକକୁ ମଧ୍ୟ କିଛି କଷ୍ଟ ହେଉଥିଲାଭଳି ମନେ ହେଉନ ।"

Digitized by srujanika@gmail.com

ଏହା ଶୁଣି ରାଜାଙ୍କ ମନରେ ସନ୍ଦେହ ଜାତ ହେଲା । ସେ କୌଣସି ତପସ୍ୱୀ କି ମହାତ୍ମା ହୋଇଥିବେ ବୋଲି ଭାବି ରାଜା, ମନ୍ତ୍ରୀ ଓ ପୁରୋହିତଙ୍କୁ ସଙ୍ଗରେ ନେଇ ଶୂଳ ପାଖରେ ପହଞ୍ଚିଲେ । ପୁରୋହିତ ତପସ୍ୱୀଙ୍କୁ ଚିହ୍ନିପାରି କହିଲେ, "ମହାରାଜ ! ବଡ଼ ଅସୁବିଧା ହୋଇଗଲା । ଏ ହେଉଛନ୍ତି ପରମତେଜସ୍ୱୀ ମହାମୁନି ମାଣ୍ଡବ୍ୟ ।" ରାଜା ତାଙ୍କୁ ଶୂଳରୁ ଓହ୍ଲାଇ ଆଣିଲେ । ତାଙ୍କୁ ଯଥାବିଧି ପୂଜା ଅର୍ଚ୍ଚନାକରି ହାତଯୋଡ଼ି ବିନୀତ ଭାବେ ରାଜା କହିଲେ—"ବ୍ରହ୍ମନ୍ ! ଅଜ୍ଞାନତାବଶତଃ ମୁଁ ଅପରାଧ କରିଛି । ମୋତେ କ୍ଷମା ଦିଅନ୍ତୁ । ଆପଣ ପ୍ରସନ୍ନ ହୁଅନ୍ତୁ । କ୍ରୋଧବଶ ହୋଇ ମୋ ସହିତ ମୋ ରାଜ୍ୟକୁ ଭସ୍ମ ନ କରିବାକୁ ମୋର ବିନୀତ ନିବେଦନ ଗ୍ରହଣ କରନ୍ତୁ ।"

ରାଜାଙ୍କ ନମ୍ରତାରେ ସନ୍ତୁଷ୍ଟ ହୋଇ ମହର୍ଷି କହିଲେ—"ରାଜନ୍ ! ଆପଣଙ୍କର ମଙ୍ଗଳ ହେଉ ! ଆପଣ କିଛି ଚିନ୍ତା କରନ୍ତୁନାହିଁ । ଆପଣଙ୍କ ଉପରେ ମୋର ଟିକିଏ ହେଲେ କ୍ରୋଧ ନାହିଁ । ସମସ୍ତେ ନିଜ ନିଜର କର୍ମ ଅନୁସାରେ ଫଳଭୋଗ କରନ୍ତି । ପୂର୍ବଜନ୍ମରେ କୌଣସି ପାପକାର୍ଯ୍ୟ କରିଥିବାରୁ ମୋତେ ଏହି ଦୁଃଖ ଭୋଗିବାକୁ ପଡ଼ିଲା; କିନ୍ତୁ ଭାବୁଛି, ମୁଁ ବାଲ୍ୟକାଳରୁ ତପସ୍ୟା କରୁଛି । ସଦା-ସର୍ବଦା ଆତ୍ମରକ୍ଷା ହୋଇ ରହିଛି । କେବେ କାହାରି ପ୍ରତି ହିଂସା ଆଚରଣ କରିନାହିଁ; ତଥାପି କାହିଁକି ମୋତେ ଏ ପ୍ରକାର ଦାରୁଣ ଦୁଃଖ ସହିବାକୁ ପଡ଼ିଲା ? ଠିକ୍ ଅଛି, ମୁଁ ବର୍ତ୍ତମାନ ଧର୍ମରାଜଙ୍କ ପାଖକୁ ଯାଇ ଏହାର କାରଣ ବୁଝିବି ।"

ରାଜାଙ୍କ ଦେହରେ ପ୍ରାଣ ପଶିଲା । ମୁନି ଋଷିମାନଙ୍କୁ ତାଙ୍କର ଭାରି ଭୟ ଥିଲା । ତପସ୍ୱୀ ଆଉ ଓଝା ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । ଉଭୟଙ୍କର କେତେବେଳେ କେଉଁ କଥାରେ ଓ କାହା ଉପରେ କ୍ରୋଧ ଜାତହେବ ସେ କଥା କେହି କହିପାରିବ ନାହିଁ । କ୍ରୋଧ ଜାତହେବା ପରେ ସେ ଆଉ କାହାରି ହୋଇ ରହନ୍ତିନାହିଁ । ରାଜା ଖୁସି ହେଲେ, "ଯାହାହେଉ, ମୋ ଉପରୁ ଗ୍ରହ କଟିଗଲା ।" ଋଷିଙ୍କ କ୍ରୋଧ ବର୍ତ୍ତମାନ ଯମରାଜାଙ୍କ ଉପରେ ଛୁଟିବ । ଉଭୟ ସମାନ । ଉଭୟ ପରସ୍ପରର କଥା ବୁଝିବେ । ଏହା ବିଚାରି ରାଜା ଯଥାବିଧି ପାଦାର୍ଘ୍ୟ ଦେଇ ଋଷିଙ୍କୁ ପୂଜାକଲେ । ବହୁ ଉପାୟରେ ରାଜା ଶୂଳଟାକୁ ଋଷିଙ୍କ ଦେହରୁ ବାହାର କରିବା ପାଇଁ ଚେଷ୍ଟା କରିଥିଲେ ମଧ୍ୟ ତାହା ନ ବାହାରିବାରୁ ଋଷିଙ୍କ ଆଦେଶରେ ଶୂଳଟିକୁ ଦେହର ବହିର୍ଭାଗରୁ କାଟିଦେଲେ । ଶୂଳର ଖଣ୍ଡିଏଭାଗ ଋଷିଙ୍କ ଦେହରେ ଲାଗି ରହିଲା । ସେହିଦିନଠାରୁ ମାଣ୍ଡବ୍ୟ ଋଷି 'ଅଣୀ ମାଣ୍ଡବ୍ୟ' ନାମରେ ପରିଚିତ ହେଲେ ।

ଋଷି ମନେମନେ ରାଗି ଯାଇଥିଲେ । ନିଜର ତପସ୍ୟା ପ୍ରଭାବରେ ସେ ଯମଲୋକରେ ଯାଇ ପହଞ୍ଚିଲେ । ଋଷିଙ୍କୁ ଆସୁଥିବାର ଦେଖି ଯମରାଜା

Digitized by srujanika@gmail.com

ତରବରରେ ଉଠି ତାଙ୍କ ସ୍ୱାଗତଉପଯୋଗୀ ପାଦ୍ୟ, ଅର୍ଘ୍ୟ ଆଦି ନେଇ ମାଣ୍ଡବ୍ୟଙ୍କୁ ପୂଜା କଲେ; କିନ୍ତୁ ମହାମୁନି ଯମରାଜଙ୍କ ପୂଜା ଓ ବିନୟଭାବ ପ୍ରତି ଧ୍ୟାନ ନ ଦେଇ ବରଂ ଗାଳିଦେଲେ । କଠୋର ସ୍ୱରରେ ମହର୍ଷି ପଚାରିଲେ— "କ'ଣ, ଯମରାଜ ! ଆପଣ ବଡ଼ ନ୍ୟାୟଶୀଳ । ଆପଣ ସମସ୍ତଙ୍କୁ ପାପପୁଣ୍ୟ ଅନୁସାରେ ଦୁଃଖସୁଖ ଦିଅନ୍ତି । ଦୟାକରି କୁହନ୍ତୁ, ଶୂଳରେ ବସି ମୁଁ ଯେଉଁ ଦାରୁଣ ଦୁଃଖ ପାଇଲି, ଆପଣ ମୋର କେଉଁ ଅପରାଧରୁ ଏଭଳି ଦଣ୍ଡ ବିଧାନ କରିଥିଲେ । ଶତଚେଷ୍ଟା ସତ୍ତ୍ୱେ ଶୂଳର ତୀକ୍ଷ୍ଣାଗ୍ରଭାଗ ମୋ ଶରୀରରୁ କାହିଁକି ବାହାରୁ ନାହିଁ ? ଏଭଳି କେଉଁ ମହାପାପ ମୁଁ କରିଥିଲି ?"

ଧର୍ମରାଜ ସ୍ତମ୍ଭୀଭୂତ ହୋଇଗଲେ । ଋଷିଙ୍କ କ୍ରୋଧ ଦେଖି ତାଙ୍କ ମୁହଁ ଶୁଖିଗଲା । ସାନ୍ତ୍ୱନା ଦେବାଭଙ୍ଗୀରେ ସେ କହିଲେ—"ବ୍ରହ୍ମନ୍ ! ଆପଣ ଦୟାକରି ବସନ୍ତୁ । ଆପଣ ସୁସ୍ଥ ହୁଅନ୍ତୁ । ତା' ପରେ ଆପଣ ଯାହା ପଚାରିବେ ମୁଁ ସବୁ ପ୍ରଶ୍ନର ଉତ୍ତର ଦେବ । ଋଷିଙ୍କ କ୍ରୋଧ ସେତେବେଳେ ଆଉ ଶାନ୍ତହେବାର ନ ଥିଲା ।" ସେ କହିଲେ—"ନାଁ ନାଁ, ଆପଣ ପ୍ରଥମେ ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ, ତା'ପରେ ମୁଁ ବସିବ ।" ନିରୁପାୟ ହୋଇ ଧର୍ମରାଜ କହିଲେ—"ବ୍ରହ୍ମନ୍ ! ବାଲ୍ୟକାଳରେ ଆପଣ କେତେକ ପତଙ୍ଗ ଧରି ତାଙ୍କ ଦେହରେ କୁଶକଣ୍ଟା ଫୋଡ଼ି ଛାଡ଼ି ଦେଇଥିଲେ । ସେହି ଅପରାଧରେ ଆପଣଙ୍କୁ ଶୂଳଦଣ୍ଡଜନିତ ଦାରୁଣ ଦୁଃଖ ସହିବାକୁ ପଡ଼ିଲା । ଆପଣ ସେହି ପତଙ୍ଗଗୁଡ଼ିକର ଶରୀରରୁ କୁଶକଣ୍ଟା ବାହାର କରି ନ ଥିଲେ । ସେହି କାରଣରୁ ଶୂଳର ଅଣିକାଠିଟି ମୃତ୍ୟୁପର୍ଯ୍ୟନ୍ତ ଆପଣଙ୍କ ଶରୀରରେ ଏହିଭଳି ଲାଗି ରହିବ ।"

"ଋଷି ପଚାରିଲେ—ଏହା କେବେକାର କଥା ? ଯମଙ୍କଠାରୁ ଏହି ଘଟଣା ଅତି ପିଲାବେଳେ ଘଟିଥିବାର ଜାଣି ଋଷି କହିଲେ – ବାଲ୍ୟକାଳରେ ଧର୍ମଅଧର୍ମ ଜ୍ଞାନ ରହେନାହିଁ । ଯଦି ବା କିଛି ସେପରି କରିଥିବି, ସେ ସମସ୍ତ ବାଲସୁଲଭ ଚପଳତା ବ୍ୟତୀତ ଆଉ କିଛି ନୁହେଁ । ପିଲାବେଳର ସେହି ଅଜ୍ଞାତ ଅପରାଧ ପାଇଁ ଆପଣ ଏଭଳି କଠୋର ଦଣ୍ଡବିଧାନଦ୍ୱାରା ଶୁଦ୍ରୋଚିତ କାର୍ଯ୍ୟ କରିଛନ୍ତି । ସେଥିପାଇଁ ମୁଁ ଅଭିଶାପ ଦେଉଛି—ଆପଣ, ପୃଥିବୀରେ ଶହେ ବର୍ଷ ପର୍ଯ୍ୟନ୍ତ ଶୂଦ୍ରଭାବେ କାଳ ଅତିବାହିତ କରିବେ ।

ଧର୍ମରାଜ ମଧୁର ବିନୟ ବଚନଦ୍ୱାରା ଋଷିଙ୍କୁ ପ୍ରସନ୍ନ କରାଇ କହିଲେ— "ଭଗବନ୍ ! ଯେଉଁ ଦୋଷ ମୋତେ ଦେଇଥିଲେ, ଆପଣ ମଧ୍ୟ ସେହି ଅପରାଧ କରୁଛନ୍ତି । ଯଥାର୍ଥ ନ୍ୟାୟ କରିଥିଲେ ମଧ୍ୟ ମୋତେ ଆପଣ ଶୂଦ୍ରହେବା ନିମିତ୍ତ ଘୋର ଅଭିଶାପ ଦେଲେ ?" ମହାମୁନି ଅଣି ମାଣ୍ଡବ୍ୟ ସେତେବେଳକୁ ଶାନ୍ତ ହୋଇ ଯାଇଥିଲେ । ସେ କହିଲେ—"ଧର୍ମରାଜ ! ମୁଁ କେବେହେଲେ ମିଛ କହି

Digitized by srujanika@gmail.com

ନାହିଁ । ନେଣୁ ଆପଣଙ୍କୁ ପୃଥିବୀରେ ଶୂଦ୍ରଯୋନିରେ ଜନ୍ମ ନେବାକୁ ପଡ଼ିବ; କିନ୍ତୁ ନାମତଃ ଆପଣ ଶୂଦ୍ର ହେବେ । ଜନମଙ୍କ ପାଇଁ ଆପଣ ଶୂଦ୍ରଭାବେ ସ୍ୱୀକୃତ ହେବେ; କିନ୍ତୁ ମହାମୁନି ବ୍ୟାସଦେବ ଆପଣଙ୍କର ଜନକ ହେବେ । ରାଜକୁଳରେ ଆପଣ ଶ୍ରେଷ୍ଠ ଓ ମାନନୀୟ ବ୍ୟକ୍ତିଭାବେ ପୂଜିତ ହେବେ । ସମସ୍ତେ ଆପଣଙ୍କୁ ଦେବତାଙ୍କ ପରି ଆଦର କରିବେ । ଆପଣଙ୍କ ଧର୍ମନୀତି ଓ ନ୍ୟାୟବିଚାର ଯେନି ପଣ୍ଡିତମାନଙ୍କଦ୍ୱାରା ଆଦୃତ ହେବେ । ସବୁଠାରୁ ବଡ଼ ଲାଭ ଆପଣଙ୍କର ହେବ, ଆପଣ ନନ୍ଦନନ୍ଦନ ଭଗବାନ ଶ୍ୟାମସୁନ୍ଦରଙ୍କ ଅତ୍ୟନ୍ତ ପ୍ରିୟ ହେବେ । ମାନବ ବର୍ଷ ଶହେ ବର୍ଷରୁ କିଛି ଅଧିକ ବର୍ଷ ଅର୍ଥାତ୍ ଦୈବବର୍ଷର ପାଞ୍ଚ ମାସ ଯାଏ ଆପଣ ଶୂଦ୍ର ଯୋନିରେ ରହି ପୁଣି ନିଜ ପଦରେ ପ୍ରତିଷ୍ଠିତ ହେବେ । ଏହା କହି ଋଷି ସ୍ୱସ୍ଥାନକୁ ଫେରିଗଲେ ।"

ଶୌନକ ପଚାରିଲେ—"ଧର୍ମରାଜ ଚାଲିଗଲା ପରେ ସେହି ସମୟରେ କିଏ ପାପୀମାନଙ୍କୁ ପାପଫଳ ଓ ପୁଣ୍ୟାତ୍ମାମାନଙ୍କୁ ପୁଣ୍ୟଫଳ ଦେଉଥିଲେ । ଯମରାଜାଙ୍କ କାର୍ଯ୍ୟ ତ ବନ୍ଦ ହୋଇଯାଇଥିବ । ଏହା ଶୁଣି ମହର୍ଷି ସୂତ ଉତ୍ତରଦେଲେ—ହେ ଶୌନକ ! ସଂସାରର କାମ କ'ଣ କେବେ ବନ୍ଦ ହୁଏ ? ଶହ ଶହ ଯମ, ଇନ୍ଦ୍ର, କୁବେର, ବରୁଣ, ବଦଳିଗଲେଣି । ଶହ ଶହ ଥର ସୃଷ୍ଟିର ପ୍ରଳୟ ଘଟିଲାଣି । ଯମରାଜ ଯେତେଦିନ ପର୍ଯ୍ୟନ୍ତ ଶୂଦ୍ରଯୋନିରେ ରହିଲେ, ସେତେଦିନ ପର୍ଯ୍ୟନ୍ତ ପିତୃଗଣଙ୍କ ମଧ୍ୟରୁ ଅର୍ଯ୍ୟମା ନାମକ ପିତର ଯମରାଜଙ୍କ କାର୍ଯ୍ୟ ପରିଚାଳନା କରିଥିଲେ । ବିଦୁର ଶରୀର ତ୍ୟାଗକରି ଯମରାଜ ନିଜଲୋକକୁ ଫେରିଆସି ପୂର୍ବବତ୍ ନ୍ୟାୟକାର୍ଯ୍ୟ ପରିଚାଳନା କରିଥିଲେ ।"

ଶୌନକ ପଚାରିଲେ—"ହେ ମହର୍ଷେ ! ଆପଣ ବଡ଼ ଅଦ୍ଭୁତ କଥା ଶୁଣାଇଲେ । ବିଦୁର କିପରି ନିଜର ଭୌତିକ ଶରୀର ତ୍ୟାଗ କରିଥିଲେ, ତାହା ଦୟାକରି କହିବା ନିମିତ୍ତ ଅନୁରୋଧ ।

**ବାଁଧେ ଚୋରନ ସହିତ ନିକଟ ନରପତିକେ ଲାୟେ ।**
**ବିନୁ ବିଚାର ମୁନି ସହିତ ଚୋର ଶୂଳୀ ଲଟକାୟେ ॥**
**ତପତେ ମୁନି ନହିଁ ମରେ ମର୍ମ ଭୂପତି ଜବ ଜାନେୟା ।**
**କ୍ଷମା ଯାଚନା କରୀ ଦୋଷ ମୁନି ଆପନ ମାନେୟା ॥**

**କ୍ରୋଧିତ ଲଖି ଯମ ନେ କହୀ,'**
**ଛେଦେ କୃମି ଛୋଡ଼େ ଅବଶ ।**
**ଶାପ ଦୟୋ 'ଯମ ଶୂଦ୍ର ହୋ,**
**ଭୟେ ବିଦୁର ମୁନି କୋପ ବଶ ॥**



Digitized by srujanika@gmail.com

# ବିଦୁରଙ୍କ ହସ୍ତିନାପୁର ଆଗମନ

ବିଦୁରସ୍ତୀର୍ଥଯାତ୍ରାୟାଂ ମୈତ୍ରେୟାଦାତ୍ମନୋ ଗତିମ୍ ।
ଜ୍ଞାତ୍ୱାଗାଦ୍ଧସ୍ତିନାପୁରଂ ତୟାବ ପ୍ତବିବିତ୍ସିତଃ ॥
(ଭାଗବତ-୧. ୧୩. ୧.)

ଛପ୍ପୟ

ଆୟେ ଗୃହ ବିଦୁର ଯୁଧିଷ୍ଠିର ମୁନି ହର୍ଷାୟେ ।
କରି ସ୍ୱାଗତ ସତ୍କାର ପ୍ରେମ ତେ ପୁରମେଁ ଲାୟେ ॥
ପୁନି ପୁଛି କୁଶଲାତ କୃଷ୍ଣକୀ କହୋ କହାନୀ ॥
ତିରୋଭାବ କୁଁ ତ୍ୟାଗିବିଦୁରନେ ସଭୀ ବଂଖାନୀ ॥
ସ୍ୱୟଂ ଧର୍ମ ସତ୍ ବରଷ ତକ,
ଶୂଦ୍ର ଭୟେ ମୁନି ଶାପ ସୁନି ।
ଶୂଲୀ କେ କାରଣ କୁପିତ,
ଶାପ ଦୟୋ ମାଣ୍ଡବ୍ୟ ମୁନି ॥

ପ୍ରକୃତ ବନ୍ଧୁ ଦୁଃସମୟରେ ସାହାଯ୍ୟ କରେ । ବିପଦରୁ ଉଦ୍ଧାର କରିବାଥିବା ବନ୍ଧୁ ସୁସମୟରେ ଆମପାଖରେ ଥିଲେ ଆମେ ତାକୁ ପ୍ରାଣ ଦେଇ ଭଲପାଉଁ, ଦୁଃଖ ହିଁ ମାନବର ସ୍ନେହକୁ ଉଜ୍ଜ୍ୱଳତର ଓ ତୀକ୍ଷ୍ଣତର କରିଥାଏ । ବାଲ୍ୟକାଳରେ କୌରବମାନେ ପାଣ୍ଡବଙ୍କୁ ନାନାପ୍ରକାର କଷ୍ଟ ଦେଇଥିଲେ । ସେହି ସବୁ ବିପଦରୁ ବିଦୁର ପାଣ୍ଡବମାନଙ୍କୁ ରକ୍ଷା କରିଥିଲେ ଏବଂ ସମୟୋଚିତ କର୍ତ୍ତବ୍ୟ ବିଷୟରେ ପରାମର୍ଶ ଦେଉଥିଲେ । ଧର୍ମରାଜ ବର୍ତ୍ତମାନ ହସ୍ତିନାର ରାଜା । ତେଣୁ ବିଦୁରଙ୍କ ଅବସ୍ଥା କ'ଣ ହେଲା, ସେ ବିଷୟ ଚିନ୍ତାକରି ଶୌନକ ମହର୍ଷି ସୂତଙ୍କୁ ପଚାରିଲେ—"ମହାଶୟ, ଆପଣ ସଂକ୍ଷେପରେ ମହାଭାରତର କଥା କହିଛନ୍ତି । ଅଶ୍ୱତ୍ଥାମାଙ୍କ ବ୍ରହ୍ମାସ୍ତ୍ରରୁ ଗର୍ଭସ୍ଥ ଶିଶୁ ପରୀକ୍ଷିତଙ୍କୁ ଭଗବାନ୍ ଯେପରି ରକ୍ଷା କରିଥିଲେ, ତାହା ଆମେ ଶୁଣିଛୁ । ଏହାପରେ ପରୀକ୍ଷିତଙ୍କ ଜନ୍ମ, ଭଗବାନଙ୍କ ଦ୍ୱାରକା ଆଗମନ, ଯୁଧିଷ୍ଠିରଙ୍କ ଅଶ୍ୱମେଧ ଯଜ୍ଞ ପ୍ରସଙ୍ଗ ମଧ୍ୟ ଆପଣ ସଂକ୍ଷେପରେ ଆମ୍ଭମାନଙ୍କୁ ଶୁଣାଇଛନ୍ତି । ବର୍ତ୍ତମାନ ବିଦୁରଙ୍କ ଅବସ୍ଥା କ'ଣ ହେଲା ?

Digitized by srujanika@gmail.com

ଧୃତରାଷ୍ଟ୍ର ହସ୍ତିନାପୁରରେ କେତେଦିନ ରହିଲେ ? ପାଣ୍ଡବମାନେ ମହାରାଜ ପରୀକ୍ଷିତଙ୍କୁ କେବେ ଓ କିପରି ରାଜ୍ୟଭାର ଅର୍ପଣ କଲେ ! ଶେଷରେ ପାଣ୍ଡବମାନେ କିପରି ଶରୀର ତ୍ୟାଗକଲେ ? ଏ ସମସ୍ତ ବିବରଣୀ ସହିତ ରାଜା ପରୀକ୍ଷିତଙ୍କ ରାଜ୍ୟଶାସନ ପ୍ରଣାଳୀ ଏବଂ ଗଙ୍ଗାତଟରେ ତାଙ୍କର ଦେହତ୍ୟାଗ କରିବାର କାରଣ ଆମ୍ଭମାନଙ୍କୁ ଦୟାକରି କହନ୍ତୁ ।"

ମହର୍ଷି ସୂତ ଶୌନକଙ୍କ ପ୍ରଶ୍ନର ଉତ୍ତର ଦେବାକୁଯାଇ କହିଲେ— "ମହାଭାଗ ! ଆପଣ ପ୍ରଶ୍ନର ଉତ୍ତରଦେବା ପ୍ରସଙ୍ଗରେ ପରାତ୍ପର ପ୍ରଭୁ ଭଗବାନ୍ ବାସୁଦେବଙ୍କ କଥା କହିବାର ସୁଯୋଗ ମତେ ଦେଇଛନ୍ତି । ବର୍ତ୍ତମାନ ମୁଁ ବିଦୁରଙ୍କ ବୃତ୍ତାନ୍ତ କହୁଚି ଶୁଣନ୍ତୁ ।"

ଦୁଷ୍ଟ ଦୁର୍ଯ୍ୟୋଧନର ଦୁର୍ବ୍ୟବହାରରେ ଦୁଃଖିତ ହୋଇ ବୁଦ୍ଧିମାନ୍ ବିଦୁର ମହାଭାରତ ଯୁଦ୍ଧ ପୂର୍ବରୁ ନିଜର ଧନୁଟି କୌରବଙ୍କ ଦ୍ୱାରଦେଶରେ ଥୋଇଦେଇ ଉଦାସଭାବେ ତୀର୍ଥଯାତ୍ରା କରିବାକୁ ଚାଲିଗଲେ । ସେ ଥିଲେ ମହାତ୍ମା; ତେଣୁ କୌଣସି ବିଷୟରେ ତାଙ୍କର ମୋହମାୟା ନ ଥିଲା । ହସ୍ତିନାପୁରକୁ ପୁନର୍ବାର ଫେରିଆସିବାର ଇଚ୍ଛା ମଧ୍ୟ ସେ ରଖି ନ ଥିଲେ; କିନ୍ତୁ ନିଜର ବଡ଼ଭାଇ ଓ ଅନ୍ଧ ଭାଇ ଧୃତରାଷ୍ଟ୍ରଙ୍କ ମଙ୍ଗଳକାମନା ବିଦୁରଙ୍କୁ ହସ୍ତିନାପୁର ଟାଣି ଆଣିଲା । ଯାତ୍ରାକାଳରେ ବ୍ରଜପୁରରେ ଉଦ୍ଧବଙ୍କଠାରୁ ଶ୍ରୀକୃଷ୍ଣଙ୍କ ତିରୋଭାବ ଓ ମହାମୁନି ମୈତ୍ରେୟଙ୍କ ସମ୍ବାଦ ଜାଣି ବିଦୁର ହରଦ୍ୱାର ଗଲେ । ସେଠାରେ ମୈତ୍ରେୟଙ୍କ ସହିତ ଆଲୋଚନାରେ ନିଜର ସମସ୍ତ ଶଙ୍କାରୁ ମୁକ୍ତହୋଇ ବିଦୁର ହସ୍ତିନାପୁରକୁ ଆଗମନ କଲେ ।

କିନ୍ତୁ ଉଦ୍ଧବଙ୍କ ସହିତ ବିଦୁରଙ୍କ ସାକ୍ଷାତ କିପରି ହେଲା ଏବଂ ମହାମୁନି ମୈତ୍ରେୟଙ୍କୁ ସେ କି କି ପ୍ରଶ୍ନ ପଚାରିଲେ ବୋଲି ଶୌନକ ଜାଣିବାକୁ ପ୍ରାର୍ଥନା କରିବାରୁ ସୂତ କହିଲେ—"ମହାଭାଗ ! ଏ ସମସ୍ତ କଥା ପ୍ରସଙ୍ଗକ୍ରମେ କହିବି । ହସ୍ତିନାପୁରରେ ବିଦୁର କ'ଣ କ'ଣ କଲେ ତାହା ହିଁ ଶୁଣନ୍ତୁ ।"

ଉଦ୍ଧବଙ୍କ ପରାମର୍ଶ ଅନୁସାରେ ବିଦୁର ହରଦ୍ୱାର ଯାଇ ସେଠାରେ ଏକ ଏକାନ୍ତ ସ୍ଥାନରେ ଶାନ୍ତଭାବେ ବସିଥିବା ମୈତ୍ରେୟଙ୍କୁ ସାକ୍ଷାତ କଲେ । ନିଜର ସନ୍ଦେହ ଦୂରକରିବା ନିମିତ୍ତ ବିଦୁର ମୈତ୍ରେୟଙ୍କୁ କେତୋଟି ପ୍ରଶ୍ନ ପଚାରି ଏବଂ ତାଙ୍କ ଉତ୍ତରରେ ସନ୍ତୁଷ୍ଟ ହୋଇ ହସ୍ତିନାପୁରକୁ ଗଲେ । ସେ ନଗରର ନିକଟବର୍ତ୍ତୀ ହେବାପରେ କେହି ଜଣେ ମହାରାଜ ଯୁଧିଷ୍ଠିରଙ୍କୁ ବିଦୁରଙ୍କ ଆଗମନବାର୍ତ୍ତା ଜଣାଇଦେଲେ । ଧର୍ମରାଜ ଏହି ସମ୍ବାଦ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ । ନିଜର ପିଲାପରି ଯେ ଆମ୍ଭମାନଙ୍କୁ ପ୍ରତିପାଳନ କରିଥିଲେ ।

Digitized by srujanika@gmail.com

ସେହି ପ୍ରାଣପ୍ରତିମ ପିତୃବ୍ୟ ଆଜି ଆସୁଛନ୍ତି, ଏହାଭାବି ଯୁଧିଷ୍ଠିରଙ୍କ ଶରୀର ଅତ୍ୟନ୍ତ ପୁଲକରେ ରୋମାଞ୍ଚିତ ହୋଇଉଠିଲା । ସାଙ୍ଗେ ସାଙ୍ଗେ ତାଙ୍କ ଆଦେଶରେ ନଗରବାସୀ ଅବାଳବୃଦ୍ଧ ସମସ୍ତେ ବିଦୁରଙ୍କ ସ୍ୱାଗତପାଇଁ ପ୍ରସ୍ତୁତ ହେଲେ ।

ସମଗ୍ର ହସ୍ତିନାରେ ଆନନ୍ଦର ଢେଉ ଖେଳିଗଲା । ନଗରବାସୀ ଆବାଳ ବୃଦ୍ଧବନିତା ସ୍ୱାଗତ ଉତ୍ସବର ପ୍ରସ୍ତୁତିରେ ଲାଗି ପଡ଼ିଲେ । ନଗରର ସମସ୍ତ ମାର୍ଗ, ଗୃହ, ଚତୁଷ୍ପଥ ଓ ମୁଖ୍ୟ ପ୍ରବେଶଦ୍ୱାର ପତାକାମାଳାରେ ସଜ୍ଜିତ ହେଲା, ସମସ୍ତେ ନିଜନିଜର ରଥ ଓ ବାହନରେ ବସି ବିଦୁରଙ୍କ ସ୍ୱାଗତ ନିମିତ୍ତ ନଗରର ମୁଖ୍ୟଦ୍ୱାରରେ ସମବେତ ହେଲେ । ବହୁ ଦୂରରୁ ବିଦୁରଙ୍କୁ ଆସୁଥିବାର ସମସ୍ତେ ଦେଖିଲେ । ଜଟାମଣ୍ଡିତ, ବଲ୍‌କଳ ପରିହିତ ତେଜସ୍ୱୀଙ୍କ ଭଳି ବିଦୁର ପାଦରେ ଚାଲି ଚାଲି ଆସୁଥିଲେ । ହସ୍ତିନାବାସୀ ଯଥାଶୀଘ୍ର ରଥ ଓ ବାହନରୁ ତଳକୁ ଆସି ଦୌଡ଼ି ଦୌଡ଼ି ଯାଇ ବିଦୁରଙ୍କ ପାଦତଳେ ପଡ଼ି କାନ୍ଦିବାକୁ ଲାଗିଲେ । ଏହି ସମୟରେ ଅନ୍ଧ ଧୃତରାଷ୍ଟ୍ର ମଧ୍ୟ ସାନଭାଇର ସ୍ୱାଗତ ପାଇଁ ଆସି ସଞ୍ଜୟ, କୃପାଚାର୍ଯ୍ୟ ଓ ପାଣ୍ଡବ ତଥା ଆତ୍ମୀୟସ୍ୱଜନଙ୍କ ମଧ୍ୟରେ ଠିଆ ହୋଇଗଲେ । କେହି କେବେ ବିଦୁରଙ୍କ ପ୍ରତ୍ୟାଗମନ ଆଶା ରଖି ନ ଥିଲେ; କିନ୍ତୁ, ହଠାତ୍ ତାଙ୍କୁ ଦେଖି ରଙ୍କ ନିଧି ପାଇଲାଭଳି ଆନନ୍ଦ ଲାଭକଲେ । ଅନ୍ଧର ଚକ୍ଷୁଲାଭ, ହତାଶର ରୋଗମୁକ୍ତ ଓ ମୃତ ପୁରୁଷର ଶରୀରରେ ପ୍ରାଣସଞ୍ଚାର ହେଲାଭଳି ଅବ୍ୟକ୍ତ ଆନନ୍ଦ ପ୍ରତ୍ୟେକ ହସ୍ତିନାବାସୀ ଅନୁଭବ କଲେ । ସମସ୍ତେ ଲଜ୍ଜା, ପ୍ରେମ ଓ ନମ୍ରତାର ସହିତ ବିଦୁରଙ୍କୁ ଆଲିଙ୍ଗନ କଲେ । ସମସ୍ତେ ଆନନ୍ଦାଶ୍ରୁସିକ୍ତ ନୟନରେ ତପୋକ୍ଲିଷ୍ଟ କୃଶଶରୀର ବିଦୁରଙ୍କୁ ଏକଦୃଷ୍ଟିରେ ଚାହିଁରହିଲେ । ବିଦୁର ସମସ୍ତଙ୍କୁ ଯଥୋଚିତ ସମ୍ମାନ ଓ ଶ୍ରଦ୍ଧା ଜଣାଇ ପରସ୍ପର କୁଶଳ ପ୍ରଶ୍ନ ପରେ ରାଜଭବନ ଆଡ଼କୁ ଅଗ୍ରସର ହେଲେ ।

ରାଜଭବନରେ ଧର୍ମରାଜ ଉତ୍ତମ ଆସନରେ ବସାଇ ବିଦୁରଙ୍କୁ ପୂଜାକଲେ । ପାଣ୍ଡବ ଓ କୌରବକୁଳର କୁନ୍ତୀ, ଗାନ୍ଧାରୀ, ଦ୍ରୌପଦୀ, ସୁଭଦ୍ରା, ଉତ୍ତରା, କୃପୀ ଓ ଅନ୍ୟାନ୍ୟ ବଧୂଗଣ ଆସି ବିଦୁରଙ୍କୁ ଦର୍ଶନ କଲେ । ବିଦୁର ସମସ୍ତଙ୍କୁ ଯଥାରୀତି କୁଶଳ ପ୍ରଶ୍ନ ପଚାରିଲେ । ବିଦୁରଙ୍କ କୃଶ ଓ ରୁକ୍ଷ ଶରୀର ଉପରେ ହାତବୁଲାଇ ଦେବୀ କୁନ୍ତୀ କହିଲେ—"ହାୟ, ବିଦୁର ! ତୁମେ ତ ଆମ୍ଭମାନଙ୍କୁ ଭୁଲିଗଲ । ଦୁଃଖରେ ତୁମେ ଆମ ସହିତ ରହିଥିଲ । ସୁଖ ସମୟରେ ତୁମକୁ ନ ଦେଖି ଆମେ ସମସ୍ତେ ପୂର୍ବଠାରୁ ଅଧିକ ଦୁଃଖ ଅନୁଭବ କରିଛୁ । ତୁମେ ତ ପୁରାପୁରି ବଦଳି ଯାଇଛ । ତୁମକୁ ଦେଖି ଚିହ୍ନି ହେଉନି । ଦେହକୁ ପୁରାପୁରି ଶୁଖିଲା କାଠ କରିଦେଇଛ ।"

Digitized by srujanika@gmail.com

ଲୁହଭରା ଆଖି ଦୁଇଟିକୁ ପୋଛୁ ପୋଛୁ ବିଦୁର କହିଲେ—"ବାଷକ, କାହାକୁ ଦୋଷ ଦେବା ? ସବୁ କିଛି ଭାଗ୍ୟର ଫଳ । ମଣିଷ ନିଜର ପ୍ରାରବ୍ଧ ସୂତ୍ରରେ ବନ୍ଧା । "ଦଇବ ଦଉଡ଼ି ମଣିଷ ଗାଈ । ଯେଣିକି ଟାଣିଲେ ତେଣିକି ଯାଇ ।" ଭାଗ୍ୟ ଯୁଆଡ଼େ ଟାଣିବ, ମଣିଷ ଇଚ୍ଛା ବିରୁଦ୍ଧରେ ନିରୁପାୟ ହୋଇ ସେଇ ଆଡ଼କୁ ଟାଣି ହୋଇଯିବ ।"

ବିଦୁରଙ୍କ କଥା ଶୁଣି ଧର୍ମରାଜ ଯୁଧିଷ୍ଠିର କହିବାକୁ ଲାଗିଲେ—"କକେଇ ସତ କହିଲେ, ଆମ କଥା ଆପଣଙ୍କର ମନେ କେବେ ପଡ଼ୁଥିଲା କି ? ପକ୍ଷୀ ନିଜ ଅଣ୍ଡାକୁ ଯେପରି ଡେଣା ଭିତରେ ଲୁଚେଇ ରଖେ, ଆପଣ ଆମକୁ ସେହିପରି ରକ୍ଷା କରୁଥିଲେ । ମାଳୀ ତା'ର ସ୍ନେହବର୍ଦ୍ଧିତ ଗଛ ଲତାକୁ ଦୃଷ୍ଟି ଦେଲାପରି, ବାପ, ମା' ନିଜର ଏକମାତ୍ର ପୁତ୍ର ପ୍ରତି ବ୍ୟଗ୍ର ହେଲାଭଳି ଏବଂ ବିଲରେ ସଦ୍ୟ ଅଙ୍କୁରିତ ଶସ୍ୟକୁ ଦେଖି କୃଷକ ଚିନ୍ତିତ ହେବାଭଳି ଆପଣ ଆମର ରକ୍ଷା-ପାଇଁ ସର୍ବଦା ଚିନ୍ତିତ, ବ୍ୟସ୍ତ ଓ ସାବଧାନ ରହୁଥିଲେ । ଆପଣଙ୍କ ଦୟାରୁ ଆମେ ଏତେ ବଡ଼ ହେଲୁ, ଶତ୍ରୁ ନିପାତ କଲୁ ଓ ସସାଗରା ଧରାର ଆଧିପତ୍ୟ ଲାଭକଲୁ । ଦୁଷ୍ଟ ଦୁର୍ଯ୍ୟୋଧନ ଭୀମକୁ ବିଷ ଦେଇ ମାରିବାକୁ ଇଚ୍ଛା କରିଥିଲା । ଆପଣ ଏହି ମନ୍ଦ ଉଦ୍ଦେଶ୍ୟ ଆମକୁ ଜଣାଇଥିଲେ । କୌରବମାନେ ବାରୁଣାବନ୍ତରେ ମା'ଙ୍କ ସହିତ ଆମ ସମସ୍ତଙ୍କୁ ପୋଡ଼ି ମାରିଦେବାପାଇଁ ଚେଷ୍ଟା କରିଥିଲେ । ସେଇ ଉଦ୍ଦେଶ୍ୟରେ ସେମାନେ ଜଉଘର ନିର୍ମାଣ କରାଇଥିଲେ; କିନ୍ତୁ ଆପଣ ଆମକୁ ସେଥିରୁ ରକ୍ଷା କରିବାପାଇଁ ଗୁପ୍ତ-ସୁଡ଼ଙ୍ଗ ନିର୍ମାଣପୂର୍ବକ କୈବର୍ତ୍ତ ଓ ନୌକା ପଠାଇ ଆମର ସହାୟତା କରିଥିଲେ । ଆପଣ ଆମ ଚିନ୍ତା କରି ନ ଥିଲେ ଆମ୍ଭେମାନେ ସେଇଠି ଶେଷ ହୋଇଯାଇ ଥାଆନ୍ତୁ; ତଥାପି ଆପଣ ଆମ୍ଭମାନଙ୍କୁ ଛାଡ଼ି ଚାଲିଗଲେ କାହିଁକି ?"

ଯୁଧିଷ୍ଠିରଙ୍କୁ ଉତ୍ତର ଦେବାକୁ ଯାଇ ବିଦୁର କହିଲେ—"କିଏ କାହାକୁ ରକ୍ଷା କରିପାରିବ ? ଆପଣମାନଙ୍କ ଭଳି ଦେବପୁତ୍ରଙ୍କୁ ରକ୍ଷା କରିବାରେ ମୋର ବା କି ସାମର୍ଥ୍ୟ ଥିଲା । ଆପଣମାନଙ୍କୁ ଆପଣଙ୍କ ଧର୍ମ ହିଁ ରକ୍ଷାକରିଛି । ସତ୍ୟନିଷ୍ଠା, ସଦାଚାର, ସାଧୁତା ହିଁ ଆପଣମାନଙ୍କୁ ସର୍ବଦା ରକ୍ଷା କରିଆସିଛି । "ଧର୍ମୋ ରକ୍ଷତି ରକ୍ଷିତଃ"—ଅର୍ଥାତ୍ ଧର୍ମରକ୍ଷାକାରୀଙ୍କୁ ଧର୍ମ ହିଁ ରକ୍ଷା କରେ । ଭଗବାନଙ୍କ ବିଚାରରେ ଟିକିଏ ବିଳମ୍ବ ହୋଇପାରେ । ଦୁର୍ଯ୍ୟୋଧନ ମୋତେ ଏଭଳି କୁବାକ୍ୟ କହିଥିଲେ ଯେ, ସେସବୁ ଶୁଣି କୌଣସି ଲୋକ ତାଙ୍କ ରାଜ୍ୟରେ କେବେହେଲେ ରହିପାରି ନ ଥାନ୍ତା । ତୁମ ପକ୍ଷରେ ରହିଥିଲେ ଲୋକେ ମୋର ଘୋର ନିନ୍ଦା କରିଥାନ୍ତେ । ପୁଣି ମୋ ଆଖି ଆଗରେ ଆତ୍ମୀୟସ୍ୱଜନ, ବନ୍ଧୁବର୍ଗଙ୍କ ହତ୍ୟାକାଣ୍ଡ

Digitized by srujanika@gmail.com

ଦେଖିବାକୁ ମୁଁ ଚାହୁଁ ନ ଥିଲି। ତେଣୁ ତୀର୍ଥଯାତ୍ରାପାଇଁ ଚାଲିଗଲି । ଏହାଦ୍ୱାରା ମୋର ପୁଣ୍ୟ ଅର୍ଜନ ହେଲା ଏବଂ ଯୁଦ୍ଧର ଭଲ ମନ୍ଦ କଥା ଶୁଣିବାକୁ ପଡ଼ିଲା ନାହିଁ ।''

ତୀର୍ଥଯାତ୍ରା ସମୟଗୁଡ଼ିକ କି ଭାବରେ କଟାଇଲେ ବୋଲି ଯୁଧିଷ୍ଠିର ପଚାରିବାରୁ ବିଦୁର କହିଲେ—''ରାଜନ୍ ! ମୁଁ ଏଠାରୁ ବାହାରିବା ମାତ୍ରେ ହିଁ ଅବଧୂତ ଭଳି ବେଶ ଧାରଣ କଲି । ସମସ୍ତ ବସ୍ତ୍ର ଆଭୂଷଣ ତ୍ୟାଗକରି କୌପୀନ ଧାରଣ କଲି ଏବଂ କନ୍ଥା ଖଣ୍ଡିଏ ସାଙ୍ଗରେ ନେଲି । ସମଗ୍ର ଶରୀରରେ ଧୂଳି ବୋଳି ଦେଲି, ଯାହାଦ୍ୱାରା ମୋତେ କେହି ଚିହ୍ନିପାରିଲେ ନାହିଁ । ମୁଁ ଏକଦମ୍ ଏକା ଏକା ପୃଥିବୀ ଭ୍ରମଣ କଲି । ଇଚ୍ଛା ଅନୁସାରେ ଯାହା ଯେତେବେଳେ ମିଳିଲା ଖାଇଲି, ଭୂଇଁରେ ଶୋଇଲି ଓ ପାଦରେ ଚାଲି ଚାଲି ପୁଣ୍ୟତୀର୍ଥ, ନଦୀ, ପର୍ବତ, ଦେବସ୍ଥାନ, ମନ୍ଦିରମାନ ଦର୍ଶନ କଲି । ମୁଁ କୁରୁକ୍ଷେତ୍ର, ଇନ୍ଦ୍ରପ୍ରସ୍ଥ, ମଥୁରା, ବୃନ୍ଦାବନ, ଶୂକରକ୍ଷେତ୍ର, ବଟେଶ୍ୱର, ନୈମିଷାରଣ୍ୟ, ପ୍ରୟାଗ, ଅଯୋଧ୍ୟା, ଚିତ୍ରକୂଟ, କାଶୀ, ଗୟା, ଜଗନ୍ନାଥ-ପୁରୀ, ଭେଙ୍କଟାଚଳ, କାଞ୍ଚୀ, ଶ୍ରୀରଙ୍ଗ, ଚିଦମ୍ବର, କୁମ୍ଭକୋଣ, ଶ୍ରୀରାମେଶ୍ୱର, ପଣ୍ଢରପୁର, ଦ୍ୱାରକା, ପ୍ରଭାସକ୍ଷେତ୍ର ଆଦି ସ୍ଥାନ ବୁଲି ବୁଲି ଦେଖିଲି ।''

କଥା ମଝିରେ ଯୁଧିଷ୍ଠିର ପଚାରିଲେ—''ଆପଣ କ'ଣ ଦ୍ୱାରକାପୁରୀ ଓ ପ୍ରଭାସ ଯାଇଥିଲେ ? ସେଠାରେ ଯାଦବମାନେ ଆପଣଙ୍କୁ ସାକ୍ଷାତ କରିଥିବେ । ଭଗବାନ୍ ଶ୍ରୀକୃଷ୍ଣଙ୍କ ଦର୍ଶନ ମଧ୍ୟ ମିଳିଥିବ । ଅର୍ଜୁନ ତ ସେଇଠି ଅଛି । ତା' ସହିତ ସାକ୍ଷାତ ହୋଇଥିବ । ଆପଣ ମୋତେ ଶ୍ରୀକୃଷ୍ଣଙ୍କ ଖବର କହିବେ ।''

ବିଦୁର ଯୋଗବଳରେ ଅତିଶୀଘ୍ର ପ୍ରଭାସରୁ ମଥୁରାପୁରୀ ଓ ହରିଦ୍ୱାର ଦେଇ ଆସିଥିଲେ । ଯଦୁକୁଳର ବିନାଶ ବୃତ୍ତାନ୍ତ ସେ ଉଦ୍ଧବଙ୍କ ମୁଖରୁ ବାଟପୁରରେ ହିଁ ଶୁଣିଥିଲେ । ଭଗବାନ୍ ଦେବତାମାନଙ୍କ ପ୍ରାର୍ଥନାରକ୍ଷା ନିମିତ୍ତ କିପରି ଦେହତ୍ୟାଗ କରିଥିଲେ, ସେସବୁ ଦୁଃଖଦ କଥା ବିଦୁର ଶୁଣାଇବାକୁ ଉଚିତ ମନେକଲେ ନାହିଁ । ବିଦୁର ସ୍ୱଭାବତଃ ଦୟାଳୁ । ସେ ସବୁବେଳେ ପାଣ୍ଡବମାନଙ୍କୁ ଆନନ୍ଦରେ ରଖିବାପାଇଁ ଚେଷ୍ଟା କରୁଥିଲେ । ସେ ଚିନ୍ତାକଲେ—''ଦିନେ ନା ଦିନେ ଯୁଧିଷ୍ଠିର ସମସ୍ତ ସମ୍ବାଦ ଜାଣିବେ । ଅର୍ଜୁନ ଫେରିଆସିଲେ କହିବେ, ତେବେ ମୋ କହିବାରେ ଆପତ୍ତି କ'ଣ ? ଏହା ଚିନ୍ତା କରି ବିଦୁର ଯାତ୍ରାର ସମସ୍ତ ବିବରଣୀ ବର୍ଣ୍ଣନା କରିଗଲେ; କିନ୍ତୁ ଯଦୁକୁଳର ବିନାଶ ବୃତ୍ତାନ୍ତ କହିଲେନାହିଁ । ସେ କହିଲେ—ତୀର୍ଥଯାତ୍ରା ମୋର ଉଦ୍ଦେଶ୍ୟ ଥିଲା; ତେଣୁ କୌଣସିଠାରେ କୌଣସି ସମ୍ପର୍କୀୟଙ୍କ ପାଖକୁ ମୁଁ ଯାଇନାହିଁ ।''

ଧର୍ମରାଜ କହିଲେ—''ଆପଣ ସ୍ୱୟଂ ତୀର୍ଥସ୍ୱରୂପ । ଆଉ ତୀର୍ଥଯାତ୍ରାଦ୍ୱାରା ଆପଣଙ୍କର କି ଲାଭ ହେବ ? ଅବଶ୍ୟ ତୀର୍ଥସ୍ଥଳରେ ଆପଣଙ୍କୁ ଦର୍ଶନ କରି

Digitized by srujanika@gmail.com

ତୀର୍ଥଯାତ୍ରୀମାନେ ଉପକୃତ ହୋଇଥିବେ । ଆପଣ ତ ତୀର୍ଥ କରିବାକୁ ଯାଇ ନ ଥିଲେ, ବରଂ ତୀର୍ଥକ୍ଷେତ୍ରକୁ ଯଥାର୍ଥ ତୀର୍ଥରେ ପରିଣତ କରିବାକୁ ସମଗ୍ର ଭୂଖଣ୍ଡ ବିଚରଣ କରି ଆସିଲେ । ଏହା ଆପଣଙ୍କର ସ୍ୱାଭାବିକ ଗୁଣ ।

ଏହିପରି ପରସ୍ପରର ଆଲୋଚନା ପରେ ଯୁଧିଷ୍ଠିର ବିଦୁରଙ୍କ ରହିବାର ସମସ୍ତ ସୁବ୍ୟବସ୍ଥା କରିଦେଲେ । ଦେବଯୋଗ୍ୟ ମଣିମୟଭବନ ଓ ଦିବ୍ୟବସ୍ତୁ ବିଦୁରଙ୍କ ଆନନ୍ଦ ପାଇଁ ପ୍ରଦାନ କଲେ; କିନ୍ତୁ ବିଦୁରଙ୍କର ସଂସାର ସୁଖରେ ସ୍ପୃହା ନ ଥିଲା କି କୌଣସି ଭୋଗବିଳାସ ପାଇଁ ଇଚ୍ଛା ନ ଥିଲା; ତଥାପି ପାଣ୍ଡବମାନଙ୍କୁ ଖୁସି କରିବା ନିମିତ୍ତ ଏବଂ ବଡ଼ଭାଇ ଧୃତରାଷ୍ଟ୍ରଙ୍କ ମଙ୍ଗଳପାଇଁ ବିଦୁର କିଛିକାଳ ସେହି ସୁଖ ଭୋଗ ମଧ୍ୟରେ ହସ୍ତିନାରେ ଅବସ୍ଥାନ କଲେ । ପ୍ରାଣୀମାନଙ୍କର ଦଣ୍ଡବିଧାୟକ ସାକ୍ଷାତ୍ ଧର୍ମଦେବ ଅଭିଶପ୍ତ ହୋଇ ବିଦୁର ଶରୀର ଧାରଣ କରିଥିଲେ । ବିଦୁରଙ୍କ ଭଳି ମହା ବୁଦ୍ଧିମାନ୍ ମହାପଣ୍ଡିତଙ୍କୁ ପାଇ ଯୁଧିଷ୍ଠିର ବିଶେଷ ଆନନ୍ଦିତ ହୋଇଥିଲେ । ସମସ୍ତ ପ୍ରକାର ରାଜକାର୍ଯ୍ୟରେ ସେ ବିଦୁରଙ୍କ ପରାମର୍ଶ ନେଉଥିଲେ ଏବଂ ତାଙ୍କର ପରାମର୍ଶ ଅନୁସାରେ ସମସ୍ତ କାର୍ଯ୍ୟ କରୁଥିଲେ ।

**ବିଦୁର ଦେବବତ ଲଖେ ଅଂଗ ପାଣ୍ଡବ ନ ସମାୟେ ।**
**ମାନୋ ମୃତକ ଶରୀର ପ୍ରାନ୍ ଫିରତେ ଫରି ଆୟେ ।।**
**ପୁଛେ ପାଣ୍ଡବ ଚରି ! ହମେଁ ଚୌୌଁ ଅସ ବିସରାୟେ ।**
**କୁନ୍ତୀ ବୋଲୀ ଲଲ୍ ! ଭୂଲି ତୁମ ଇତ କିତ ଆୟେ ।।**
**ପ୍ରଣୟ କୋପ ଯୁତ ମଧୁର ଅତି,**
**ସୁନତ ବିଦୁର ବୋଲେ ବଚନ ।**
**ଭାଭୀ ! ଭାଗ୍ୟ ଅଧୀନ ହେ,**
**ସୁଖ ଦୁଃଖ ଅରୁ ବିଛୁରନ ମିଲନ ।।**



Digitized by srujanika@gmail.com

## ଧୃତରାଷ୍ଟ୍ରଙ୍କୁ ବିଦୁରଙ୍କ ବୈରାଗ୍ୟ ଉପଦେଶ

ରାଜନ୍ନିର୍ଗମ୍ୟତାଂ ଶୀଘ୍ରଂ ପଶ୍ୟେଦଂ ଭୟମାଗତମ୍ ।
ପ୍ରତିକ୍ରିୟା ନ ଯସ୍ୟେହ କୁତଶ୍ଚିତ୍‌କର୍ହିଚିତ୍ ପ୍ରଭୋ ।।
ସ ଏବ ଭଗବାନ୍ କାଳଃ ସର୍ବେଷାଂ ନଃ ସମାଗତଃ

( ଭାଗବତ—୧. ୧୩. ୧୮—୧୯ )

**ଛପ୍ପୟ**

ଧର୍ମ ରୂପ ହ୍ୱୈ ବିଦୁର ବନ୍ଧୁତେଁ ବୋଲେ ବାନୀ ।
ରାଜନ୍ ! କୁଟିଲ କରାଲ କାଲ କୀ କଛୁ ଗତି ଜାନୀ ।।
ଦେଖୋ ଦୈବରଚ୍ୟୋ କାଲ ସବନ କେ ସମ୍ମୁଖ ଆୟୋ ।
ଚଲୌ ତ୍ୟାଗି ତତ୍କାଲ ବିଲମ କସ ଯହାଁ ଲଗାଓ ।।

ସଗେ ସବହିଁ ସୁରପୁର ଗୟେ,
ଦେହ ଜର୍ଜରିତ ହ୍ୱୈ ଗଈ ।
ଜୀବନ ଆଶା ନା ଗଈ,
ଅନ୍ତ ସମୟ ଦୁର୍ଗତି ଭଈ ।।

ଦୁଃଖର ଦିନ କଟିବାରେ ବିଳମ୍ବ ହୁଏ; କିନ୍ତୁ ସୁଖର ଦିନ କେତେବେଳେ ଯେ ବିତିଯାଏ, ତାହା ଜଣାପଡ଼େ ନାହିଁ । ଆମ୍ଭେମାନେ ବିଭିନ୍ନକାର୍ଯ୍ୟରେ ସର୍ବଦା ବ୍ୟସ୍ତ ରହୁଁ; କିନ୍ତୁ କାଳ ବ୍ୟଗ୍ର ନ ହୋଇ ଅପେକ୍ଷା କରି ରହେ । ସ୍ତ୍ରୀ, ମିତ୍ର, ଘରଦ୍ୱାର, କୁଟୁମ୍ବ ଆଦି ଚିନ୍ତାରେ ବୁଡ଼ି ରହି ଆମେ ଅତି ଅସାବଧାନ ଭାବେ ସମୟ କଟାଉଁ; କିନ୍ତୁ କାଳ ସର୍ବଦା ଆମର ଅନ୍ତିମ ସମୟକୁ ସୁଚାଇ ଦେଉ-ଥାଏ । ଆମେ କ୍ଷଣିକ ବିଷୟସୁଖରେ ପ୍ରମତ୍ତ ଥିବାବେଳେ, କାଳ ଆମକୁ ପଛେ ପଛେ ଗୋଡ଼ାଇଥାଏ । ଆକାଶ, ପାତାଳ, ପୃଥିବୀ, ଘର, ବନ, ଶଯ୍ୟା, ଆସନ, ବାହନ ଯେଉଁଠି ଥିଲେ ବି କାଳ ଆମର ଅନୁଗମନ କରୁଥାଏ । କାହାରି ପ୍ରତି କାଳର ଦୟାମାୟା ନାହିଁ ।

Digitized by srujanika@gmail.com

ବହୁଦିନ ପରେ ପାଣ୍ଡବମାନେ ପୁନର୍ବାର ହୃତଗୌରବ ଫେରପାଇଥିଲେ । ଧର୍ମରାଜ ଯୁଧିଷ୍ଠିର ସସାଗରାଧରାର ଏକଚ୍ଛତ୍ର ସମ୍ରାଟ ହେଲେ । ସମସ୍ତ ଭାଇ, ସେବକ, ମନ୍ତ୍ରୀ, ଅମାତ୍ୟ ତାଙ୍କର ବଶବର୍ତ୍ତୀ ହୋଇଥିଲେ । ଯୁଧିଷ୍ଠିରଙ୍କ ଆଦେଶ ଅତ୍ୟନ୍ତ ସାବଧାନତାର ସହ ପାଳନ କରାଯାଉଥିଲା । ଅଶ୍ୱମେଧ ଯଜ୍ଞ କରି-ଥିବାରୁ ତାଙ୍କର ଯଶ ସର୍ବତ୍ର ପ୍ରସାରଲାଭ କରିଥିଲା । କୁଳର ଗୌରବ ବର୍ଦ୍ଧକ ସର୍ବଲକ୍ଷଣ ସମ୍ପନ୍ନ ନାତି ମଧ୍ୟ ଜନ୍ମ ହୋଇଥିଲା । ଦ୍ରୌପଦୀ ନିଜର ପତିମାନଙ୍କୁ ଦେବତାତୁଲ୍ୟ ଭକ୍ତି କରୁଥିଲେ । ଭଗବାନ୍‌ଙ୍କ ଅନୁଗ୍ରହରୁ ଧନ ସମ୍ପଦ କେଉଁଥିରେ କିଛି ଊଣା ନ ଥିଲା । ପାଣ୍ଡବମାନେ ଧର୍ମରତ ଥିଲେ । ଧର୍ମରେ ଥାଇ ସେମାନେ କାମ ଉପଭୋଗ କରୁଥିଲେ । ପାଣ୍ଡବମାନଙ୍କ ଆଶ୍ରିତ ସମସ୍ତେ ସୁଖୀ ଥିଲେ । ସମସ୍ତେ ଧୃତରାଷ୍ଟ୍ରଙ୍କୁ ପିତାଙ୍କଠାରୁ ବଳି ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ଯୁଧିଷ୍ଠିର ସକାଳେ ଭାଇମାନଙ୍କୁ ସାଙ୍ଗରେ ନେଇ ପ୍ରଥମେ ଶଯ୍ୟାରୁ ଉଠିବା ପୂର୍ବରୁ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ପ୍ରଣାମ ଜଣାଇ କୁଶଳ ପ୍ରଶ୍ନ କରନ୍ତି । ମା' କୁନ୍ତୀଙ୍କଠାରୁ ବଳି ଗାନ୍ଧାରୀଙ୍କୁ ପାଣ୍ଡବମାନେ ଆଦର କରୁଥାନ୍ତି । ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ପତିପତ୍ନୀ ଉଭୟ ପ୍ରତିଦିନ ପାଣ୍ଡବମାନଙ୍କୁ ନୂଆ ନୂଆ ଆଶୀର୍ବାଦ ପ୍ରଦାନ କରନ୍ତି ।

ଯୁଧିଷ୍ଠିର ହାତଯୋଡ଼ି ପ୍ରତ୍ୟେକ କାର୍ଯ୍ୟ ପାଇଁ ଅନୁମତି ପ୍ରାର୍ଥନା କରନ୍ତି । ତାଙ୍କର ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଅଧିକ ଧ୍ୟାନ ଦିଅନ୍ତି । କୁନ୍ତୀ ନିଜ ମହଲ ଛାଡ଼ି ସର୍ବଦା ଗାନ୍ଧାରୀଙ୍କ ପାଖରେ ହିଁ ସମୟ କଟାଉଥିଲେ । ବହୁ ଦାସଦାସୀ ଥିଲେ ମଧ୍ୟ ଗାନ୍ଧାରୀଙ୍କ ସେବାଶୁଶ୍ରୂଷା କୁନ୍ତୀ ନିଜ ହାତରେ କରୁଥିଲେ । ଗାନ୍ଧାରୀ କେବେ ଆପତ୍ତିକଲେ କୁନ୍ତୀ କହନ୍ତି—"ଆପଣମାନଙ୍କ ସେବା କରିପାରିବାର ଭାଗ୍ୟ ମୋର କାହିଁ ? ଯାହା କିଛି କରୁଛି ସେସବୁ ବହୁକଷ୍ଟରେ ମୋତେ ମିଳିଛି ।" କୁନ୍ତୀଙ୍କର ଏଭଳି ବ୍ୟବହାରରେ ଧୃତରାଷ୍ଟ୍ର ଓ ଗାନ୍ଧାରୀ ମନେ ମନେ ବହୁତ ଖୁସି ହୁଅନ୍ତି । ଭୀମସେନ ଟିକିଏ ରୁକ୍ଷ ସ୍ୱଭାବର ଥିବାରୁ ଯଦି କେବେ ଧୃତରାଷ୍ଟ୍ରଙ୍କ ପୁରୁଣା କଥା ମନେପକାନ୍ତି, ସେତେବେଳେ ଧର୍ମରାଜ ଅତି କଠୋରଭାବେ ଶପଥ ଦେଇ କହନ୍ତି—"ଭୀମ ! ଯଦି ତୁ କେବେ, ପିତାମାତାଙ୍କଠାରୁ ଅଧିକ ମାନନୀୟ ପୂଜ୍ୟ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ ମୁହଁରେ କିଛି କହିବୁ, ତେବେ ମୁଁ ରାଜ୍ୟ, ରାଜପଣ ସବୁ ତ୍ୟାଗକରି ଅଗ୍ନିରେ ପଶି ନିଜକୁ ଶେଷ କରିଦେବି ।" ସେହି ଭୟରେ ଭୀମସେନ କେବେ କିଛି କହନ୍ତିନାହିଁ । ଏହିଭଳି ପାଣ୍ଡବମାନଙ୍କ ସମୟ ବେଶ୍ ଆନନ୍ଦରେ କଟିଯିବାକୁ ଲାଗିଲା । ଅତୁଳ ଐଶ୍ୱର୍ଯ୍ୟ ହେତୁ ଦେବଦୁର୍ଲଭ ସୁଖ ଭୋଗକରିବା ମଧ୍ୟରେ ପାଣ୍ଡବମାନେ କାଳର ଗତିକୁ ଭୁଲିଗଲେ ।

ଧର୍ମାବତାର ବିଦୁର ନିଜର ଦିବ୍ୟଦୃଷ୍ଟି ବଳରେ ପାଣ୍ଡବମାନଙ୍କର ଶେଷ ପରିଣତି ଅତି ଆସନ୍ନ ହେଉଥିବାର ଦେଖି ହସ୍ତିନାପୁର ଆସିଥିଲେ । ଶ୍ରୀକୃଷ୍ଣ

Digitized by srujanika@gmail.com

କୃପାବର୍ଦ୍ଧିତ ପାଣ୍ଡବମାନଙ୍କ ଅପେକ୍ଷା ସେ ନିଜର ବଡ଼ଭାଇ ଜନ୍ମାନ୍ଧ ଧୃତରାଷ୍ଟ୍ରଙ୍କ କଥା ଅଧିକ ଭାବୁଥିଲେ । ସେ ସେହି ଘର ଭିତରେ ଥାଇ ମରିବାକୁ ବିଦୁର ପସନ୍ଦ କରୁ ନ ଥିଲେ; କିନ୍ତୁ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କ ସେବାରେ ଏପରି ବଶୀଭୂତ ହୋଇଯାଇଥିଲେ ଯେ, ସେ ତାଙ୍କ ମନର ବିପରୀତ କୌଣସି କାର୍ଯ୍ୟ କରିବାକୁ ଇଚ୍ଛା କରୁ ନ ଥିଲେ; କିନ୍ତୁ ଶୁଭାଭିଳାଷୀ ବ୍ୟକ୍ତି ବୁଝାଇ ଶୁଝାଇ 'ବା ଅତି କଠୋର ବଚନ କହି ଆତ୍ମୀୟମାନଙ୍କ ହିତସାଧନ କରିଥାଏ । ଯେଉଁମାନେ ଅସନ୍ତୁଷ୍ଟ ହେବା ଭୟରେ ନିଜର ବନ୍ଧୁବାନ୍ଧବ ଓ ମିତ୍ରର କଲ୍ୟାଣ ହେଲାଭଳି କଥା କହନ୍ତି ନାହିଁ କି କାର୍ଯ୍ୟ କରନ୍ତିନାହିଁ, ସର୍ବଦା କେବଳ ମିଷ୍ଟବଚନ କହନ୍ତି, ସେମାନେ ମିତ୍ର ନୁହେଁ ଶତ୍ରୁର କାର୍ଯ୍ୟ ହିଁ ସାଧନ କରନ୍ତି । ପ୍ରକୃତ ମିତ୍ର ଯେ କୌଣସି ଉପାୟରେ ହେଉ ପଛକେ ବନ୍ଧୁର କଲ୍ୟାଣ କରିଥାଏ । ବିଦୁର ଥିଲେ ସେହିଭଳି ଜଣେ ବନ୍ଧୁ । ସେ ଯେତେବେଳେ ଦେଖିଲେ ତାଙ୍କ ଭାଇ ଭୋଗବିଳାସ ଓ ଆତ୍ମୀୟସ୍ୱଜନଙ୍କ ମମତାରେ ଅତ୍ୟନ୍ତ ଆସକ୍ତ ହୋଇ ପଡ଼ିଛନ୍ତି, ସେତେବେଳେ ମଧୁର ବଚନ କହି କିଛି କରିହେବ ନାହିଁ ବୋଲି ଭାବି ଅତି କଠୋରଭାବେ ଧୃତରାଷ୍ଟ୍ରଙ୍କୁ କହିଲେ—"ପ୍ରଭୋ ! ଏବେ ଆପଣ ଏଠାରେ ଆଉ କାହିଁକି ପଡ଼ିରହିଛନ୍ତି । ଆପଣ ବାହାର କିଛି ଘଟଣା ଦେଖୁ ନ ଥିଲେ ବି ଆପଣଙ୍କର ପ୍ରଜ୍ଞାଚକ୍ଷୁ ରହିଛି । ଆପଣ ନିଜ ଆଗରେ ଉପସ୍ଥିତ ଭଗବାନ୍ କାଳଙ୍କୁ କ'ଣ ଦେଖିପାରୁ ନାହାନ୍ତି । ସେ ଆମ୍ଭମାନଙ୍କୁ ଭକ୍ଷଣ କରିବା ନିମିତ୍ତ ପ୍ରସ୍ତୁତ ହୋଇଆସିଛି ।"

ଧୃତରାଷ୍ଟ୍ର ଦୁଃଖିତ ହୋଇ କହିଲେ —"ଭାଇ ବିଦୁର, ତୁମେ ବଡ଼ ବୁଦ୍ଧିମାନ୍ ଅଟ । ସବୁ ବିଷୟରେ ତୁମେ ପଣ୍ଡିତ । ଏହି କାଳକୁ ପ୍ରତିରୋଧ କରିବାପାଇଁ କିଛି ଉପାୟଚିନ୍ତା କର । ଜପ, ତପ, ଅନୁଷ୍ଠାନ, ଯନ୍ତ୍ର, ମନ୍ତ୍ର ଯେଉଁ ଉପାୟରେ ତା'ର ପ୍ରତିକାର୍ କରିହେବ, ତାହା ତୁମେ ଯୁଧିଷ୍ଠିରଙ୍କୁ କହି କରାଅ ।" ଏହା ଶୁଣି ବିଦୁର ନିଜ କଥା ଉପରେ ଜୋରଦେଇ କହିଲେ—"ରାଜନ୍ ! ଏହିକାଳ ଅତ୍ୟନ୍ତ ଦୁର୍ନିବାର, ତାକୁ କୌଣସି ଉପାୟରେ ନିରୋଧ କରିହେବନାହିଁ । ତେଣୁ ନିଜର କଲ୍ୟାଣ ପାଇଁ ଆପଣ ଯଥା ଶୀଘ୍ର ଏହି ବନ୍ଧନ ସ୍ୱରୂପ ଗୃହକୁ ତ୍ୟାଗକରି ତପୋବନକୁ ପ୍ରସ୍ଥାନ କରନ୍ତୁ । ଆପଣ ତାହା ନ କରି ଯଦି ଏହିଘରେ ପଡ଼ି ରହିବେ, ତେବେ ଦୁଷ୍ଟକାଳ ନିଶ୍ଚୟ ଆପଣଙ୍କୁ ଗ୍ରାସ କରିବ । ସମସ୍ତ ପାର୍ଥିବ ବସ୍ତୁ ଯେମିତି ସେମିତି ପଡ଼ିରହିବ । ଶେଷକାଳରେ କୁଟୁମ୍ବ ଓ ପରିବାରର ଚିନ୍ତା କରି ମଲେ ପୁଣି ପୁନର୍ଭାବେ ଜନ୍ମ ଗ୍ରହଣ କରିବାକୁ ହେବ; କାରଣ 'ଅନ୍ତେ ଯା ମତିଃ ସା ଗତିଃ' ଅର୍ଥାତ୍ ଅନ୍ତିମ ସମୟରେ ଯାହା ଭାବୁଥିବ ପରଜନ୍ମରେ ତାହା ହିଁ ଘଟିବ ।

Digitized by srujanika@gmail.com

ଧର୍ମରାଜ ଯୁଧିଷ୍ଠିରଙ୍କ ପ୍ରେମପାଶରେ ଆଉ ମରିବାକୁ ଏବେ ଇଚ୍ଛାହେଉ ନାହିଁ ବୋଲି ଧୃତରାଷ୍ଟ୍ରଙ୍କ କଥା ଶୁଣି ବିଦୁର କହିଲେ—"ଛି, ଛି, ଆପଣ ଏବେ ମଧ୍ୟ ବଞ୍ଚିରହିବାକୁ ଆଶା କରୁଛନ୍ତି । ଆପଣଙ୍କ ପିତା, ମାତା, ଭାଇ, ପୁତ୍ର, ମିତ୍ର ସମସ୍ତେ ମଲେଣି । ଆପଣଙ୍କର ଇନ୍ଦ୍ରିୟଗଣ ଶିଥିଳ ହୋଇଗଲେଣି । ଦେହ ଜୀର୍ଣ୍ଣ ଶୀର୍ଣ୍ଣ ହୋଇଗଲାଣି; ତଥାପି ଆପଣ ବଞ୍ଚି ରହିବାକୁ ଚାହୁଁଛନ୍ତି । ପୁଣି ନିଜ ଘରେ ନୁହେଁ ପରର ଆଶ୍ରିତ ଭାବେ । ରାମ, ରାମ, ବୃଦ୍ଧାବସ୍ଥାରେ ଆପଣ ବୁଦ୍ଧିଛଡ଼ା ହେଲେଣି । ମୁଁ ଆପଣଙ୍କଠାରୁ ଏଭଳି ଆଶା କରୁ ନ ଥିଲି ।"

ଧୃତରାଷ୍ଟ୍ର ଅତି ଦୀନଭାବରେ କହିଲେ—"ଭାଇ ବିଦୁର, ଆଜି ତୁ ମୋତେ ଏତେ ଟାଣ ଟାଣ କଥା କାହିଁକି କହୁଛୁ ? ମୁଁ ତ ଅନ୍ଧ, ମୋର ସବୁ ପୁଅ, ନାତି, ବନ୍ଧୁବାନ୍ଧବ ମରିଗଲେ । ସେହି ଦୁଷ୍ଟମାନେ ମୋତେ ବହୁତ ଦୁଃଖ ଦେଇଛନ୍ତି । ଦୁର୍ଯ୍ୟୋଧନ ହିନେହେଲେ ମୋତେ ଆଦର କରିନାହିଁ । ଧର୍ମରାଜର ରାଜତ୍ୱ-କାଳରେ ହିଁ ମୋତେ ଯଥାର୍ଥ ପୁତ୍ରସୁଖ ମିଳିଛି । ସେ ନିଜେ ନିଜର ପାପ ହେତୁ ବନ୍ଧୁବାନ୍ଧବଙ୍କ ସହିତ ମୃତ୍ୟୁବରଣ କଲା । ଏବେ ତୁ ଯୁଧିଷ୍ଠିରର ଘରକୁ ପର ଘର ବୋଲି କାହିଁକି ଭାବୁଛୁ ? ସେମାନେ ମୋତେ ମୋର ପାଣ୍ଡୁଭାଇଠାରୁ ବଳି ସ୍ନେହ, ଶ୍ରଦ୍ଧା ଓ ଆଦର ସମ୍ମାନ କରୁଛନ୍ତି ।"

ବିଦୁର ଅତ୍ୟନ୍ତ ପ୍ରେମ-ରୋଷ ମିଶ୍ରିତ ସ୍ୱରରେ ଜୋରଦେଇ କହିଲେ—"ରାଜନ୍ ! ଏହା କହିବାବେଳେ ଆପଣଙ୍କୁ ଲଜ୍ଜା ଲାଗୁନାହିଁ ? ଧର୍ମରାଜ ଯାହା କିଛି କରୁଛନ୍ତି ସେ ସମସ୍ତ ତାଙ୍କ ପକ୍ଷରେ ସ୍ୱାଭାବିକ । ତାଙ୍କର ସେ ସମସ୍ତ କାର୍ଯ୍ୟ ପ୍ରଶଂସନୀୟ । ସେ ଜଣେ ଧର୍ମର ମର୍ମଜ୍ଞ ବ୍ୟକ୍ତି । ଆପଣଙ୍କ ସେବାଦ୍ୱାରା ସେ ନିଜର ପରଲୋକ ନିର୍ମାଣ କରୁଛନ୍ତି; କିନ୍ତୁ ଆପଣ ନିଜଆଡ଼କୁ ଦୃଷ୍ଟିଦେବା ଉଚିତ । ଆପଣ ସେମାନଙ୍କ ପ୍ରତି କି ପ୍ରକାର ବ୍ୟବହାର କରିଛନ୍ତି ? ବାରଣାବତରେ ଯେତେବେଳେ ପାଣ୍ଡବମାନଙ୍କୁ ପୋଡ଼ି ମାରିଦେବାର ମନ୍ତ୍ରଣା ଚାଲିଥିଲା, ତାହା କ'ଣ ଆପଣଙ୍କୁ ଜଣା ନ ଥିଲା ? ଭୀମକୁ ବିଷଲଡ଼ୁ ଦେଇ ମାରିବା ଓ ଲଡ଼ୁରେ ବିଷ ଦେଇ ଖୁଆଇବା ଘଟଣା କ'ଣ ଆପଣଙ୍କୁ ନ ପଚାରି କରାଯାଇଥିଲା ? ରାଜ ସଭାରେ ସମସ୍ତଙ୍କ ଉପସ୍ଥିତିରେ ସତୀ ସାଧ୍ୱୀ ଦ୍ରୌପଦୀଙ୍କୁ ଦୁଷ୍ଟମାନେ ଲଙ୍ଗଳା କରିବାକୁ ଚେଷ୍ଟା କରୁଥିଲେ, ସେତେବେଳେ ଆପଣ ସିଂହାସନରେ ବସି 'ଏବେ କଣ ହେଲା' 'ଏବେ କ'ଣ ହେଲା' ବୋଲି ବାରମ୍ବାର ପଚାରୁ ନ ଥିଲେ କି ? ସେତେବେଳେ ପାଣ୍ଡବମାନେ ଆପଣଙ୍କର ପୁତ୍ର ନ ଥିଲେ କି ? ଦ୍ରୌପଦୀ କୌଣସି ନୀଚଜାତିର ବୋହୂ ଥିଲେ କି ? ଏସବୁ କଥା କ'ଣ ମିଛ ? ଆପଣଙ୍କ ଅନୁମତିରେ ହିଁ ଜୁଆଖେଳ ହୋଇଥିଲା । ଆପଣଙ୍କ ଉପସ୍ଥିତିରେ ହିଁ ପାଣ୍ଡବମାନଙ୍କ ରାଜ୍ୟ, ଧନ ସବୁ କିଛି ଦୁଷ୍ଟ ଶକୁନି ଆଦି ଅପହରଣ କରିଥିଲେ, ଆଉ ସେମାନଙ୍କୁ

Digitized by srujanika@gmail.com

ଛିଣ୍ଡା କଉପୁନୀ ପିନ୍ଧାଇ ଆପଣଙ୍କ ଆଗରେ ହିଁ ରାଜ୍ୟରୁ ବାହାର କରି ଦେଇଥିଲେ । ସେତେବେଳେ କ'ଣ ସେମାନେ ଆପଣଙ୍କ ପୁଅ ନ ଥିଲେ ? ସେତେବେଳେ ବିନା ଚେଷ୍ଟାରେ ପ୍ରଭୂତ ସମ୍ପତ୍ତି ମିଳୁଥିଲା । ଏବେ ସେମାନେ ମରିଗଲା ପରେ ପାଣ୍ଡବ-ମାନେ ମୋର ପୁଅ ଆଉ ଦ୍ରୌପଦୀ ମୋର ବୋହୂ ବୋଲି କହୁଛ । ଛି, ଛି, ଆଜି ଏ ବୟସରେ ଆପଣଙ୍କର ପୁତ୍ରସ୍ନେହ କପରି ଜାତ ହେଲା ? ଭୀମର ମନକଥା କ'ଣ ଆପଣ ଜାଣନ୍ତି ନାହିଁ । ଧର୍ମରାଜଙ୍କ ଆଦେଶରେ ଭୀମ ସଙ୍କୋଚବଶତଃ ଦୁଆରେ ପଡ଼ି ରହିଥିବା କୁକୁରକୁ ଦେଲାଭଳି, ତୁମର ଆବଶ୍ୟକୀୟ ସାମଗ୍ରୀ ତୁମ ଆଗରେ ଫିଙ୍ଗିଦେଇ ଯାଉଛି । ଆଉ ତୁମେ ଭାବୁଛ, ତୁମ ପୁଅ ସେମାନେ, ତୁମର ସେବା କରୁଛନ୍ତି ? "ରାଜନ୍ ! ଆପଣଙ୍କ ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ଦେଖନ୍ତୁ, ଯେଉଁ ଦେହକୁ ଆପଣ ଅତି ଯତ୍ନରେ ପାଳିପୋଷି ରଖିଛନ୍ତି, ତାହା ହଠାତ୍ ଦିନେ ଆପଣଙ୍କୁ ତ୍ୟାଗ କରି ଚାଲିଯିବ । ତେଣୁ ନିଜର କଲ୍ୟାଣପାଇଁ ଆପଣ ଏବେ କିଛି କରନ୍ତୁ ।"

ଧୃତରାଷ୍ଟ୍ର କହିଲେ —"ଭାଇ ବିଦୁର, ତୁମେ ଯାହା କହିଲ ସବୁ ସତ । ପାଣ୍ଡବମାନଙ୍କ ସହିତ ଅତୀତରେ ଯେଉଁ ବ୍ୟବହାର ମୁଁ କରିଛି, ସେ କଥା ଭାବିଲେ ମୁହଁ ଦେଖାଇବାକୁ ଲଜ୍ଜା ଲାଗିବ । ଏସବୁ ସତ୍ତ୍ୱେ ସେମାନେ ବାପଠୁଁ ବଳି ମୋର ସେବା କରୁଛନ୍ତି । ଏସବୁ ତାଙ୍କ ସ୍ୱଭାବ ଅନୁରୂପ ଏବଂ ମୁଁ ଯାହା କରିଛି ସେ ସମସ୍ତ ମୋ ଦୁଷ୍ଟସ୍ୱଭାବର ପରିଚାୟକ । ଏବେ ତୁମେ ହିଁ କୁହ ବିଦୁର, ମୋର କ'ଣ କରିବା ଉଚିତ ? କ'ଣ କଲେ ମୋର ମଙ୍ଗଳ ହେବ ?"

ବିଦୁର କହିଲେ--ରାଜନ୍ ! ଦେଖନ୍ତୁ, ଏହି ଶରୀରକୁ ଲୋକେ ଶ୍ରେଷ୍ଠ ବୋଲି ଭାବୁଛନ୍ତି; କିନ୍ତୁ ମଳମୂତ୍ରାଦି ଆବର୍ଜନାର ଏହା ଏକ ଥଳି । ପ୍ରତି ଲୋମ କୂପରେ ଶରୀରର ମଳ ଭରି ରହିଛି । ଶରୀର ଅସଂଖ୍ୟ ବ୍ୟାଧିର ମନ୍ଦିର । ସେହି ବ୍ୟାଧି ହେତୁ ପ୍ରାଣୀ ସର୍ବଦା ଅଧୀର ହୁଏ । ବିଷୟାଧୀନ ବ୍ୟକ୍ତି ଠିକ୍ ଏହି ଶରୀର ଭଳି ଗୃହଦ୍ୱାର, ସୁତାଦିଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ହୋଇପଡ଼େ । ଅଜ୍ଞାନବଶରେ ବ୍ୟକ୍ତି ଏହି ଶରୀରକୁ ଆତ୍ମା ବୋଲି ଭାବି ତାହାର ଯତ୍ନରେ ସୁରକ୍ଷାରେ ବ୍ୟସ୍ତ ରହେ । ସେହିପରି ଘର ସଂସାର ପ୍ରତି ଲୋକ ଆସକ୍ତ ହୁଏ; କିନ୍ତୁ ଘରଦ୍ୱାର, କୁଟୁମ୍ବ, ପରିବାର, ଏପରିକି ଯତ୍ନପାଳିତ ଏହି ଶରୀରକୁ ତ୍ୟାଗକରି ଜୀବାତ୍ମା ଚାଲିଯାଏ । ତେଣୁ ଅନ୍ତିମ କାଳ ଆସିବା ପୂର୍ବରୁ ଏ ସବୁର ମମତା ଛିନ୍ନକରି ତପୋବନ ବା ତୀର୍ଥସ୍ଥାନକୁ ଯାଇ ଆତ୍ମଚିନ୍ତନ କରିବା ହେଉଛି ପ୍ରକୃତ ବୁଦ୍ଧିମତ୍ତାର ପରିଚାୟକ । ଅଧୀରତା ସର୍ବଦୌ ତ୍ୟାଗ କରିବା ଉଚିତ । ଏହି ଶରୀରକୁ ନିତାନ୍ତ ଅପ୍ରୟୋଜନୀୟ ମନେକରି ମୋହ ବନ୍ଧନମୁକ୍ତ ହୋଇ ବିରକ୍ତଭାବେ କୁଟୁମ୍ବଙ୍କ ଅଜ୍ଞାତରେ ଭଗବତ୍ ଚିନ୍ତା କରୁଥିବାବେଳେ ତ୍ୟାଗ କରିବା ବ୍ୟକ୍ତି ହିଁ ଧୀର ରୂପେ ପରିଚିତ । ଆପଣ ଜ୍ଞାନୀ । ଧୀରମାନଙ୍କ ମାର୍ଗ ଅବଲମ୍ବନପୂର୍ବକ ସଂସାରର

Digitized by srujanika@gmail.com

ମୋହମାୟା ଜାଲକୁ ଛିନ୍ନକରି ଯଥାଶୀଘ୍ର ତପୋବନ ଯାତ୍ରା କରିବା ଉଚିତ । ସମସ୍ତେ କ'ଣ ଜ୍ଞାନୀ ନା ସମସ୍ତେ ଗୃହତ୍ୟାଗ କରିପାରିବେ ? ଏହି ପ୍ରଶ୍ନର ଉତ୍ତର ଦେଇ ବିଦୁର ଧୃତରାଷ୍ଟ୍ରଙ୍କୁ କହିଲେ—"ହେ କୁରୁକୁଳତିଳକ ! ତ୍ୟାଗ ବିନା କଲ୍ୟାଣ ସାଧିତ ହୋଇପାରେନାହିଁ । ଆସକ୍ତି ହିଁ ବନ୍ଧନର କାରଣ । ତେଣୁ ଆପଣ ନିଜେ ବା ଅନ୍ୟର ଉପଦେଶ ଅନୁଯାୟୀ ପାର୍ଥିବବସ୍ତୁ ପ୍ରତି ଅନାସକ୍ତ ହୋଇ, ହୃଦୟରୁ ସମସ୍ତ କାମନାବାସନା ତ୍ୟାଗକରି ସେଠାରେ ଭଗବାନ୍ ବାସୁଦେବଙ୍କୁ ସ୍ଥାପନପୂର୍ବକ ଘରଦ୍ୱାର ଛାଡ଼ି ବନଗମନ କରିବା ଉଚିତ । ତାହାହିଁ ଶ୍ରେଷ୍ଠ ମନୁଷ୍ୟର କାର୍ଯ୍ୟ । ଯଦି ଶେଷ ପର୍ଯ୍ୟନ୍ତ ଏହି ମୋହଜାଲରେ ବାନ୍ଧି ହୋଇ ପଡ଼ିରହିବେ, ଆଉ ପୁଅ, ଝିଅ, ନାତି, ନାତୁଣୀଙ୍କ ମୁହଁକୁ ଚାହିଁ ଶେଯରେ ପଡ଼ି ପଡ଼ି ମୃତ୍ୟୁବରଣ କରିବେ, ତେବେ ପଶୁ, ପକ୍ଷୀ ଓ ଆପଣଙ୍କ ମଧ୍ୟରେ ଆଉ ପାର୍ଥକ୍ୟ କ'ଣ ରହିଲା ? ସେଥିପାଇଁ ଆପଣ ମୋର ପ୍ରାର୍ଥନା ସ୍ୱୀକାର କରି ଏହି ମୁହୂର୍ତ୍ତରୁ ସବୁ କିଛି ତ୍ୟାଗ କରି ପବିତ୍ର ଉତ୍ତରାଖଣ୍ଡର ପୁଣ୍ୟକ୍ଷେତ୍ରକୁ ଚାଲିଯାଆନ୍ତୁ ।"

ଧୃତରାଷ୍ଟ୍ର କହିଲେ—"ବିଦୁର, ମମତାପୂର୍ଣ୍ଣ ବାକ୍ୟ ମଧ୍ୟରେ ହିତକଥା କହୁଥିବା ଭାଇ ଏ ସଂସାରରେ ଦୁର୍ଲଭ । ତୁ କେବଳ ମୋର ଭାଇ ନୁହେଁ, ତୁ ମୋର ଗୁରୁ ଓ ଦେବତା । ଏବେ କହ, ଧର୍ମରାଜ ମୋତେ ଅତି ସ୍ନେହ କରୁଛନ୍ତି । ତାଙ୍କୁ ମୁଁ ଏ ପ୍ରସ୍ତାବ ଦେଲେ, ସେ କେବେ ମୋତେ ଛାଡ଼ିବେନାହିଁ । ମୁଁ ଆଗ୍ରହ ବା ଜିଦ୍ କଲେ ସେ ପିଲାଙ୍କ ଭଳି କାନ୍ଦିବେ ଆଉ ମୋ ପଛେ ପଛେ ସବୁ କିଛି ତ୍ୟାଗ କରି ମୋତେ ହିଁ ଅନୁଗମନ କରିବେ । ସେ ନିଜେ ବୁଢ଼ା ହୋଇଥିଲେ ମଧ୍ୟ ମୋ ଆଗରେ ତ ପିଲାଭଳି ବ୍ୟବହାର କରୁଛନ୍ତି । ମୁଁ ସବୁ କିଛି ସହିପାରିବି ଓ କରିପାରିବି; କିନ୍ତୁ ଧର୍ମରାଜଙ୍କୁ ଦୁଃଖୀ କରିପାରିବି ନାହିଁ । ତେଣୁ ଏପରି କିଛି ଉପାୟ କୁହ ଯାହାଦ୍ୱାରା ଧର୍ମରାଜା ମୋତେ ଆନନ୍ଦ ମନରେ ତପୋବନ ଯାତ୍ରା ନିମିତ୍ତ ଅନୁମତି ଦେବେ ।"

ଯୁଧିଷ୍ଠିର କେବେହେଲେ ଏ ପ୍ରସ୍ତାବରେ ରାଜି ହେବେନାହିଁ । ତେଣୁ କାହାକୁ କିଛି ନ କହି ଅଜ୍ଞାତଭାବେ ଚାଲିଯିବାକୁ ପଡ଼ିବ ବୋଲି ବିଦୁର କହିବାରୁ ଧୃତରାଷ୍ଟ୍ର କାନ୍ଦି କାନ୍ଦି କହିଲେ—"ବିଦୁର ! ତୁ ମୋଟେ ମୋତେ ଦେଖୁନାହୁଁ । ମୁଁ କେତେ ବୁଢ଼ା ହୋଇଗଲିଣି । ଜନ୍ମାନ୍ଧ ହେତୁ ମୋତେ ବାଟ ଦେଖାଯାଉନାହିଁ । ଗାନ୍ଧାରୀ ଯେ ମୋତେ ବାଟ କଢ଼େଇ ନିଅନ୍ତା, ସେ ମୋରି ପାଇଁ ଆଖି ଥାଇ ମଧ୍ୟ ଅନ୍ଧ ଭଳି ରହିଛି । କିଏ ମୋତେ ତପୋବନର ବାଟ ଦେଖାଇଦେବ ? କିଏ ମୋ ଭଳି ଅନ୍ଧର ବାଡ଼ି ଧରିପାରିବ ?"

ବିଦୁର କହିଲେ—"ରାଜନ୍ ! ଏ ଆପଣ କ'ଣ କହୁଛନ୍ତି ? ଆପଣଙ୍କ ବାଡ଼ି ତ ମୁଁ । କାନ୍ଧରେ କାନ୍ଧ ମିଶାଇ ସବୁକାମରେ ଭାଇଙ୍କୁ ସହାୟ ହେବା ଭାଇର

Digitized by srujanika@gmail.com

କାମ । ମୁଁ ଆପଣଙ୍କୁ ରାସ୍ତା ଦେଖାଇବ । ମୁଁ ଆପଣଙ୍କୁ ତପୋବନ ନେଇଯିବି । ଧୃତରାଷ୍ଟ୍ରଙ୍କ ଭ୍ରାନ୍ତ ଦୂର ହୋଇଲା । ସେ ଅଞ୍ଜଳି ଅଞ୍ଜଳି ବିଦୁରଙ୍କୁ ନିଜ ଛାତିରେ ଜାବୁଡ଼ି ଧରିଲେ ।" ଗଦ୍‌ଗଦ୍ କଣ୍ଠରେ ରୁଦ୍ଧସ୍ୱରରେ କହିଲେ—"ଭାଇ ବିଦୁର ମୋର ଏ ବୋହିଲୁ ଥିବା ଜୀବନ ନୌକାର ତୁମେ ହିଁ ଏକମାତ୍ର ସୁଯୋଗ୍ୟ କର୍ଣ୍ଣଧାର । ତୁମେ ଯାହା କହୁଛ, ତାହାହିଁ ହେଉ । ଏବେ ଖୁବ୍ ଶୀଘ୍ର ଆମକୁ ଏଠାରୁ ଚାଲିଯିବାକୁ ପଡ଼ିବ । ଦୁଇଭାଇ ଏହିଭଳି ସିଦ୍ଧାନ୍ତରେ ପହଞ୍ଚି କିପରି ଅଜ୍ଞାତଭାବେ ଗୃହତ୍ୟାଗ କରିବେ ତାହା ଚିନ୍ତାକରିବାକୁ ଲାଗିଲେ ।

**କିନକୁଁ ତୁମନେ ଦେଵ ! ଦୁସହ ଦୁଃଖ ଦାରୁଣ ଦୀନ୍ହେ ।**
**ଦାରା ଦୂଷିତ କରୀ ଦ୍ରବୀ ହରି ଭିକ୍ଷୁକ କୀନ୍ହେ ॥**
**ଶ୍ୱାନ ସମାନ ଅମାନ ଉହ୍ନୀ କେ ଟୁକୁଡ଼େ ଖାଓ ।**
**ରକ୍ତ ସୁରଞ୍ଜିତ ଭୋଗ ଭୋଗତେ ନହୀ ଲଜାଓ ॥**
**ଚଲୋ ଉତ୍ତରାଖଣ୍ଡ କୁଁ ମୋହପାଶ ଛେଦନ କରୋ ।**
**ଜନ୍ମ ସଫଲ ତପ କରୋ, ସବ ତଜି ହରି ହୃଦୟ ମେ ଧରୋ ॥**



Digitized by srujanika@gmail.com

# ବିଦୁର ଓ ଧୃତରାଷ୍ଟ୍ରଙ୍କ ଗୃହତ୍ୟାଗ

ଏବଂ ରାଜା ବିଦୁରେଣାନୁଜେନ
ପ୍ରଜ୍ଞାଚକ୍ଷୁର୍ବୋଧିତ ଆଜମୀଢଃ ।
ଛିତ୍ତ୍ୱା ସ୍ୱେଷୁ ସ୍ନେହ ପାଶାନ୍ ଦ୍ରଢିମ୍ନୋ
ନିଶ୍ଚକ୍ରାମ ଭ୍ରାତୃ ସଂଦର୍ଶିତା ଧ୍ୱା ॥
( ଭାଗବତ ୧.୧୩.୨୮ )

## ଛପ୍ପୟ

ସୁନତ ବିଦୁର କେ ବଚନ ବନ୍ଧୁବର ଅତି ହରଷାୟେ
ଗଦ୍‌ଗଦ୍ ଗିରା ଗମ୍ଭୀର ନୀର ନୟନନି ମେଁ ଛାୟେ ॥
ଧନ୍ୟ ଧନ୍ୟ ଲଘୁ ଭ୍ରାତ ହାଥ ଗହି ତାତ ଉବରାୟୋ ।
ଅନ୍ଧକୂପ ମେଁ ପତିତ ପତିତ କୁଁ ପକରି ନିକାର୍‌ୟୋ ॥
ସବ କୁଁ ସୋବତ ଛୋଡ଼ିକେ, ଗାନ୍ଧାରୀକେ ସାଥମେଁ ।
ବିଦୁର ବତାର୍ୱେ ମାର୍ଗ ତେଁ, ଚଲେ ହାଥ ଦେ ହାଥମେଁ ॥

ଶ୍ୟାମସୁନ୍ଦର ଶ୍ରୀକୃଷ୍ଣଙ୍କ ଭକ୍ତହିଁ ଏହି ସଂସାରରେ ପ୍ରକୃତ ବନ୍ଧୁ । ସେ ଆମକୁ ସଂସାରର ବ୍ୟବହାରରୁ ମୁକ୍ତକରି ହରିଭକ୍ତିମାର୍ଗରେ ପରିଚାଳିତ କରିଥାଏ । ଯେ ଆତ୍ମିକ ଉନ୍ନତିରେ ସହାୟକ, ସେ ହିଁ ପ୍ରକୃତ ସମ୍ପର୍କୀୟ । ତଦ୍‌ବ୍ୟତୀତ ଅନ୍ୟ ମିତ୍ର, ପୁତ୍ର, ବନ୍ଧୁବାନ୍ଧବ ସମସ୍ତେ ବନ୍ଧନର କାରଣ । ସଂସାରରେ ଆହୁରି ଅନେକ ଅଛନ୍ତି, ଯେଉଁମାନେ ମୋହପାଶରେ ବାନ୍ଧିଦେବାପାଇଁ ବନ୍ଧୁଭାବେ ନିକଟବର୍ତ୍ତୀ ହୋଇଥାନ୍ତି; କିନ୍ତୁ ବିଦୁର ଥିଲେ ଧୃତରାଷ୍ଟ୍ରଙ୍କ ପ୍ରକୃତ ହିତୈଷୀ ବନ୍ଧୁ । ତାଙ୍କର ପ୍ରରୋଚନାରେ ଧୃତରାଷ୍ଟ୍ର ନିଜର କର୍ତ୍ତବ୍ୟ ବୁଝି ପାରିଥିଲେ; ଏବେ ଅନ୍ତିମ ସମୟ ଉପସ୍ଥିତ । ତେଣୁ ଏଠାରେ ରହିଲେ ଆଉ କୌଣସି ଦିଗରୁ ମଙ୍ଗଳ ହେବନାହିଁ । ସେ ନିଜ ଭାଇର କଥାକୁ ସ୍ୱୀକାର କରି ଘର ଛାଡ଼ିବାକୁ ପ୍ରସ୍ତୁତ ହୋଇଗଲେ ।

ଦିନେ ରାତିରେ ଯେତେବେଳେ ସମସ୍ତେ ଶୋଇଗଲେ, ସେତେବେଳେ ଧୃତରାଷ୍ଟ୍ର ଧୀରେ ଧୀରେ ଉଠି ବିଦୁରଙ୍କ କାନ୍ଧରେ ହାତଦେଇ କହିଲେ—"ଚାଲ

Digitized by srujanika@gmail.com

ବିଦୁର ! ଶୀଘ୍ର ଏଠାରୁ ଚାଲିଯିବା ।” ପତିବ୍ରତା ଗାନ୍ଧାରୀ ମଧ୍ୟ ବାଡ଼ିଖଣ୍ଡିଏ ଧରି ପତିଙ୍କ ହାତଧରି ବାହାରକୁ ଚାଲି ଆସିଲେ । ଧୃତରାଷ୍ଟ୍ର ଜାଣିପାରି ପଚାରିଲେ – “କିଏ, ରାଣି, ତୁମେ କୁଆଡ଼େ ଯିବ ।” ଏହା ଶୁଣି ରାଣୀ କହିଲେ—“ରାଜା କୁଆଡ଼େ ଯିବେ, ରାଣୀ ମଧ୍ୟ ସେହିଠାକୁ ଯିବେ । ରାଜା ବିନା ରାଣୀ କ’ଣ ଶୋଭା ପାଇବ ?”

ଧୃତରାଷ୍ଟ୍ର ସ୍ନେହସିକ୍ତ ସ୍ୱରରେ କହିଲେ—“ଦେବି ! ଆମ୍ଭେମାନେ ବର୍ତ୍ତମାନ ମହାପ୍ରସ୍ଥାନ ଆଡ଼କୁ ଯାଉଛୁ । ସେଠାରେ ଖାଇବା ପିଇବାର ଠିକଣା ନାହିଁ କି ଯାନବାହନ ଦାସଦାସୀ କେହି ନାହାନ୍ତି । ପାଦରେ ଚାଲି ଚାଲି ଅରଣ୍ୟ, ପର୍ବତ ପ୍ରଭୃତି ଅଗମ୍ୟ ସ୍ଥାନ ଓ ବିପଦସଙ୍କୁଳ ପଥରେ କେବଳ ବୁଲିବାକୁ ପଡ଼ିବ । ବଣରେ କଷା ପିତା ଫଳମୂଳରେ ଜୀବନ ନିର୍ବାହ କରିବାକୁ ହେବ । ସେହି ଫଳ-ମୂଳ ମଧ୍ୟ ନିଜକୁ ଖୋଜି ଖୋଜି ସଂଗ୍ରହ କରିବାକୁ ପଡ଼ିବ । ତୁମେ ସର୍ବଦା ସୁଖରେ ହିଁ ବଢ଼ି ଆସିଛ । ତୁମେ ଏହି ପ୍ରସ୍ତାବିତ ଜୀବନଯାତ୍ରା ପାଇଁ ଆଦୌ ପ୍ରସ୍ତୁତ ନୁହଁ । ଏଇଠି କୁନ୍ତୀଙ୍କ ପାଖରେ ରହି କୃଷ୍ଣକଥା କୀର୍ତ୍ତନରେ କାଳ ଯାପନ କର ।”

ଗାନ୍ଧାରୀ ପଚାରିଲେ “ଦେବ ! ଆପଣ ଆଜି ଏଭଳି ଅସମ୍ଭବ କଥା କାହିଁକି କହୁଛନ୍ତି ? ଛାୟା କେବେ ଶରୀରଠାରୁ ଅଲଗା ରହିପାରିବ କି ? ଚନ୍ଦ୍ର ଜ୍ୟୋତ୍ସ୍ନାକୁ ଚନ୍ଦ୍ରଠାରୁ କେହି ପୃଥକ୍ କରିପାରିବ କି ? ସେହିପରି ପ୍ରଭାକୁ ପ୍ରଭାକରଠାରୁ, ଜୀବକୁ ଶରୀରଠାରୁ, ଶୀତଳତାକୁ ଜଳଠାରୁ, ମାଛକୁ ଜଳଠାରୁ କେହିକେବେ ଅଲଗା କରିପାରିବ ନାହିଁ । ପତିବ୍ରତା ସ୍ତ୍ରୀ ପତିବିହୀନା ହୋଇ ରହିପାରିବ ନାହିଁ । ରାଜଭୋଗ, ବାହନ, ଦାସ ଦାସୀ, ଐଶ୍ୱର୍ଯ୍ୟ, ଧନ ବା ଅନ୍ୟ କିଛି ମୋର ଲୋଡ଼ା ନାହିଁ । ମୁଁ ଆପଣଙ୍କୁ ଛାଡ଼ି ରହିପାରିବି ନାହିଁ, ଆପଣ ହିଁ ମୋର ଧନ ଓ ମୋର ସର୍ବସ୍ୱ । ଆପଣ ଯେଉଁଠି ମୋର ସବୁ କିଛି ସେଇଠି ଅଛି । ଆପଣ ନ ଥିଲେ, ଏଠାରେ ସବୁ କିଛି ଥିଲେ ବି ମୋର କିଛି ନାହିଁ ।”

ବିଦୁର କହିଲେ—“ଭାଇ, ଏବେ ବାଦ ବିବାଦର ସମୟ ନୁହେଁ । ମୋର ପ୍ରତିବ୍ରତା ଭାଉଜ କୌଣସି କଥା ମାନିବେ ନାହିଁ । ଆପଣଙ୍କ ବିନା ସେ ଏଠାରେ ରହିପାରିବେ ନାହିଁ । ଆପଣ ତାଙ୍କୁ ବାଧା ଦିଅନ୍ତୁନାହିଁ । ସେ ଆମ ସାଙ୍ଗରେ ଚାଲନ୍ତୁ ।” ଏହା ଶୁଣି ଧୃତରାଷ୍ଟ୍ର ଆଉ ଆପତ୍ତି କଲେ ନାହିଁ । ତିନି ଜଣ ଚୁପ୍‌ଚାପ୍ ଚାଲିବାକୁ ଲାଗିଲେ । ବିଦୁର ସେଥିପାଇଁ ପୂର୍ବରୁ ପ୍ରସ୍ତୁତ ହୋଇଥିଲେ । କୌଣସି ପ୍ରହରୀ ତାଙ୍କର ପ୍ରସ୍ଥାନ କଥା ଜାଣିପାରିଲେ ନାହିଁ; କିନ୍ତୁ ବହୁଦୂରକୁ ନ ଯାଇ ବିଦୁର ସୂର୍ଯ୍ୟୋଦୟ ପୂର୍ବରୁ ଗଙ୍ଗାତୀରରେ କୌଣସି ଏକ ନିର୍ଜନ ସ୍ଥାନରେ ଭାଇ ଭାଉଜଙ୍କ ସହିତ ଲୁଚି ରହିଲେ ।

Digitized by srujanika@gmail.com

ରାତି ପାହି ସକାଳ ହେଲା । ସୂର୍ଯ୍ୟୋଦୟ ସହିତ ଧର୍ମରାଜ ଶଯ୍ୟାତ୍ୟାଗ କରି ସ୍ନାନ, ସନ୍ଧ୍ୟା, ବନ୍ଦନ, ଅଗ୍ନିହୋତ୍ରାଦି ନିତ୍ୟକର୍ମ ସାରି ମଙ୍ଗଳ ସୂଚକଦ୍ରବ୍ୟ ଦର୍ଶନ ଓ ସ୍ପର୍ଶ କଲେ । ଆଶ୍ରିତ ଅସଂଖ୍ୟ ବ୍ରାହ୍ମଣଙ୍କୁ ଗୋ, ଭୂମି, ସୁବର୍ଣ୍ଣ, ତିଳ ତଥା ବିଭିନ୍ନ ପ୍ରକାର ଅନ୍ନ ବସ୍ତ୍ର ଦାନ କଲେ । ପୁଣି ପ୍ରତିଦିନ ପରି ଧୃତରାଷ୍ଟ୍ରଙ୍କ ଚରଣ ବନ୍ଦନ ନିମିତ୍ତ ଗଲେ । ସେଠାରେ ପହଞ୍ଚି ଦେଖିଲେ ସମସ୍ତ ଜିନିଷ ଇତସ୍ତତଃ ଭାବେ ବିକ୍ଷିପ୍ତ ହୋଇପଡ଼ିଛି । ଏହା ଦେଖି ତାଙ୍କ ମନରେ ନାନା-ପ୍ରକାର ଆଶଙ୍କା ଜାତ ହେଲା । ପୁଣି ଭାବିଲେ ସମ୍ଭବତଃ ଧୃତରାଷ୍ଟ୍ର ଶୌଚକାର୍ଯ୍ୟ ପାଇଁ ଯାଇଛନ୍ତି । ସେଠାରୁ ଯାଇ ଯୁଧିଷ୍ଠିର ଗାନ୍ଧାରୀଙ୍କ ଶଯ୍ୟା ଦେଖିଲେ । ତାହା ମଧ୍ୟ ଶୂନ୍ୟ ପଡ଼ିଥିଲା । ଗୁରୁ ତାଙ୍କର ଧଡ଼ପଡ଼ ହେଲା । ପୁଣି ବିଦୁରଙ୍କ ଶଯ୍ୟା ଶୂନ୍ୟ ପଡ଼ିଥିବାର ଦେଖି ଯୁଧିଷ୍ଠିର ଭାବିଲେ, ସମସ୍ତେ ତାଙ୍କୁ ଛାଡ଼ି କୁଆଡ଼େ ଚାଲିଗଲେ । ସେ ବ୍ୟାକୁଳ ହୋଇ ଅତି ଉଚ୍ଚ ସ୍ୱରରେ ଡାକିଲେ —"ସଞ୍ଜୟ, ସଞ୍ଜୟ ! ଶୀଘ୍ର ଆସ !" ସଞ୍ଜୟ କୁଆଡ଼େ ଯାଇ ନ ଥିଲେ । ଧର୍ମରାଜଙ୍କ ପାଖରେ ସେ ଉପସ୍ଥିତ ଥିଲେ । ଯୁଧିଷ୍ଠିରଙ୍କ ଡାକରେ ଆଖିରୁ ଲୁହ ଗଡ଼ାଇ ତାଙ୍କ ଆଗରେ ଠିଆ ହେଲେ । ଧର୍ମରାଜ କାନ୍ଦି କାନ୍ଦି କହିଲେ--ମୋ ବାପା, ମା କୁଆଡ଼େ ଚାଲିଗଲେ ? ମୁଁ ତାଙ୍କ ଚରଣ ବନ୍ଦନା କରିବାକୁ ଆସି ଦେଖୁଛି, ତାଙ୍କ ଶଯ୍ୟା ଖାଲି ପଡ଼ିଛି । ମୁଁ ତାଙ୍କୁ ଦେଖିପାରିଲି ନାହିଁ, ସେମାନେ କୁଆଡ଼େ ଗଲେ ? ମୋ ଭଳି ପାପୀର କେଉଁ ଅପରାଧ ହେତୁ ଅସନ୍ତୁଷ୍ଟ ହୋଇ ଆମ୍ଭମାନଙ୍କୁ ଛାଡ଼ି ଚାଲିଗଲେ ? ହାୟ, ସଂସାରରେ ଆମଠାରୁ ଆଉ କିଏ ଭାଗ୍ୟହୀନ ଅଛି । ଆମ୍ଭେ-ମାନେ କେଡ଼େ ହତଭାଗା, ପିଲାଦିନରୁ ବାପା ଆମର ମରିଗଲେ । ମୁଁ ମୋର ଦୁର୍ବୁଦ୍ଧି ହେତୁ ପିତାମହ ଭୀଷ୍ମଙ୍କୁ ମାରିଦେଲି । ମୋର କାରଣରୁ ବଂଶର ସମସ୍ତେ ମୃତ୍ୟୁ ବରଣ କଲେ । ସର୍ବଶେଷରେ ଯେ ଆମକୁ ପିତାମାତାର ସ୍ନେହ ଦେଇଥିଲେ, ସେମାନେ ଚାଲିଗଲେ । ସେମାନେ ଆଉ ଅଧିକକାଳ ବଞ୍ଚିବେ ନାହିଁ । ତାଙ୍କର ସବୁ ପୁଅ ମରିଗଲେ । ସେ ନିଜେ ଅନ୍ଧ, କିଛି ଦେଖିପାରନ୍ତି ନାହିଁ । ସେ ନିଶ୍ଚୟ ଗଙ୍ଗାକୁ ଡେଇଁପଡ଼ି ଆତ୍ମବିସର୍ଜନ କରିଛନ୍ତି । ପିତାଙ୍କ ମୃତ୍ୟୁ ପରେ ବିଦୁର ହିଁ ଥିଲେ ଆମର ପିତୃତୁଲ୍ୟ । ସେ ଆମ୍ଭମାନଙ୍କୁ ବିପଦରୁ ବାରମ୍ବାର ରକ୍ଷା କରିଛନ୍ତି । ହେ ସଞ୍ଜୟ ! ତୁମେ ସର୍ବଦା ମୋର ପିତା ଓ ପିତୃବ୍ୟଙ୍କ ନିକଟରେ ରହିଥାଅ । ତୁମେ ହିଁ ସେମାନଙ୍କର ଏକମାତ୍ର ବିଶ୍ୱସ୍ତ ମନ୍ତ୍ରୀ । ତୁମ ସମ୍ମତି ବିନା ସେମାନେ କିପରି ଗଲେ ଓ କୁଆଡ଼େ ଗଲେ ? ସେମାନେ ନିଶ୍ଚୟ ତୁମକୁ ପଚାରିଥିବେ, ଆଉ କୁଆଡ଼େ ଗଲେ କହିଥିବେ । ସେମାନେ କେଉଁଠି ଥିବେ ମୋତେ କୁହ । ବାଛୁରୀ କୁଆ ଯେପରି ମା' ପାଖକୁ ଦୌଡ଼ିଯାଏ, ମୁଁ ସେହିପରି ତାଙ୍କ ପାଖକୁ ଦୌଡ଼ିଯିବି । ସେମାନେ ଯେଉଁଠି ରହିବେ ମୁଁ ସେଇଠି ରହି ତାଙ୍କର ଶୁଶ୍ରୂଷାରେ କାଳ କଟାଇବି ।"

Digitized by srujanika@gmail.com

ସୂତ ସଞ୍ଜୟ ନିଜେ ଅତ୍ୟନ୍ତ ଦୁଃଖିତ ହୋଇପଡ଼ିଥିଲେ । ଅତ୍ୟଧିକ ଶୋକହେତୁ ତାଙ୍କର ଇନ୍ଦ୍ରିୟ ସକଳ ବ୍ୟାକୁଳ ହେଉଥିଲା । ନୟନ ଯୁଗଳରୁ ଅବାରିତ ଅଶ୍ରୁଧାରା ବହି ଚାଲିଥିଲା । କଣ୍ଠସ୍ୱର ଗଦ୍ ଗଦ୍ ହୋଇପଡ଼ିବାରୁ ସେ କିଛି କହିବାପାଇଁ ସମର୍ଥ ହୋଇପାରୁ ନ ଥିଲେ । ଯୁଧିଷ୍ଠିରଙ୍କ ବାରମ୍ବାର ପ୍ରଶ୍ନ ପରେ ସେ କିଞ୍ଚିତ୍ ଧୈର୍ଯ୍ୟ ଧରି, ଆଖିରୁ ଲୁହ ପୋଛି, ପ୍ରକୃତିସ୍ଥ ହୋଇ. ପ୍ରଭୁ ଧୃତରାଷ୍ଟ୍ରଙ୍କ ଚରଣକମଳ ସ୍ମରଣ ପୂର୍ବକ ହାତଯୋଡ଼ି କହିଲେ—ପ୍ରଭୋ ! ମୋ କଥା ଉପରେ ବିଶ୍ୱାସ ରଖନ୍ତୁ । ମୁଁ ଆପଣଙ୍କୁ ସତକଥା କହୁଛି । ବର୍ତ୍ତମାନର ଘଟଣା ବିଷୟରେ ସେମାନେ ମୋତେ କେବେ କିଛି କହି ନାହାନ୍ତି । ତାଙ୍କ ମନରେ କ'ଣ ଥିଲା, ମୁଁ ଅତି ନିକଟରେ ଥାଇ ମଧ କିଛି ଜାଣିପାରିଲି ନାହିଁ । ସମ୍ଭବତଃ ବିଦୁରଙ୍କ ସହିତ ସେ ପରାମର୍ଶ କରିଛନ୍ତି । ସେ ତିନିଜଣ କୁଆଡ଼େ ଗଲେ ମୁଁ ଠିକ୍‌ଏ ହେଲେ କିଛି ଜାଣେନାହିଁ ।"

ହେ କୁରୁକୁଳତିଳକ ! ଅଦ୍ୟାବଧି ମୋର ଦୃଢ଼ ବିଶ୍ୱାସ ଥିଲା ଯେ, ମହାରାଜ ଧୃତରାଷ୍ଟ୍ର ମୋତେ ନ ପଚାରି କୁଆଡ଼େ ଯିବେନାହିଁ । ମୋତେ ନ କହି ସେ କେବେ କିଛି କରି ନାହାନ୍ତି । ଆଜି ପର୍ଯ୍ୟନ୍ତ ଏହା ହିଁ ହୋଇ ଆସୁଥିଲା । ଯେଉଁ ସାଧାରଣ ହେଉ ବା ଅସାଧାରଣ କାର୍ଯ୍ୟ ହେଉ ପ୍ରଥମେ ସେ ବିଷୟରେ ମୋତେ ସେ ପଚାରୁଥିଲେ । ମୁଁ ସମ୍ମତି ଦେଲେ ହିଁ ସେ ଯେ କୌଣସି କାର୍ଯ୍ୟ କରୁଥିଲେ ଏବଂ ମୁଁ ଅନୁମତି ନ ଦେଲେ ତାଙ୍କର ଇଚ୍ଛାଥିଲେ ମଧ ସେ କିଛି କରୁ ନ ଥିଲେ । ତେଣୁ ସେ ବିଷୟରେ ମୋର ଗର୍ବ ଥିଲା; କିନ୍ତୁ ମୋର ସେହି ଗର୍ବ ଆଜି ଖର୍ବ ହୋଇଯାଇଛି । ମହାରାଜ ଆଜି ମୋତେ ଠକାଇ ଦେଇଛନ୍ତି । ସବୁ ସ୍ନେହ ଦେଇ ସମସ୍ତ ପ୍ରକାର ବିଶ୍ୱାସ ବଢ଼ାଇ ଶେଷରେ ମୋ ସହିତ ସେ ଚଞ୍ଚକତା ଆଚରଣ କଲେ । ମୋ ଭଳି ପାପୀକୁ ସେ ତାଙ୍କ ସେବାରୁ ବଞ୍ଚିତ କଲେ । ନିଜ ସାଙ୍ଗରେ ମଧ ମୋତେ ନେଲେ ନାହିଁ । ଆଜି ମୋର ଏ ବାର୍ଦ୍ଧକ୍ୟ ଅବସ୍ଥାରେ ରାଜସେବାରୁ ବଞ୍ଚିତ ହୋଇ କିପରି ଜୀବନଧାରଣ କରିବି ? ଏହା କହୁଁ କହୁଁ ସଞ୍ଜୟ ଧକେଇ ହୋଇ କାନ୍ଦିବାକୁ ଲାଗିଲେ । ଧର୍ମରାଜ ବିଶ୍ୱାସ କଲେ ଯେ, ମୋତେ ଯେପରି କହି ନାହାନ୍ତି, ସଞ୍ଜୟଙ୍କୁ ମଧ ସେହିପରି କିଛି ନ କହି ସେମାନେ ଚାଲିଯାଇଛନ୍ତି । ସେ ଭାବିଲେ – ସନ୍ଧ୍ୟାବେଳେ ତ ମୋ ପାଖରେ ଥିଲେ । ସମ୍ଭବତଃ ଗତ ଅଧ ପରେ ସେମାନେ ଯାଇଛନ୍ତି । ବୁଢ଼ା ଲୋକ, ପୁଣି ଅନ୍ଧ; ତେଣୁ ଖୁବ୍ ଦୂର ସ୍ଥାନକୁ ଯାଇପାରି ନ ଥିବେ । ଏଣୁ ଯଥାଶୀଘ୍ର ଚାରିଆଡ଼କୁ ଲୋକପଠାଇ ତାଙ୍କୁ ଖୋଜି ଆଣିବାକୁ ପଡ଼ିବ । ଧର୍ମରାଜ

Digitized by srujanika@gmail.com

ଏହିକଥା ଭାବି କାନ୍ଦିବାକୁ ଲାଗିଲେ । ଏହି ସମୟରେ ଖବର ପାଇ ଅନ୍ୟ ଭାଇମାନେ ଆସି ପହଞ୍ଚିଲେ । କୁନ୍ତୀ ମଧ୍ୟ ବିଦୁର ପ୍ରଭୃତିଙ୍କୁ ନ ଦେଖି ସକ୍ ସକ୍ ହୋଇ କାନ୍ଦିବାକୁ ଲାଗିଲେ ।

ଶୌନକ ମହର୍ଷି ସୂତଙ୍କୁ ପଚାରିଲେ—"ଆମ୍ଭେମାନେ ଶୁଣିଥିଲୁ, କୁନ୍ତୀ ଧୃତରାଷ୍ଟ୍ର ଓ ଗାନ୍ଧାରୀ ତିନିଜଣ ତପୋବନକୁ ଯାଇଥିଲେ । କିନ୍ତୁ ଆପଣ କହୁଛନ୍ତି ଧୃତରାଷ୍ଟ୍ର, ଗାନ୍ଧାରୀ ଓ ବିଦୁର ଏହି ତିନିଜଣ ଗଲେ । ପ୍ରକୃତ କଥା କ'ଣ କହନ୍ତୁ ।" ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସୂତ କହିଲେ – ହେ ଋଷିଗଣ, ଏ ଘଟଣା ହୁଏତ ଅନ୍ୟ କୌଣସି କଳ୍ପରେ ଘଟିଥିବ । କଳ୍ପ ଅନୁସାରେ କାହାଣୀ ମଧ୍ୟ ଭିନ୍ନ ଭିନ୍ନ ହୋଇଥାଏ । ସଂସାରରେ ଏବେ ନୂଆ କିଛି ହେଉନାହିଁ । ପୁରୁଣା ଘଟଣାର ବାରମ୍ବାର ପୁନରାବୃତ୍ତିକୁ ହିଁ ଇତିହାସ କହନ୍ତି । ପ୍ରତ୍ୟେକ କଳ୍ପର ଦ୍ୱାପରଯୁଗ ଶେଷରେ ମହାଭାରତ ଘଟଣା ଘଟେ । ପୁଣି ସେହି ଘଟଣାର ପୁନରବୃତ୍ତି ହୁଏ । କୌଣସି କୌଣସି କଳ୍ପରେ କିଛି ଊଣା ଅଧିକ ମଧ୍ୟ ହୁଏ । ଏହି ଭାଗବତ କଥାପ୍ରସଙ୍ଗରେ ପାଣ୍ଡବମାନଙ୍କ ମାତା ମହାରାଣୀ କୁନ୍ତୀ ତପୋବନ ଯାଇ ନ ଥିଲେ । ତାଙ୍କ ମନଥିଲା ଶ୍ରୀକୃଷ୍ଣଙ୍କ ପାଖରେ । ଦ୍ୱାରକା ଯାଇଥିବା ଅର୍ଜୁନଙ୍କର ପ୍ରତ୍ୟାବର୍ତ୍ତନ ପ୍ରତୀକ୍ଷାରେ ସେ ବ୍ୟାକୁଳ ହେଉଥିଲେ । ଶ୍ରୀକୃଷ୍ଣଙ୍କ ଖବର ଶୁଣିବା ପରେ ଯାହା କିଛି କରିବ ବୋଲି ଭାବି କୁନ୍ତୀ କିଂକର୍ତ୍ତବ୍ୟବିମୂଢ଼ ହୋଇ ହସ୍ତିନାରେ ହିଁ ରହିଥିଲେ ।"

ଧର୍ମରାଜ ଯୁଧିଷ୍ଠିର ଚାରିଆଡ଼କୁ ଖବର ପଠାଇ ବହୁ ଖୋଜା ଖୋଜି କଲେ ମଧ୍ୟ ବିଦୁର ପ୍ରଭୃତିଙ୍କୁ ପାଇଲେନାହିଁ । ଧର୍ମରାଜ ବିଶେଷ ଚିନ୍ତିତ ହୋଇ-ପଡ଼ିଲେ । ସେତିକିବେଳେ ଦେବର୍ଷି ନାରଦ ରାମ କୃଷ୍ଣଙ୍କ ନାମ ଗାନକରି ବୀଣା ବଜାଇ ପାଣ୍ଡବମାନଙ୍କ ପାଖରେ ପହଞ୍ଚିଲେ । ନାରଦଙ୍କୁ ଦେଖି ପାଣ୍ଡବମାନଙ୍କ ମନରେ ଭରସା ଆସିଲା । ମୃତର ଜୀବନ ଲାଭ, ଜନ୍ମାନ୍ଧର ଚକ୍ଷୁଲାଭ ପରି ସେମାନଙ୍କର ବିଶ୍ୱାସ ହେଲା ଯେ, ଏହି ଋଷି ସର୍ବଜ୍ଞ । ଚତୁର୍ଦ୍ଦଶ ଭୁବନର କଥା ତାଙ୍କୁ ଅଜଣା ନୁହେଁ; ଏବେ ଧୃତରାଷ୍ଟ୍ର ପ୍ରଭୃତିଙ୍କର ସମ୍ବାଦ ମିଳିବାରେ କଷ୍ଟ ହେବ ନାହିଁ । ନାରଦ ପହଞ୍ଚିବାମାତ୍ରେ ସମସ୍ତେ ଆସନ ତ୍ୟାଗକରି ତାଙ୍କୁ ଯଥା ସମ୍ମାନ ଜଣାଇ ବିଧିବତ୍ ପୂଜା ଅର୍ଚ୍ଚନା କଲେ । ନାରଦ ସୁସ୍ଥ ହୋଇ ଆସନ ଗ୍ରହଣ କରିବା ପରେ ଧର୍ମରାଜ ହାତଯୋଡ଼ି କହିଲେ—"ପ୍ରଭୋ ! ଆଜି ମୁଁ ବଡ଼ ଚିନ୍ତାମଗ୍ନ ଅଛି । ଆପଣ ତ ସର୍ବଜ୍ଞ ! ଆପଣଙ୍କ ଆଗରେ କିଛି କହିବା ମୋର ଧୃଷ୍ଟତା ହେବ । ଆପଣ ପ୍ରତ୍ୟେକର ମନକଥା ଜାଣନ୍ତି; ତଥାପି କହୁଛି । ମୋର ପିତୃତୁଲ୍ୟ ମହାରାଜ ଧୃତରାଷ୍ଟ୍ର, କକେଇ ସର୍ବଜ୍ଞଙ୍କ ବିଦୁର ଓ ମା' ଗାନ୍ଧାରୀ ରାତିରେ ଖାଇପିଇ ସୁଖରେ ଶୋଇଥିଲେ; କିନ୍ତୁ ପରଦିନ ସକାଳେ ତାଙ୍କର ଚରଣ ବନ୍ଦନା କରିବାକୁ ଯାଇ ଦେଖିଲି, ସେମାନେ କେହି ନାହାନ୍ତି । ସେହି

Digitized by srujanika@gmail.com

ଦୁଃଖରେ ମୋର ହୃଦୟ ବ୍ୟାକୁଳ ହେଉଛି । ଏହି ଦୁଃଖରୁ ପାର ହେବାର କୌଣସି ଉପାୟ ମୋତେ ଦେଖାଯାଉ ନାହିଁ । ଆପଣ ଦୟାକରି କହନ୍ତୁ, ସେମାନେ ଆମକୁ କିଛି ନ କହି କାହିଁକି ଛାଡ଼ି ଚାଲିଗଲେ ? କୁଆଡ଼େ ଗଲେ ? କେଉଁ ଅପରାଧ ପାଇଁ ଆମକୁ ତ୍ୟାଗକଲେ ।

ମହର୍ଷି ନାରଦ ଶୋକାକୁଳ ଯୁଧିଷ୍ଠିରଙ୍କୁ କହିଲେ--"ରାଜନ୍ ! ଆପଣ ଏତେ ବଡ଼ ଜ୍ଞାନୀ, ଧ୍ୟାନୀ, ତେଜସ୍ୱୀ, ତପସ୍ୱୀ ହୋଇ ମଧ୍ୟ ପିଲାଙ୍କ ଭଳି କାହିଁକି ହେଉଛନ୍ତି । କିଏ କାହାକୁ ସୁଖ ବା ଦୁଃଖ ଦେଇ ପାରିବ ? ସମଗ୍ର ସୃଷ୍ଟି ପରମେଶ୍ୱରଙ୍କ ଇଙ୍ଗିତରେ ପରିଚାଳିତ । ସମସ୍ତ ଜୀବ ଦୈବର ଅଧୀନ ହୋଇ କାର୍ଯ୍ୟ କରୁଛନ୍ତି । ପୃଥିବୀର ପ୍ରତି ଅଣୁ ପରମାଣୁରେ ପ୍ରତ୍ୟେକ ଜଳବିନ୍ଦୁରେ ତାଙ୍କରି ନାମ ଉଲ୍ଲେଖ ରହିଛି । ଯାହାର ଯେତେଦିନ ପର୍ଯ୍ୟନ୍ତ ଯେଉଁଠି ଯେପରି-ଭାବରେ ଅନ୍ନଜଳର ବ୍ୟବସ୍ଥା ଅଛି, ସେ ସେତେଦିନ ସେହିଠାରେ ରହି ନିଜର ଭାଗ୍ୟ ଲବ୍ଧ ଫଳ ଉପଭୋଗ କରିବ । ସମୟ ସରିଗଲେ ଲକ୍ଷେ ଯତ୍ନ କଲେ ବି· ସେ ସେଠାରେ ରହିପାରିବ ନାହିଁ । ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ସେହି ପରମେଶ୍ୱରଙ୍କ ପ୍ରେରଣାରେ ସମସ୍ତ କାର୍ଯ୍ୟରେ ପ୍ରବୃତ୍ତ ହେଉଛି । ମନୁଷ୍ୟ, ଦେବତା, ପଶୁପକ୍ଷୀ, ସରୀସୃପ, ବୃକ୍ଷାଦିଙ୍କ କଥା ଛାଡ଼ନ୍ତୁ; ଇନ୍ଦ୍ର, ବରୁଣ, କୁବେର, ଲୋକପାଳ ପ୍ରଭୃତି ମଧ୍ୟ ତାଙ୍କ ନିର୍ଦ୍ଦେଶ ଓ ପ୍ରେରଣା ବିନା କିଛି କରିପାରିବେ ନାହିଁ । ପ୍ରିୟଜନ ସଂଯୋଗରେ ସୁଖ ଓ ବିୟୋଗରେ ଦୁଃଖ ହୁଏ, ହେଉ । ଆପଣ ସୁଖ ଓ ଦୁଃଖକୁ ସଂଯୋଗ ଓ ବିୟୋଗଠାରୁ ପୃଥକ୍ କରିପାରିବେ କି ? ଯାହା ସହିତ ସଂଯୋଗ ହେବାର ଥିବ, ନିଶ୍ଚୟ ହେବ, ଯେତେ ଚେଷ୍ଟା କଲେ ବି ତାହା ବଦଳେଇ ହେବ ନାହିଁ । ସମୟ ଅନୁସାରେ ବିୟୋଗ ଅବଶ୍ୟମ୍ଭାବୀ । ଆପଣ ଦେଖନ୍ତୁ, ହାତୀ ମାହୁନ୍ତର, ଘୋଡ଼ା ସଇସର ଆଉ ବଳଦ କୃଷକର ଅଧୀନରେ ରହନ୍ତି । ସେହିପରି ପ୍ରତ୍ୟେକ ପ୍ରାଣୀ ପ୍ରାରବ୍ଧର ଅଧୀନ ଥାଏ । ଉନ୍ମତ୍ତ ହୋଇ ହାତୀ, ଘୋଡ଼ା, ବଳଦ, ମନୁଷ ବନ୍ଧନ ଛଡ଼େଇ ସ୍ୱେଚ୍ଛାଚାରୀ ହୋଇପାରନ୍ତି; କିନ୍ତୁ ମଣିଷ ପ୍ରାରବ୍ଧରୁ ମୁକ୍ତ ହୋଇ କେବେହେଲେ ସ୍ୱେଚ୍ଛାଚରଣ କରିପାରେ ନାହିଁ । ପ୍ରାରବ୍ଧ ପରିଧି ମଧ୍ୟରେ ତାକୁ ନିଶ୍ଚିତଭାବେ ରହିବାକୁ ପଡ଼ିବ ।"

ଧର୍ମରାଜ ପଚାରିଲେ—"ସନ୍ନ୍ୟାସୀ, ବ୍ରହ୍ମଚାରୀ, ବାନପ୍ରସ୍ଥୀ ଆଦି ନିଜ ଇଚ୍ଛା ଅନୁସାରେ ଧର୍ମାଚରଣ ଓ ସାଧନାଦି କାର୍ଯ୍ୟରେ ବ୍ୟାପୃତ ରହୁଛନ୍ତି କିପରି ?" ନାରଦ ଏହାର ଉତ୍ତରଦେଇ କହିଲେ—"କିଏ କହୁଛି, ସେମାନେ ନିଜ ଇଚ୍ଛାରେ କାର୍ଯ୍ୟ କରୁଛନ୍ତି ବୋଲି ? ସେମାନେ ବେଦଶାସ୍ତ୍ର ରୂପକ ଡୋରରେ ବନ୍ଧା ହୋଇ ପ୍ରାରବ୍ଧ ଅନୁସାରେ କାର୍ଯ୍ୟ କରିବାପାଇଁ ବାଧ୍ୟ । ଏହି ପ୍ରସଙ୍ଗରେ ଉଦାହରଣଟିଏ ଶୁଣ । ଛୋଟ ପିଲାଟିଏ ଖେଳୁଖେଳୁ ବାଲିରେ ଘର ତିଆରିକଲା ।

Digitized by srujanika@gmail.com

ନଦୀରୁ ଚକଟା ମାଟି ଆଣି ହାତୀ, ଘୋଡ଼ା, ଓଟ, ବାଛୁରି ଆଦି ନାନାପ୍ରକାର ଖେଳନା ତିଆରି କଲା । ଘୋଡ଼ାଶାଳରେ ଘୋଡ଼ା, ଗୋଶାଳାରେ ଗାଈ ବାଛୁରି, ମାଟି ତିଆରି ସ୍ତ୍ରୀ ପୁରୁଷ ଗୁଡ଼ିଏ ଘରଭିତରେ ନାନାସ୍ଥାନରେ ବସାଇ ଦେଲା । ଦେଖିବାକୁ ଗଲେ ସମସ୍ତଙ୍କର ଗୋଟିଏ ଗୋଟିଏ ନାମ ଅଛି । ସ୍ତ୍ରୀ, ପୁରୁଷ, ସ୍ତ୍ରକର, ସ୍ୱାମୀ, ସମ୍ବନ୍ଧୀ, ହାତୀ, ଘୋଡ଼ା, ଓଟ, ଗାଈ, ବଳଦ, ମହିଷ ସମସ୍ତେ ମାଟିରେ ତିଆରି ହୋଇଛନ୍ତି । ସମସ୍ତେ ଏକ ଉପାଦାନରେ ଗଢ଼ା, ପାର୍ଥକ୍ୟ କେବଳ ଆକୃତି ଓ ନାମରେ ରହିଛି । ଏହି ଆକୃତି ଗୁଡ଼ିକୁ ପିଲାଟି ନିଜ ବୁଦ୍ଧି ବଳରେ ସୃଷ୍ଟି କରିଛି । ବର୍ତ୍ତମାନ ଏହି ଖେଳନାଗୁଡ଼ିକୁ ପିଲାଟି ନିଜ ଇଚ୍ଛା ଅନୁସାରେ ଯେ କୌଣସି ସ୍ଥାନରେ ରଖିପାରେ । ମଣିଷ ମୁଣ୍ଡରେ ଗଧକୁ ରଖିଦେଲେ ମାଟିର ମଣିଷ ମନାକରି ପାରିବନାହିଁ । ଗାଈ ଦଳ ମଧ୍ୟରେ ଘୋଡ଼ାକୁ ବାନ୍ଧିଦେଲେ, କେହି ବିରୋଧ କରିବେ ନାହିଁ । ଏ ସବୁ ପିଲାର ଖେଳ । ଯେତେବେଳେ ତା'ର ଇଚ୍ଛା ହେବ, ସେତେବେଳେ ସବୁଗୁଡ଼ିକୁ ଭଙ୍ଗାଭଙ୍ଗି କରି ଏକାକାର କରିଦେବ । ମଣିଷ ମରିଗଲେ ଖେଳ ସରିଯାଏ । ସେହିପରି ଏ ଜଗତ୍ ଜଗତ୍‌ପତିଙ୍କ କ୍ରୀଡ଼ାସ୍ଥଳୀ । ଯେତେବେଳେ ଯାହା ସହିତ ଯାହାକୁ ଇଚ୍ଛାକରନ୍ତି ଯୋଡ଼ିଦିଅନ୍ତି ଏବଂ ଯେତେବେଳେ ଇଚ୍ଛା ହୁଏ, ସେତେବେଳେ ବିୟୋଗ କରି ଦିଅନ୍ତି ।

ଧର୍ମରାଜ ପଚାରିଲେ – "ଭଗବନ୍ ! ପ୍ରାରବ୍ଧ କଥା ସତ । ତଥାପି କକେଇ, ଖୁଡ଼ୀ ଆମକୁ ପାଳନ ପୋଷଣ କଲେ, ଆମ ପାଖରେ ରହିଲେ । ସେମାନଙ୍କ ପାଇଁ ଦୁଃଖ ତ ହେଉଛି ।" ନାରଦ ଉତ୍ତର ଦେଲେ—"ଆପଣ ସେମାନଙ୍କର କେଉଁ ଜିନିଷ ପାଇଁ ଦୁଃଖ କରୁଛନ୍ତି । ତାଙ୍କଠାରେ ଦେହ, ଜୀବ ଓ ବ୍ରହ୍ମ ଏହି ତିନୋଟି ଉପାଦାନ ରହିଛି । ଦେହ ତ ଅନିତ୍ୟ, ତାହା ନିଶ୍ଚୟ ବିନଷ୍ଟ ହେବ । ଯାହାର ବିନାଶ ନିଶ୍ଚିତ ସେଥିପାଇଁ ଦୁଃଖ କରିବା ଚତୁର ପୁରୁଷର ଉଚିତ ନୁହେଁ । ଜୀବ ହେଉଛି ଅବିନାଶୀ, ତାହାର ବିନାଶ ନାହିଁ । ଯାହାର ବିନାଶ ନାହିଁ ତା ପାଇଁ ଚିନ୍ତା କରିବା ଅନାବଶ୍ୟକ । ଏହି ଉଭୟ ଭାବ ରହିତ ତୃତୀୟ ଉପାଦାନ ହେଉଛି ବ୍ରହ୍ମ । ତେଣୁ କେଉଁଥି ପାଇଁ ଆପଣଙ୍କର ଦୁଃଖ ହେଉଛି ? ମୋହଜନିତ କାରଣରୁ ହିଁ ଆପଣଙ୍କର ଦୁଃଖ ହେଉଛି ।"

କିନ୍ତୁ ସେ ଦୁହେଁ ଅନ୍ଧ ହୋଇଥିବାରୁ ତାଙ୍କ ସୁରକ୍ଷା ବାଞ୍ଛନୀୟ ବୋଲି ଯୁଧିଷ୍ଠିର କହିବାରୁ ନାରଦ ହସି ହସି ଉତ୍ତର ଦେଲେ—"ରାଜନ୍ ! ସେମାନେ ଯେ ପର୍ଯ୍ୟନ୍ତ ଏଠାରେ ଥିଲେ ସେ ପର୍ଯ୍ୟନ୍ତ ତାଙ୍କ ସେବାକରିବା ଆପଣଙ୍କ ଧର୍ମ ! କିନ୍ତୁ ସେମାନେ ସ୍ୱେଚ୍ଛାରେ ଗୃହତ୍ୟାଗ କରି ବନକୁ ଚାଲିଯିବା ପରେ ଆପଣ କେଉଁଠି ଓ କିପରି ତାଙ୍କୁ ସୁରକ୍ଷିତ ରଖିବେ । ଗର୍ଭସ୍ଥ ବାଳକମାନଙ୍କୁ ଆପଣ

Digitized by srujanika@gmail.com

ରକ୍ଷା କରୁଛନ୍ତି କି ? ଜଳରେ ବାସକରୁଥିବା ଅଜସ୍ର ଜଳଚରଙ୍କୁ ଆପଣ ଖାଦ୍ୟ ପ୍ରଦାନ କରୁଛନ୍ତି କି ? ଆକାଶରେ ଯେତେ ଜୀବ ବିଚରଣ କରୁଛନ୍ତି, ସେମାନଙ୍କୁ କିଏ ରକ୍ଷାକରୁଛି ? ହେ କୁରୁକୁଳତିଳକ ! ମୋ ବିନା ସେମାନଙ୍କୁ କିଏ ରକ୍ଷା କରିବ—ଏହି ଧାରଣାକୁ ଆପଣ ମନରୁ ପୋଛିପକାନ୍ତୁ । ସେମାନେ ମୋର ଆତ୍ମୀୟ ଓ ଗୁରୁଜନ, ସେମାନଙ୍କୁ ରକ୍ଷାକରିବା ମୋର କର୍ତ୍ତବ୍ୟ । ଏପରି ଧାରଣା ଅନାବଶ୍ୟକ; କାରଣ, ଭଗବାନ୍ ଜନ୍ମ ଦେବା ସଙ୍ଗେ ସଙ୍ଗେ ତା'ର ସମସ୍ତ ବୃତ୍ତି ବ୍ୟବସ୍ଥା କରିଛନ୍ତି । ସମସ୍ତଙ୍କର ଏହି ଭୌତିକ ଶରୀରର: କାଳ, କର୍ମ ଓ ତ୍ରିଗୁଣର ଅଧୀନ । କେବଳ ପାପପୁଣ୍ୟର ମାତ୍ରା ଅନୁସାରେ କିଏ ସତ୍ତ୍ୱଗୁଣ ପ୍ରଧାନ, ତମୋଗୁଣ ପ୍ରଧାନ ବା ରଜୋଗୁଣ ପ୍ରଧାନ ହୁଏ । ସମସ୍ତେ ଉକ୍ତ ଭାବତ୍ରୟର ଅଧୀନ ହୋଇ କାର୍ଯ୍ୟ କରୁଥିବାବେଳେ, ଜଣେ ସ୍ୱତନ୍ତ୍ରଭାବେ ଅନ୍ୟର ରକ୍ଷା ବା ବିନାଶ କପରି କରିପାରିବ ? ନିଜେ ପାଣିରେ ବୁଡ଼ି ଅନ୍ୟକୁ ବୁଡ଼ିଯିବାରୁ ରକ୍ଷା କରିହେବ କି ? ନିଜେ ବିଷପାନ କରି ମୃତ୍ୟୁବରଣ କରୁଥିବା ବିଷପୀଡ଼ିତ ଅନ୍ୟର ପ୍ରାଣରକ୍ଷା କରିପାରିବ କିପରି ? ସର୍ପ ଯାହାକୁ ଦଂଶନ କରିଛି, ସେ ଅନ୍ୟକୁ ରକ୍ଷାକରିବାପାଇଁ ଅସମର୍ଥ ।

ଧର୍ମପୁତ୍ର ଯୁଧିଷ୍ଠିର କହିଲେ—"ମହାରାଜ ! ଆପଣ ବଡ଼ ବିଚିତ୍ର କଥା କହୁଛନ୍ତି । ତେବେ ଦୟା, ଧର୍ମ, ପରୋପକାର, ପୁରୁଷାର୍ଥ ପ୍ରଭୃତିର କ'ଣ ମୂଲ୍ୟ ? ଭାଗ୍ୟ ଉପରେ ନିର୍ଭରକରି ଚୁପ୍ ଚାପ୍ ବସିରହିଲେ ଆଉ କୌଣସି କାମ ହେବ ନାହିଁ । ଲୋକଉପାସରେ ଜୀବନ ଚାଲିଯିବ ।"

ନାରଦ କହିଲେ —"ରାଜନ୍ ! ସମସ୍ତେ ପୁରୁଷାର୍ଥ ଅର୍ଜନ କରିପାରିବେ ନାହିଁ । ପୁରୁଷାର୍ଥ ଓ ତା'ର ଫଳ ମଧ୍ୟ ପ୍ରାରବ୍ଧ କର୍ମର ଅଧୀନ, ଭଗବାନ୍ ସେବକ ନିମିତ୍ତ ନିଶ୍ଚିତ ବ୍ୟବସ୍ଥା କରିଛନ୍ତି । ପ୍ରତ୍ୟେକ ଜୀବ ଅନ୍ୟ ଜୀବର ସହାୟତାରେ ଜୀବନଧାରଣ କରିଥାଏ । ଘାସ, ପତ୍ର, ବୃକ୍ଷ ସମସ୍ତଙ୍କର ଜୀବନ ଅଛି । ସେଗୁଡ଼ିକୁ ଖାଇ ପଶୁପକ୍ଷୀ ବଞ୍ଚି ରହନ୍ତି । ଅଧିକାଂଶ ନିର୍ଦ୍ଦୟ ଲୋକ ଛେଳି; ମେଣ୍ଢା, ହରିଣ ପ୍ରଭୃତିଙ୍କୁ ମାରି ଖାଇଥାନ୍ତି । ଜଳରେ ରହୁଥିବା ବଡ଼ ବଡ଼ ମାଛ ଛୋଟ ଛୋଟ ମାଛ ଶୀକାର କରି ଜୀବନଧାରଣ କରନ୍ତି । ଏହିପରି ଗୋଟିଏ ଜୀବ ଅନ୍ୟ ଜୀବର ଜୀବନ ବିନିମୟରେ ବଞ୍ଚି ରହେ । ଆପଣଙ୍କର କକେଇ, ଖୁଡ଼ୀ ଆଦି ବଣରେ ଫଳମୂଳ ଖାଇ ରହିପାରିବେ । ସେମାନଙ୍କ ପାଇଁ ଆପଣ ବୃଥା ଭାବନା କରିବା ଉଚିତ ନୁହେଁ ।"

ଆପଣ ଦେଖନ୍ତୁ ଜୀବ ହିଁ ନିଜେ ଭୋଜ୍ୟ ଓ ନିଜେ ଭୋକ୍ତା । ଭଗବାନ୍ ଉଭୟରୂପ ବିଦ୍ୟମାନ । ସେ ନାନାରୂପରେ କ୍ରୀଡ଼ା କରୁଛନ୍ତି । ଫୁଲ, ଫଳରେ ସେ ଅଛନ୍ତି ଏବଂ ତାକୁ ଖାଇ ଜୀବନଧାରଣ କରୁଥିବା ମୁନି ଋଷିଙ୍କଠାରେ ମଧ୍ୟ

Digitized by srujanika@gmail.com

ସେ ରହିଛନ୍ତି । ମହାଭାରତ ଯୁଦ୍ଧରେ ଯେତେ ରାଜା ମହାରାଜା ମୃତ୍ୟୁବରଣ କଲେ ସମସ୍ତଙ୍କଠାରେ ଭଗବାନ୍ ଆତ୍ମରୂପରେ ଥିଲେ । କାଳରୂପରେ ସେ ସମସ୍ତଙ୍କୁ ପୁଣି ସଂହାର କଲେ । ଆପଣ ଶ୍ରୀକୃଷ୍ଣଙ୍କୁ କ'ଣ ବୋଲି ଭାବୁଛନ୍ତି ? ସେହିଁ ସାକ୍ଷାତ୍‌କାଳ ଭଗବାନ୍ । ଆପଣ ଯାହାଙ୍କୁ ସଖା, ସମ୍ବନ୍ଧୀ, ମିତ୍ର, ସାରଥି ବୋଲି ଜାଣନ୍ତି ସେ କାଳର କାଳସ୍ୱରୂପ । ପୃଥିବୀର ଭାରଭୂତ ରାଜାମାନଙ୍କୁ ସଂହାର କରି ଏବେ ଯଦୁବଂଶର ସଂହାର ବିଷୟ ଭାବୁଛନ୍ତି । ଏହାପରେ ସେ ଧାରାଧାମକୁ ତ୍ୟାଗକରି ନିତ୍ୟଶୁଦ୍ଧ ସନାତନ ଲୋକକୁ ଫେରିଯିବେ । ସେ ଚାଲିଗଲାପରେ କଳିଯୁଗର ପ୍ରଭାବ ଚାରିଆଡ଼େ ଖେଳିଯିବ । ସେତେବେଳେ ଏ ପୃଥିବୀ ଆଉ ରହିବାଯୋଗ୍ୟ ହୋଇରହିବ ନାହିଁ । ଆପଣମାନେ ମଧ୍ୟ ଏହାକୁ ତ୍ୟାଗ କରି ମହାପ୍ରସ୍ଥାନର ପଥରେ ଆଗେଇଯିବେ ।

ଧର୍ମରାଜ ଜାଣିପାରିଲେ ଯେ ବର୍ତ୍ତମାନ ସମସ୍ତଙ୍କର କାଳ ଆସିଗଲା । ମୋତେ ମଧ୍ୟ ଯଥାଶୀଘ୍ର ଗୃହତ୍ୟାଗ କରିବାକୁ ପଡ଼ିବ । ସେ ଆଖିଆଗରେ ପ୍ରତ୍ୟକ୍ଷଭାବେ କାଳଙ୍କୁ ଦେଖିବାକୁ ଲାଗିଲେ । ସେ ନାରଦଙ୍କୁ ପଚାରିଲେ—"ହେ ସର୍ବଜ୍ଞ ! ଆପଣ ସବୁ କିଛି ଜାଣନ୍ତି । ମୋର ମଉସା, ମାଉସୀ, କକେଇ ପ୍ରଭୃତିଙ୍କ ଖବର କୁହନ୍ତୁ । ସେମାନେ କୁଆଡ଼େ ଗଲେ ?"

ନାରଦ କହିଲେ—"ଆପଣ ଚିନ୍ତା କରନ୍ତୁ ନାହିଁ । ସେମାନେ ସମସ୍ତେ ଧାର୍ମିକ, ସେମାନଙ୍କର କୌଣସି ପ୍ରକାର ବିପଦ ଘଟିବ ନାହିଁ । ହିମାଳୟର ଦକ୍ଷିଣରେ ଗଙ୍ଗାଦ୍ୱାର ନିକଟରେ ସପ୍ତର୍ଷିଙ୍କର ଏକ ସୁନ୍ଦର ଆଶ୍ରମ ଅଛି । ସାତ ଋଷିଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ଭଗବତୀ ଗଙ୍ଗା ସେଠାରେ ସାତୋଟି ଧାରରେ ବହୁଛନ୍ତି । ସେଥିପାଇଁ ସେ ସ୍ଥାନ ସପ୍ତସ୍ରୋତ ନାମରେ ପ୍ରସିଦ୍ଧ । ସେହିଠାରେ ଆପଣଙ୍କ ମଉସା, ମାଉସୀ ଓ କକେଇ ସୁଖରେ ଅଛନ୍ତି । ଧର୍ମରାଜଙ୍କ ପ୍ରଶ୍ନର ଉତ୍ତର ଦେଇ ନାରଦ କହିଲେ—"ସେମାନେ ସେଠାରେ ଶ୍ରୀକୃଷ୍ଣଙ୍କ ସ୍ମରଣ, ଚିନ୍ତନ, ଗୁଣକୀର୍ତ୍ତନ ଓ ଲୀଳାଶ୍ରବଣ କରୁଛନ୍ତି । ତାହାହିଁ ସେମାନଙ୍କ ପ୍ରଧାନ ଖାଦ୍ୟ । ସେହି ଆହାରଦ୍ୱାରା ସେମାନେ ଅତୀବ ଆନନ୍ଦରେ ଅଛନ୍ତି । ପ୍ରତିଦିନ ପୁଣ୍ୟତୋୟା ଗଙ୍ଗାରେ ତ୍ରିକାଳସ୍ନାନ କରୁଛନ୍ତି । ଏ ପର୍ଯ୍ୟନ୍ତ ସେମାନେ ଅଗ୍ନି-ହୋତ୍ରକୃତ୍ୟ ତ୍ୟାଗକରି ନାହାନ୍ତି; କିନ୍ତୁ ଆହାର ତ୍ୟାଗ କରିଛନ୍ତି । କିଛିମାତ୍ର ଗଙ୍ଗାର ଅମୃତୋପମ ଜଳଧାରା ଆନନ୍ଦରେ ପାନ କରୁଛନ୍ତି । ପ୍ରାଣାୟାମ ଅଭ୍ୟାସଦ୍ୱାରା ଇନ୍ଦ୍ରିୟଗଣଙ୍କୁ ଦମନ କରିସାରିଛନ୍ତି ।" ହେ କୁରୁକୁଳ ମୁକୁଟମଣି ଧର୍ମରାଜ ! ସତ୍ତ୍ୱ, ରଜ, ତମହିଁ ବନ୍ଧନର ହେତୁ । ଭଗବାନ୍ ଏହି ତ୍ରିଗୁଣାତ୍ମକ ଦଉଡ଼ିରେ ଜୀବକୁ ବନ୍ଧନ କରି ରଖିଛନ୍ତି । ନିତ୍ୟ ନିରନ୍ତର ଶ୍ରୀହରିଙ୍କ ଗୁଣକୀର୍ତ୍ତନ-ଦ୍ୱାରା ଏହି ଗୁଣଗୁଡ଼ିକର ମଳ ନଷ୍ଟ ହୋଇଯାଏ । ଅହଙ୍କାରକୁ ବୁଦ୍ଧି ସହିତ

Digitized by srujanika@gmail.com

ସଂଯୋଗ କରି ଚେତନରେ ଲୀନ କରିବା ସଙ୍ଗେ ସଙ୍ଗେ ହିଁ ପୁରୁଷ ତ୍ରିଗୁଣାତୀତ ହୋଇଯାଏ । ସେହି ଅବସ୍ଥାରେ ଚେତନକୁ ଶୁଦ୍ଧ ସଚ୍ଚିଦାନନ୍ଦ ସହିତ ଯୋଗ କରିଦେଲେ ସିନ୍ଧୁରେ ବିନ୍ଦୁର ମିଳନ ଭଳି ସବୁ କିଛି ଏକାକାର ଅନୁଭୂତ ହେବ । ଘଟାକାଶ ମହାକାଶରେ ଓ ଅଗ୍ନିକଣା ଅଗ୍ନିରେ ମିଶିଗଲା ଭଳି ଜୀବାତ୍ମା ପରମାତ୍ମା ସହିତ ମିଳିତ ହୁଏ । ସେମାନେ ବର୍ତ୍ତମାନ ତାହା ହିଁ କରିଛନ୍ତି । ବର୍ତ୍ତମାନ ସେମାନେ କାମ୍ୟିକଗୁଣ ସୁଲଭ ବାସନାରୁ ମୁକ୍ତ ହୋଇଯାଇଛନ୍ତି । ମନ ସହିତ ଇନ୍ଦ୍ରିୟଗଣ ବଶୀଭୂତ ହୋଇଗଲେ ମନର ସ୍ୱାଭାବିକ ରୁଚି ଦୂର ହୋଇଥାଏ ଏବଂ ବିଷୟପ୍ରତି ବିରାଗ ଜାତ ହୁଏ । ସେତେବେଳେ ପ୍ରାଣୀ ପ୍ରାଣ ଥିଲେ ବି ସ୍ଥାଣୁ ପାଲଟିଯାଏ । ମନର ଚଞ୍ଚଳତା ଦୂର ହୁଏ ଓ ନୈଷ୍କର୍ମ୍ୟ ଆସିଯାଏ । ସେମାନେ ତିନି ହେଁ ଏହି ଅବସ୍ଥାରେ ଅଛନ୍ତି ।

ଧର୍ମରାଜ କହିଲେ—"ତେବେ ମୁଁ ସେଇଠାକୁ ଯିବି । ଯେଉଁଭଳି ହେଉ ସେମାନଙ୍କୁ ଫେରେଇ ଆଣିବି । ସେ ମୋ ଘରେ ପଛେ ନ ରହନ୍ତୁ । ଗଙ୍ଗା କୂଳରେ ତାଙ୍କ ପାଇଁ ସମସ୍ତ ସୁବିଧା କରିଦେବି । ମୁଁ ନିଜେ ତାଙ୍କର ସେବାରେ ସମୟ କଟାଇବି ।"

ନାରଦ କହିଲେ—"ରାଜନ୍ ! ଏ ଚେଷ୍ଟା ଆପଣଙ୍କର ବ୍ୟର୍ଥ ହେବ । ସେମାନେ ମାୟା, ମୋହ ତ୍ୟାଗକରି ଏଠାରୁ ଯାଇଛନ୍ତି । ଆପଣ ତାଙ୍କୁ କୌଣସି ପ୍ରକାର କଷ୍ଟ ଦେଇନାହାନ୍ତି । ଆଉ ସେମାନେ ଆପଣଙ୍କ ଉପରେ ଅସନ୍ତୁଷ୍ଟ ହୋଇ ଯାଇ ନାହାନ୍ତି । ସେମାନେ ତୁମ୍ଭଙ୍କୁ ଓ ବନ୍ଧୁବାନ୍ଧବମାନଙ୍କୁ ମୃତ୍ୟୁ କାଳରେ ଦେଖିବା ପାଇଁ ଚାହୁଁନାହାନ୍ତି । ମୃତ୍ୟୁକାଳରେ ମନ କୁଟୁମ୍ବ, ପରିବାର ବିଷୟ ଚିନ୍ତାକଲେ ପୁନଶ୍ଚ ଜନ୍ମଗ୍ରହଣ କରିବାକୁ ପଡ଼େ । ସେଥିପାଇଁ ଆପଣ ସେମାନଙ୍କ କାର୍ଯ୍ୟରେ ପ୍ରତିବନ୍ଧକ ସୃଷ୍ଟି କରିବା ଉଚିତ ହେବନାହିଁ । ସର୍ବତ୍ୟାଗୀ, ବୀତରାଗୀ ସେହି ମହାନୁଭବଙ୍କ ମାର୍ଗକୁ କଣ୍ଟକିତ କରିବା ଠିକ୍ ନୁହେଁ । ସେମାନଙ୍କୁ ତାଙ୍କ କାର୍ଯ୍ୟ କରିବା ପାଇଁ ଦିଅନ୍ତୁ । ଆପଣ ନିଜ କାର୍ଯ୍ୟ କରନ୍ତୁ । ଆପଣ ସେମାନଙ୍କୁ ଫେରାଇ ଆଣି ପାରିବେନାହିଁ । ଆଜିଠାରୁ ପଞ୍ଚମ ଦିନରେ ସେମାନେ ନିଜ ଶରୀର ତ୍ୟାଗ କରିବେ ।"

ସେମାନେ କିପରି ଶରୀର ତ୍ୟାଗ କରିବେ, ଆଉ ସେମାନଙ୍କ ଦାହକ୍ରିୟା କିଏ କରିବ ବୋଲି ଯୁଧିଷ୍ଠିର ପଚାରିବାରୁ ନାରଦ କହିଲେ —"ଆପଣ ଦାହକ୍ରିୟା ବିଷୟରେ ଚିନ୍ତା କରୁଛନ୍ତି । ଏ ଶରୀର ଦାହହେଉ, ଜଳଜନ୍ତୁ, ଗୃଧ୍ର, ଚିଲ ଖାଇଯାଆନ୍ତୁ ବା ରାସ୍ତାକଡ଼ରେ ପଡ଼ି ପଚି ମାଟିରେ ମିଶି ଯାଉ ବା ଅନ୍ୟ କିଛି ହେଉ, ସେ ବିଷୟରେ ଜ୍ଞାନୀଲୋକର ଚିନ୍ତା ନ ଥାଏ । ତୁମର ସେ ଆତ୍ମୀୟ-ମାନଙ୍କ ଦେହକୁ ବନର ଦାବାଗ୍ନି ଭସ୍ମ କରିଦେବ । ତୁମର ମଉସା

Digitized by srujanika@gmail.com

ଜଳିଯାଉଥିବାର ଦେଖି ମାଉସୀ ନିଜେ ସେହି ଅଗ୍ନିରେ ଆତ୍ମବିସର୍ଜନ କରିବେ । କିନ୍ତୁ ବିଦୁର ଭାଇ ଭାଉଜଙ୍କ ସଦ୍‌ଗତିରେ ସନ୍ତୁଷ୍ଟ ହୋଇ ପୁନର୍ବାର ତୀର୍ଥଯାତ୍ରାରେ ଯାଇଁ ପ୍ରଭାସକ୍ଷେତ୍ରରେ ଆତ୍ମବିସର୍ଜନପୂର୍ବକ ପୁନଶ୍ଚ ଧର୍ମରାଜ ପଦରେ ଅଧିଷ୍ଠିତ ହେବେ । ଏହାହିଁ ସେମାନଙ୍କ ସମାଚାର । ତେଣୁ ଆପଣ ସେମାନଙ୍କ ପାଇଁ ଶୋକ ନ କରି ନିଜ ଚିନ୍ତା କରନ୍ତୁ ।"

ଧର୍ମରାଜଙ୍କୁ ଏହିଭଳି ଉପଦେଶ ଦେଇ ଦେବର୍ଷି ନାରଦ ପ୍ରିୟସଖା-ତୁମ୍ବୁରୁଙ୍କ ସହିତ ଭଗବାନ୍‌ଙ୍କ ନାମ ଗାନ କରି ସ୍ୱର୍ଗ ଆଡ଼କୁ ପ୍ରସ୍ଥାନ କଲେ । ନାରଦଙ୍କ ଉପଦେଶ ଅନୁସାରେ ନିଜର ଆତ୍ମୀୟମାନଙ୍କ ସମ୍ବାଦ ପାଇଁ ଯୁଧିଷ୍ଠିର ନିଶ୍ଚିନ୍ତ ହୋଇଗଲେ ।

ନିତ୍ୟ ନିୟମ ଅନୁସାର ଯୁଧିଷ୍ଠିର ଗୁରୁ ବନ୍ଦନକୁଁ ।
ଆୟେ, ଦେଖେ ନହୀଁ, ବିଦୁର ଅରୁ କୁରୁନନ୍ଦନକୁଁ ॥
ମୁନି ସଞ୍ଜୟତେଁ ବୃତ୍ତ ବହୁତ ରୋୟେ ପଛତାୟେ ।
ଆୟେ ନାରଦ ସମାଚାର ସବ ସତ୍ୟ ସୁନାୟେ ॥
ତାଉ, ତାଈ ତବ ଚଲି ସପ୍ତ ସ୍ରୋତ ସବ ଜାୟଁଗେ ।
ପାପ ପୁଣ୍ୟ ତେଁ ପୃଥକ୍ ହୈ,
ପୁଣ୍ୟ ପରମପଦ ପାୟଁଗେ ॥



Digitized by srujanika@gmail.com

# ଅଧର୍ମ ଦର୍ଶନରେ
## ଧର୍ମରାଜଙ୍କ ଚିନ୍ତା

ପଶ୍ୟୋତ୍ପାତାନ୍ନରବ୍ୟାଘ୍ର ଦିବ୍ୟାନ୍
ଭୌମାନ୍ ସଦୈହିକାନ୍ ।
ଦାରୁଣାନ୍ ଶଂସତୋଽଦୂରାତ୍ ଭୟଂ ନୋ
ବୁଦ୍ଧିମୋହନମ୍ ॥
(ଭାଗବତ ୧. ୧୪. ୧୦.)

### ଛପ୍‌ପୟ

କହେ ଯୁଧିଷ୍ଠିର, ଭୀମ ! ଭୟାନକ କାଲ ଭୟୋ ହୈ ।
ଆୟୋ ଅର୍ଜୁନ ନହିଁ, ଦ୍ୱାରକା ମାଁହି ଗୟୋ ହୈ ॥
ଭୟେ ଧର୍ମ ବିପରୀତ ରୀତି କୁଲକୀ ସବ ତ୍ୟାଗେ ।
କାଇଁ ପୁତ୍ର, ପରଲୋକ ପିତାମାତା କେ ଆଗେ ॥
ପିତା-ପୁତ୍ର, ଭାଇ ସଗେ ପତିପତ୍ନୀ ମେଁ କଲହ ନିତ ।
ଅସଗୁନ ନିତ ନୂତନ ନିରଖି, ଚଞ୍ଚଲ ହୋୱେ ମୋର ଚିତ ॥

ସଂସାର ପରିବର୍ତ୍ତନଶୀଳ । ଏଠାରେ ଦୃଷ୍ଟିଗୋଚର ହେଉଥିବା ପ୍ରତ୍ୟେକ ବସ୍ତୁର ସ୍ୱରୂପ ସତ୍ୟ ନୁହେଁ । ସବୁ କିଛି ଅସାର, ନାଶବାନ୍ ଓ କ୍ଷଣଭଙ୍ଗୁର । ଏଗୁଡ଼ିକ ମଧ୍ୟରେ ସମାନଭାବେ ଅବସ୍ଥିତ ଭଗବାନ୍‌ଙ୍କ ସତ୍ତା ହିଁ ଏକମାତ୍ର ସତ୍ୟ । ରୋଗ, ଶୋକ, ଚିନ୍ତା ଓ ବ୍ୟାକୁଳତାର ଗନ୍ତାଘରଭାବେ ଏହି ସଂସାରକୁ ସୃଷ୍ଟି କରିବାର ଉଦ୍ଦେଶ୍ୟ କ'ଣ ? ସମସ୍ତେ ଏହି ପ୍ରଶ୍ନର ଗୋଟିଏ ଉତ୍ତର ଦେଇଛନ୍ତି— ନିଜର କ୍ରୀଡ଼ା, ଚିତ୍ତବିନୋଦନ ଓ ମନର ସାମୟିକ ପରିବର୍ତ୍ତନ ନିମିତ୍ତ ଭଗବାନ୍ ଏହି ସଂସାରକୁ ରଚନା କରିଛନ୍ତି । ଏହା ଯଦି ସତ୍ୟ ତେବେ ଦୈତ୍ୟ, ଦାନବ, ଅଧର୍ମ, ପାପଜନିତ ବୀଭତ୍ସଦୃଶ୍ୟମାନ କାହିଁକି ସୃଷ୍ଟି ହୋଇଛି ? ଏହା ମଧ୍ୟ ତାଙ୍କର ମନୋରଞ୍ଜନର ସାଧନ । ମିଠା ଖାଇ ଖାଇ ବିରକ୍ତି ଲାଗିଲେ ଖଟା,

Digitized by srujanika@gmail.com

ପିଡ଼ା, କଷ୍ଟ, ରୋଗ ଖାଇବା ପାଇଁ ଇଚ୍ଛା ହୁଏ । ଧର୍ମ ଓ ଅଧର୍ମ ପ୍ରଭୁଙ୍କ ଇଚ୍ଛା ବିନା ପ୍ରବୃତ୍ତ ହୁଏନାହିଁ । ଦୁଇଟିଯାକ ପ୍ରଭୁଙ୍କ ଅଙ୍ଗ । ଧର୍ମ ଉତ୍ତମାଙ୍ଗ, ହୃଦୟ ଓ ଅଧର୍ମ ପୃଷ୍ଠଭାଗ ରୂପେ କଳ୍ପିତ । ଶରୀରରକ୍ଷା ନିମିତ୍ତ, ଉତ୍ତମ, ଅଧମ ସମସ୍ତ ଅଙ୍ଗର ଆବଶ୍ୟକତା ଥାଏ । ଶରୀରର ଯେଉଁ ମାର୍ଗରେ ଦୁର୍ଗନ୍ଧ ମଳସ୍ରାବ ହୁଏ ତାହା ଉତ୍ତମାଙ୍ଗ ନ ହେଲେ ମଧ୍ୟ, ତାକୁ ଶରୀରଠାରୁ ପୃଥକ୍ କରିବା ଅସମ୍ଭବ । ତାହା ବିନା ଶରୀରର ସ୍ଥିତି ଅସମ୍ଭବ । ମଳର ଆଧାର ଉପରେ ହିଁ ଶରୀରର ସ୍ଥିତି ବିଦ୍ୟମାନ । ସେହିପରି ସଂସାରରେ ଧର୍ମ ଓ ଅଧର୍ମ ସର୍ବଦା ଲାଗି ରହିଛି ଏବଂ ସେହିପରି ରହିଥିବ । ତନ୍ମଧ୍ୟରେ ଧର୍ମ ଗ୍ରାହ୍ୟ ଓ ଅଧର୍ମ ଅଗ୍ରାହ୍ୟ ।

କାଳସ୍ୱରୂପ ପ୍ରଭୁ ସର୍ବଦା ନିତ୍ୟ ନୂତନ ରୂପ ଧାରଣ କରନ୍ତି । ପ୍ରତିକ୍ଷଣ ତାଙ୍କ ରୂପର ପରିବର୍ତ୍ତନ ଘଟେ । ଗତି ତାଙ୍କର ଦୁର୍ନିବାର । ତାଙ୍କ ଗତି କେହି ପ୍ରତିରୋଧ କରିପାରିବ ନାହିଁ । ଆପଣ ଭାବିବେ ଆଜି ଶନିବାର ନ ହୋଇ ରବିବାର ହେଉ, ତାହା ଅସମ୍ଭବ । ଆପଣ ଯେତେ ଚେଷ୍ଟା କଲେ ବି ଅମାବାସ୍ୟା ଦିନ ପୂର୍ଣ୍ଣଚନ୍ଦ୍ର ଦର୍ଶନ କରିପାରିବେ ନାହିଁ । ଜ୍ୟେଷ୍ଠ ମାସରେ ମାଘମାସର ଶୈତ୍ୟ ସଂଘଟନ ସମ୍ଭବ ନୁହେଁ । ସବୁ କିଛି ସମୟ ଅନୁସାରେ ଘଟେ । ସତ୍ୟ, ତ୍ରେତା ଓ ଦ୍ୱାପର ପରେ କଳିଯୁଗ ଆସେ । ତାହାକୁ କେହି ବଦଳେଇ ପାରିବ ନାହିଁ । ଏହା ହିଁ ଭଗବାନ୍‌ଙ୍କ ବିଧାନ । ଏହାର ନିବାରଣ ମାନବୀୟ ଶକ୍ତିର ବାହାରେ । ଯେଉଁମାନେ କହନ୍ତି 'ମୁଁ ପୁରୁଷାର୍ଥ ବଳରେ ଏହା କରିଦେବି ବା ତାହା କରିପାରିବି । ମୁଁ ଯାହା କରିବି ତାହା ବ୍ୟର୍ଥ ହେବନାହିଁ; ସେମାନେ ଦମ୍ଭର ପାତ୍ର ହୋଇଥାନ୍ତି । ସେମାନେ କି ନିୟମ କରିବେ ? କାଳର ନିୟମ ଆଗରେ ତାଙ୍କ ନିୟମକୁ କିଏ ପାଳନ କରିବ ? ରାମ, କୃଷ୍ଣ ଆଦି ଅବତାରଙ୍କ ପ୍ରସ୍ତୁତ ବିଧିବିଧାନ କାଳର କୁଟିଳ ଗତିରେ ଶିଥିଳ ହୋଇଯାଉଥିବାବେଳେ ଆପଣଙ୍କ ଭଳି କ୍ଷୁଦ୍ରତମ ଅଳ୍ପଜ୍ଞ ପ୍ରାଣୀର କଥା ଉଠୁଛି କେଉଁଠି ? ତେଣୁ ସମଗ୍ର ବିଶ୍ୱ କାଳର ଅଧୀନ ।"

ପାଣ୍ଡବମାନେ ସୁଖରେ ରାଜତ୍ୱ କରିବାକୁ ଲାଗିଲେ । ଧୀରେ ଧୀରେ ଦୀର୍ଘ ଛତିଶ ବର୍ଷକାଳ ଅତିବାହିତ ହୋଇଗଲା । ରାଜକାର୍ଯ୍ୟ ବ୍ୟବହାର ଓ ବ୍ୟାପାର ମଧ୍ୟରେ ପାଣ୍ଡବମାନେ ଆତ୍ମବିସ୍ମୃତ ହୋଇଥିଲେ ମଧ୍ୟ କାଳ ଅତି ଶୀଘ୍ର ଦିନ ଗଣୁଥାଏ । ଅର୍ଜୁନ ଭଗବାନ୍ ଶ୍ରୀକୃଷ୍ଣଙ୍କ ଅତ୍ୟନ୍ତ ପ୍ରିୟ ଥିଲେ । ଦିନେ ସହସା ତାଙ୍କ ମନରେ ଆସିଲା, ମାଳା ଗଣି ଗଣି ଜପ କରୁଥିବା ଲୋକର ଅଙ୍ଗୁଳି ନିଶ୍ଚୟ ସୁମେରୁ ବା ଶେଷ ମାଳିକୁ ସ୍ପର୍ଶ କରିବାକୁ ଯାଉଛି । ଏହା ଚିନ୍ତାକରି ସେ ଧର୍ମରାଜଙ୍କୁ ଜଣାଇଲେ—ମହାରାଜ ! ଦୀର୍ଘକାଳ ହେଲା ଶ୍ୟାମସୁନ୍ଦରଙ୍କର କୌଣସି ଖବର ମିଳିଲାନାହିଁ । ମୋ ମନରେ ନାନାପ୍ରକାର ଆଶଙ୍କା ଜାତ

Digitized by srujanika@gmail.com

ହେଉଛି । ଯଦି ଆପଣ ଆଦେଶ ଦେବେ, ତେବେ ଦ୍ୱାରାବତୀ ଯାଇ ମୁଁ ଯାଦବେନ୍ଦ୍ର ଶ୍ରୀକୃଷ୍ଣଙ୍କ ଖବର ବୁଝି ଆସିବି । ମୋ ମନ ତାଙ୍କ ଚରଣ ଦର୍ଶନ ନିମିତ୍ତ ଅତ୍ୟନ୍ତ ବ୍ୟାକୁଳ ହେଉଛି ।

ଧର୍ମରାଜ ମଧ୍ୟ ମନେ ମନେ ସେଇ କଥା ଭାବୁଥିଲେ । ସେ ମଧ୍ୟ ବାସୁଦେବଙ୍କ କାର୍ଯ୍ୟାବଳୀ ଜାଣିବା ନିମିତ୍ତ ବ୍ୟାକୁଳ ହେଉଥିଲେ । ଅର୍ଜୁନଙ୍କ କଥା ଶୁଣି ସେ ଅନୁମତି ଦେବା ଭଙ୍ଗୀରେ କହିଲେ—"ଭାଇ ଅର୍ଜୁନ ! ତୁମେ ଠିକ୍ ମୋ' ମନ କଥା କହିଛ । ମୁଁ ମଧ୍ୟ ଦେବକୀନନ୍ଦନଙ୍କ ସମାଚାର ଶୁଣିବା ପାଇଁ ଅତ୍ୟନ୍ତ ଉତ୍ସୁକ ।" ମୁଁ ମନେ ମନେ ତୁମକୁ ପଠାଇବା ପାଇଁ ଭାବୁଥିଲି । କିନ୍ତୁ ସ୍ନେହବଶତଃ ତୁମକୁ ଆଖି ଆଗରୁ ଦୂରେଇ ଦେବାକୁ ହୃଦୟ ମୋର ଚାହୁଁ ନାହିଁ । ବର୍ତ୍ତମାନ ତୁମେ ନିଜେ ସେହି ପ୍ରସ୍ତାବ ଦେଇଛ; ତେଣୁ ଶୀଘ୍ର ଯାଇ ସମସ୍ତ ଖବର ବୁଝି ଫେରିଆସ । ସେଠାରେ ବେଶୀ ସମୟ ରହିବନାହିଁ କି ଫେରିବାରେ ଆଦୌ ବିଳମ୍ବ କରିବନାହିଁ । ତୁମେ ଯେତେବେଳେ ଶ୍ରୀକୃଷ୍ଣଙ୍କ ପାଖକୁ ଗଲ, ସେତେବେଳେ ନିଜକୁ ଭୁଲିଗଲ । ଏଥର ଆଉ ସେପରି କରିବ ନାହିଁ । ହେଉ ଯାଅ ! ଏହିଭାବେ ଧର୍ମରାଜଙ୍କ ଅନୁମତି ଓ ଆତ୍ମୀୟ ବନ୍ଧୁ-ବର୍ଗଙ୍କଠାରୁ ବିଦାୟ ନେଇ ଅଳ୍ପ କେତେକ ସୈନ୍ୟଙ୍କ ସହିତ ଅର୍ଜୁନ ଦ୍ୱାରକା ଯାତ୍ରାକଲେ । ସେ ଗିବା ପରଠାରୁ ହସ୍ତିନାରେ ପ୍ରତିଦିନ ତାଙ୍କର ପ୍ରତ୍ୟାବର୍ତ୍ତନକୁ ପ୍ରତୀକ୍ଷା କରାଯାଏ । ଏ ମଧ୍ୟରେ ସାତ ମାସ ବିତିଗଲା; ତଥାପି ଅର୍ଜୁନ ଫେରିଲେନାହିଁ । ଏହି ସମୟ ମଧ୍ୟରେ ବିଦୁର ଆସି ପହଞ୍ଚିଲେ ଏବଂ ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କୁ ନେଇ ଚାଲିଗଲେ । ମହର୍ଷି ନାରଦ ଆସିଲେ, ନାନା ବିଧ ଜ୍ଞାନୋପଦେଶ ପ୍ରଦାନ କରି ସେ ବି ଫେରିଗଲେ ।"

ଧର୍ମରାଜଙ୍କ ଧୈର୍ଯ୍ୟବନ୍ଧ ଭାଙ୍ଗିବାକୁ ବସିଲା । ପୂର୍ବରୁ ଦେଖି ନ ଥିବା ବିପରୀତ ଧର୍ମର ଘଟଣାଗୁଡ଼ିଏ ଦେଖି ସେ ମନେ ମନେ ବ୍ୟସ୍ତ ହେବାକୁ ଲାଗିଲେ । ପୂର୍ବରୁ ହୋଇ ନ ଥିବା ନାନାବିଧ ଅଶୁଭ ଉତ୍ପାତ ଘଟିବାକୁ ଲାଗିଲା । ଏ ପ୍ରକାର ଆଶ୍ଚର୍ଯ୍ୟ ଘଟଣାମାନ ଦେଖି ଦିନେ ସେ ନିଜର ଭାଇ ଓ ମୁନି ଋଷିଙ୍କୁ ଡକାଇ ମାନସିକ ବ୍ୟସ୍ତତାର କାରଣ ଜଣାଇଲେ । ସାନ ଭାଇ ଧର୍ମରାଜଙ୍କୁ ଚିନ୍ତିତ ହେଉ ଥିବାର ଦେଖି କହିଲେ—"ପ୍ରଭୋ ! ଆପଣ ଏତେ ବ୍ୟାକୁଳ କାହିଁକି ହେଉଛନ୍ତି ? ସୁଖ ଦୁଃଖ, ଶୁଭ ଅଶୁଭ ତ ସଂସାରରେ ସବୁଦିନ ପାଇଁ ଲାଗି ରହିଛି ।"

ଧର୍ମରାଜ ଗମ୍ଭୀରଭାବେ କହିବାକୁ ଆରମ୍ଭ କଲେ —"ଭାଇମାନେ, ଏବେ ଘୋର ଦୁଃସମୟ ଆସୁଛି । ତା'ର ପ୍ରତ୍ୟକ୍ଷ ଲକ୍ଷଣ ଦେଖାଗଲାଣି । ମୋର ମନ ହେଉଛି, ଏବେ କଳିଯୁଗ ଆସିଗଲାଣି ବା ନିକଟ ଭବିଷ୍ୟତରେ ଆସୁଛି । ବର୍ତ୍ତମାନ ଏଭଳି ଘଟଣାମାନ ଘଟିଲାଣି, ଯାହା କେବେ ସ୍ୱପ୍ନରେ ମଧ୍ୟ କଳ୍ପନା

Digitized by srujanika@gmail.com

କରିବା ସମ୍ଭବ ନୁହେଁ । ଘରଆଡ଼େ କଳହର ଜାଲ ବିସ୍ତାର ହୋଇଗଲାଣି । ବାପ ପୁଅ, ଭାଇ ଭାଇ, ମିତ୍ର ମିତ୍ର, ଆତ୍ମୀୟସ୍ୱଜନ, ପତିପତ୍ନୀ ମଧ୍ୟରେ ମନୋମାଳିନ୍ୟର ଲକ୍ଷଣ ପ୍ରକାଶ ପାଇଲାଣି । ଲୋକେ କ୍ରମଶଃ ଲୋଭାକୃଷ୍ଟ ହୋଇପଡ଼ୁଛନ୍ତି । ଏ ସମସ୍ତ ଦେଖି ମନେହେଉଛି ଅଧର୍ମର ବନ୍ଧୁ ଦୁଷ୍ଟ କଳିଯୁଗ ମୋ ରାଜ୍ୟରେ ଅନୁପ୍ରବେଶ କଲାଣି ।

ଭାଇମାନେ ପଚାରିଲେ—"ପ୍ରଭୋ ! ଆପଣ କିପରି ଜାଣିଲେ ? ଆପଣ ନିଜେ ଧର୍ମର ମୂର୍ତ୍ତିପ୍ରତୀକ । ଆପଣ ଥାଉଁ ଥାଉଁ କଳିଯୁଗର ଏପରି ଦୁଃସାହସ କିପରି ହେଲା ? ଆପଣଙ୍କୁ ନ କହି ସେ ଆପଣଙ୍କ ରାଜ୍ୟରେ ପ୍ରବେଶ କଲା କିମିତି ?" ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଧର୍ମରାଜ ଅତି ଦୁଃଖରେ କହିଲେ —କାଳର ଦୁର୍ନିବାର ଗତିକୁ ଭଗବାନ୍ ଶ୍ରୀକୃଷ୍ଣଙ୍କ ବ୍ୟତୀତ ଅନ୍ୟ କେହି ପ୍ରତିହତ କରିବାପାଇଁ ସମର୍ଥ ନୁହେଁ । କଳିଯୁଗ ବହୁ ଆଗରୁ ଆସି ଯାଇଥିଲେ ମଧ୍ଯ ଶ୍ରୀକୃଷ୍ଣ ଏହି ପୃଥିବୀରେ ଥିବା ପର୍ଯ୍ୟନ୍ତ ତା'ର ପ୍ରଭାବ ଦେଖାଯାଉ ନ ଥିଲା । ଏବେ ମୁଁ ଦେଖୁଛି ଲୋକଙ୍କ ମନରେ ଥିବା ଧର୍ମପ୍ରବୃତ୍ତି ଧୀରେ ଧୀରେ ବଦଳି ଯାଉଛି । କାଳର ଗତି ବିକରାଳ ହେଉଛି । ଯଥାସମୟରେ ମେଘ ଜଳବର୍ଷା କରୁନାହିଁ । ଋତୁମାନଙ୍କର ଧର୍ମ ବିପରୀତ ଆଡ଼କୁ ଗତି କରୁଛି । ବୃଷ୍ଟିର ଅନିୟମିତତା ହେତୁ କୃଷିସମ୍ପଦ ନଷ୍ଟ ହେଉଛି । ଲୋକେ କ୍ରୋଧୀ, ଲୋଭୀ ଓ ଅସତ୍ୟବାଦୀ ହେଉଛନ୍ତି । ଏହି ଘଟଣାରୁ ମୁଁ ନିଶ୍ଚିତଭାବେ ଜାଣିପାରୁଛି ଯେ କଳିଯୁଗ ଧୀରେ ଧୀରେ ପୃଥିବୀରେ ନିଜର ପ୍ରଭାବ ବିସ୍ତାର କରୁଛି ।

ଦିନେ ଶ୍ରୀକୃଷ୍ଣ ଏଠାରେ ଥିବାବେଳେ ମୋ ପାଖକୁ ଏକ ଅଭିଯୋଗ ବିଚାର ପାଇଁ ଆସିଲା । ଜଣେ ବ୍ୟକ୍ତି ଅନ୍ୟ ଜଣଙ୍କ ସାହାଯ୍ୟରେ ନିଜର ପୁରୁଣା ଘରକୁ ବିକିଥିଲା । ଯେ ସେହି ଜମିକୁ କିଣିଥିଲା ସେ ପୁରୁଣା ଘରକୁ ଭାଙ୍ଗି ନୂଆ ଘର ତିଆରି କରିବା ନିମିତ୍ତ ନିହ ଖୋଳୁଥିଲା । ସେହି ନିହ ଖୋଳାବେଳେ ସେଠାରୁ ସୁବର୍ଣ୍ଣମୁଦ୍ରା ପରିପୂର୍ଣ୍ଣ ଏକ କଳସୀ ମିଳିଲା । ସେ ସେହି କଳସୀକୁ ନେଇ ଗୃହର ପୂର୍ବ ମାଲିକଙ୍କ ପାଖକୁ ଗଲା । ତାଙ୍କୁ କହିଲା—"ବନ୍ଧୁ ! ଆପଣଙ୍କ ଜମିରୁ ଏ କଳସୀ ମିଳିଛି, ଆପଣ ଏହାକୁ ରଖନ୍ତୁ ।" ସର୍ପତୁଲ୍ୟ ସୁବର୍ଣ୍ଣ ମୁଦ୍ରାରେ ପରିପୂର୍ଣ୍ଣ କଳସୀକୁ ଦେଖି ଭୟଭୀତ ହୋଇ ଭୂତପୂର୍ବ ଗୃହସ୍ୱାମୀ କହିଲେ— "ମହାନୁଭବ ! ଆପଣ କିପରି ଏ ଅଧର୍ମ କଥା କହୁଛନ୍ତି ? ମୁଁ ଉଚିତ ମୂଲ୍ୟ ନେଇ ଆପଣଙ୍କୁ ସେ ସ୍ଥାନ ବିକି ଦେଇଛି, ଏବେ ସେଠାରୁ ସୁନା ବାହାରୁ ବା ଅଙ୍ଗାର ବାହାରୁ ତାହାର ଅଧିକାରୀ ଆପଣ । ମୁଁ ଏ ସୁବର୍ଣ୍ଣମୁଦ୍ରା ନେବିନାହିଁ, ଆପଣ ନିଜ ଇଚ୍ଛା ଅନୁସାରେ ତାହାର ଉପଯୋଗ କରନ୍ତୁ ।" ଏହା ଶୁଣି କିଣିଥିବା ଲୋକ କହିଲା—"ଦେଖନ୍ତୁ, ଆପଣ ମୋତେ ଲୋଭରେ ପକାଇ ମୋର ପରଲୋକ

Digitized by srujanika@gmail.com

ଫଳକୁ ନଷ୍ଟ କରନ୍ତୁ ନାହିଁ । ଆପଣ ମୋତେ କେବଳ ଘରଟା ବିକିଥିଲେ; କିନ୍ତୁ ଆପଣଙ୍କ ପୂର୍ବପୁରୁଷଙ୍କଦ୍ୱାରା ସଞ୍ଚିତ ଏ ସୁବର୍ଣ୍ଣମୁଦ୍ରା ମୋତେ ଦେଇନାହାନ୍ତି । ଭୁଲ୍‌ରେ ଆପଣ ଏହି ସୁବର୍ଣ୍ଣମୁଦ୍ରା କଥା ଜାଣନ୍ତି ନାହିଁ । ଆପଣ ଏହା ଜାଣିଥିଲେ ଏତେ କମ୍ ମୂଲ୍ୟରେ ମୋତେ ଘରଟା ବିକି ନ ଥାନ୍ତେ । ତେଣୁ ଏ ମୁଦ୍ରା ଉପରେ ମୋର କୌଣସି ଅଧିକାର ନାହିଁ । ମୁଁ ଏହାକୁ ନେଇ ପାପଭାଗୀ ହେବି ନାହିଁ ।''

ଭୂତପୂର୍ବ ଗୃହସ୍ୱାମୀ କହିଲେ—''ମୁଁ ତ ଜମି ବିକିଦେଇଛି । ସେଥିରେ ଏବେ ମୋର ବା ମୋ ପୂର୍ବପୁରୁଷଙ୍କର କୌଣସି ଅଧିକାର ନାହିଁ । ମନେ କରନ୍ତୁ ଆପଣ ନିହ ଖୋଳିବା ବେଳେ ଯଦି ଗୁଡ଼ାଏ ବିଛା ବାହାରିଥାନ୍ତେ, ତେବେ ସେଗୁଡ଼ାକ ଆଣି ଆପଣ ମୋ ଘରେ ଛାଡ଼ିଥାଆନ୍ତେ କି ? ଯଦି ମୋର ପୂର୍ବଜ ପ୍ରେତ ହୋଇ ସେଠାରେ କେହି ଥାନ୍ତେ, ଆପଣ ତାକୁ ଆଣି ମୋ ଘରେ ଛାଡ଼ିଥାଆନ୍ତେ ନା କ'ଣ ? ଘରର ସମ୍ପୃକ୍ତ ବସ୍ତୁକୁ କଳନାକରି ମୁଁ ତ ବିକି ନ ଥିଲି । ମୁଁ ସେହି ପୁରୁଣା ଘର ସହିତ ସବୁ କିଛି ବିକି ଦେଇଛି । ସେଠାରୁ ଯାହା ବାହାରିବ ସେସବୁ ଆପଣଙ୍କର ।'' ଉଭୟେ ଏଭଳି ବାଦବିବାଦ କରି କରି ସେ ସୁବର୍ଣ୍ଣ କଳସୀ ନେଲେନାହିଁ । ବିବାଦ ବଡ଼ ଆକାର ଧାରଣ କରି ମୋ ପାଖକୁ ଆସିଲା । ବାଦୀ ଓ ବିବାଦୀ ଉଭୟେ ମୋ ଆଗରେ ନିଜ ନିଜର ବକ୍ତବ୍ୟକୁ ଯଥାଶକ୍ତି ପ୍ରମାଣିତ କଲେ । ମୁଁ ସମସ୍ତ ଘଟଣା ଶୁଣି କିଂକର୍ତ୍ତବ୍ୟବିମୂଢ଼ ହୋଇଗଲି । କି ସିଦ୍ଧାନ୍ତ କରିବି ଜାଣିପାରିଲି ନାହିଁ । ମୁଁ ଭଗବାନ୍‌ଙ୍କୁ ପଚାରିଲି—''ପ୍ରଭୋ ! ଏହି ବିବାଦରେ କି ସିଦ୍ଧାନ୍ତ ଦେବି ? କିଏ ସେହି ସୁବର୍ଣ୍ଣ ପୂର୍ଣ୍ଣ କଳସୀକୁ ନେବ ?''

ମୋ କଥା ଶୁଣି ଭଗବାନ୍ ଶ୍ରୀକୃଷ୍ଣ କହିଲେ—''ଧର୍ମରାଜ ! ଆପଣ ଏ କଳସୀକୁ କାହାରିକୁ ଦିଅନ୍ତୁନାହିଁ । ନ୍ୟାୟତଃ ଆପଣ ତାକୁ ରଖିବେ । କିଛି କାଳ ପରେ କଳିଯୁଗ ଆସିବ । ସେତେବେଳେ ଯେ ତାକୁ ମାଗିନେବାକୁ ଆସିବ, ତାକୁ ଦେଇଦେବେ ।'' ସେହି ଅନୁସାରେ ସେ ଦୁହିଁଙ୍କୁ ମୁଁ କହିଲି—''ତୁମ୍ଭେମାନେ ଯାଅ ! ଏହା ମୋପାଖରେ ରହିଲା । ତୁମେ ନିଜେ ନିଜେ ବୁଝି ବିଚାରି ପୁଣି ମୋ ପାଖକୁ ଆସିବ । ଯେ ତାକୁ ନିଜର ବୋଲି ମନେ କରିବ, ତାହା ସେ ପାଇବ । ଏହା ଶୁଣି ସେ ଦୁହେଁ ଖୁସିରେ ଫେରିଗଲେ, ଯତେ ଯେପରି ତାଙ୍କ ମୁଣ୍ଡରୁ ଏକ ଗୁରୁଭାର ଉତୁରିଗଲା ।''

ଏବେ ସେ ଦୁହେଁ ଗତକାଲି ମୋ ପାଖକୁ ଆସିଥିଲେ । ସେହି କଳସୀ ଉପରେ ଉଭୟେ ନିଜର ଅଧିକାର ଅଛି ବୋଲି କହିଲେ । ସେଥିପାଇଁ ଉଭୟେ ନିଜ ନିଜର ପକ୍ଷ ସମର୍ଥନ ନିମିତ୍ତ ସାକ୍ଷୀ ମଧ୍ୟ ଆଣିଥିଲେ । ସେଥିରୁ ମୁଁ ଜାଣିଲି ଯେ

Digitized by srujanika@gmail.com

କଳିଯୁଗ ଆସିଗଲା । ମୋର ସେବକମାନେ ସେବା କରିବାରେ ନାନାପ୍ରକାର ଭୁଲ୍ ଭ୍ରାନ୍ତି କରୁଛନ୍ତି । ଦିନେ ପ୍ରଧାନ ବିଚାରପତିଙ୍କୁ ଡକାଇ ପଚାରିଲି ଏବେ କେଉଁ ଧରଣର ଅଭିଯୋଗ ଆସୁଛି ? ତା'ର ଉତ୍ତର ଦେଇ ସେ କହିଲେ— "ପ୍ରଭୋ ! ଏବେ ତ ଅଭିଯୋଗର ସଂଖ୍ୟା ବହୁତ ବଢ଼ିଗଲାଣି ଏବଂ କେତେକ ଲୋକ ମିଛ କହିବାକୁ ଆରମ୍ଭ କଲେଣି । ମିଛ କହିବାକୁ ମୁଁ ଖୁବ୍ ଘୃଣାକରେଁ । ଶ୍ରୀକୃଷ୍ଣଙ୍କ ଅନୁରୋଧରେ ମୁଁ ଥରେ ମାତ୍ର ଅଧା ମିଛ କହିଥିଲି । ତାହାର ଗ୍ଲାନି ମୁଁ ଏ ଯାଏ ଭୁଲିପାରୁନି ।" ମୁଁ ସେହି ବିଚାରପତିଙ୍କୁ ଆଦେଶ ଦେଲି— ବର୍ତ୍ତମାନ ଯେଉଁ ପ୍ରକାର ଅଭିଯୋଗ ଆସୁଛି, ତାହାର ଏକ ତାଲିକା ପ୍ରସ୍ତୁତ କରନ୍ତୁ । ନ୍ୟାୟାଧୀଶ ଉତ୍ତର ଦେଲେ—"ପାପର ଠିକ୍ ଠିକ୍ ତାଲିକା କରିବା କଳିଯୁଗର ଧର୍ମ । ଆପଣ ଏପରି ଆଦେଶ କାହିଁକି ଦେଉଛନ୍ତି ?"

ମୁଁ କହିଲି, ଯାହାହେଉ ପଛକେ ମୁଁ ତାଲିକା ଦେଖିବା ପାଇଁ ଇଚ୍ଛୁକ । ମୋର ଆଦେଶ ଅନୁସାରେ ସେ ତାଲିକା ରଚନା ଆରମ୍ଭକଲେ । ପ୍ରଥମେ ଦୁଇ ଚାରିଜଣ ବିଚାରକ ଥିଲେ । ଏବେ ଶତାଧିକ ନ୍ୟାୟାଧୀଶ ନିଯୁକ୍ତି ପାଇବା ପରେ ମଧ୍ୟ ଅଭିଯୋଗଗୁଡ଼ିକର ବିଚାର ହୋଇପାରୁନି । ଦିନେ ମୁଁ ଅଭିଯୋଗ ତାଲିକା ଦେଖୁଥିଲି । ସେଥିରେ ଏଭଳି ଅଭିଯୋଗର ଉଲ୍ଲେଖଥିଲା ଯେ, ତାହା ମୁଁ ବିଶ୍ୱାସ କରିପାରିଲି ନାହିଁ । ବାଦୀ ପ୍ରତିବାଦୀମାନଙ୍କୁ ଡାକି ମୁଁ ପଚାରିଲି—"କାହିଁକି ତୁମ୍ଭେମାନେ ଏପରି ଖରାପ କାମ ସବୁ କରୁଛ ।" ସେମାନେ ସେପରି କିଛି କରି ନାହାନ୍ତି ବୋଲି କହିବାରୁ ମୁଁ ନ୍ୟାୟାଧିଶଙ୍କୁ ଡକାଇ ପଚାରିଲି—"ଏମାନେ ତ ମନା କରୁଛନ୍ତି, ତୁମେ ସେମାନଙ୍କର ଅପରାଧ ବିଷୟ କିପରି ଲେଖିଲ ?" ବିଚାରକ ଉତ୍ତରଦେଲେ—"ମହାରାଜ ! ମୁଁ ଯାହା କିଛି ଲିପିବଦ୍ଧ କରିଛି, ସେ ସମସ୍ତ ସେଇମାନଙ୍କୁ ପଚାରି କରିଛି । ଏବେ ସେମାନେ ଆପଣଙ୍କ ଆଗରେ ମିଥ୍ୟା କହୁଛନ୍ତି ।" ସେତେବେଳେ ମୁଁ କହିଲି ଠିକ୍ ଅଛି—ଏଣିକି ପ୍ରତ୍ୟେକଙ୍କ ଜମାନବନ୍ଦି ତଳେ ତାଙ୍କ ସ୍ୱାକ୍ଷର ନେବ । ନ୍ୟାୟାଧିଶ ଉତ୍ତର ଦେଲେ "ପ୍ରଭୋ ! ଆପଣ ଏପରି ଆଦେଶ ଦେଲେ ପ୍ରତି କଥାରେ ହସ୍ତାକ୍ଷର ନେବା ଆବଶ୍ୟକ ହେବ ଏବଂ ତଦ୍ଦ୍ୱାରା ଅବିଶ୍ୱାସର ମାତ୍ରା ବେଶ୍ ବଢ଼ିଯିବ । ଏହି ଅବିଶ୍ୱାସ ହିଁ ସବୁ ପ୍ରକାର କଳହର ମୂଳ ।'

ମୁଁ କହିଲି--"ଆମେ କିପରି ଜାଣିବା କିଏ କ'ଣ କହିଲା । ତେଣୁ ତୁମେ ସମସ୍ତଙ୍କର ହସ୍ତାକ୍ଷର ନେବ । ସେହିଦିନଠାରୁ ଅଭିଯୋଗ ସହିତ ହସ୍ତାକ୍ଷର ରଖାଗଲା । ଏହି ଘଟଣାରୁ କଳିଯୁଗ ଆସିଯାଇଛି ବୋଲି ମୋର ମନେ ହେଉଛି । ଅନ୍ୟାନ୍ୟ କର୍ମଚାରୀ ଓ ଅଧିକାରୀ ପ୍ରଥମେ ନିଜନିଜର କର୍ତ୍ତବ୍ୟ ଧର୍ମପୂର୍ବକ ପାଳନ କରୁଥିଲେ । ଏବେ ସେମାନେ ନାନାପ୍ରକାର ଭୁଲ୍‌ଭଟ୍‌କା କରୁଛନ୍ତି । ସେମାନଙ୍କ କାର୍ଯ୍ୟ ନିରୀକ୍ଷଣ ନିମିତ୍ତ କେତେକ ନିରୀକ୍ଷକଙ୍କୁ ମଧ୍ୟ ନିଯୁକ୍ତି ଦେବାକୁ ପଡ଼ିଛି ।"

Digitized by srujanika@gmail.com

ମନ୍ତ୍ରୀ କହିଲେ—"ପ୍ରଭୋ ! ଏ ସମସ୍ତ ଧର୍ମବିରୁଦ୍ଧ କାର୍ଯ୍ୟ । ଅପରେ ବିଶ୍ୱାସ କରି ଯାହାକୁ ଯେଉଁ କାର୍ଯ୍ୟ ଦିଆଯାଇଛି, ତାକୁ ଅନୁମାନତଃ ଅବିଶ୍ୱାସ କରି ତାର କାର୍ଯ୍ୟ ଦେଖିବା ନିମିତ୍ତ ନିରୀକ୍ଷକଙ୍କୁ ନିଯୁକ୍ତ ଦେବାଦ୍ୱାରା ଭୁଲ୍ କରିବା ନିମିତ୍ତ ବାଧ୍ୟ କରାଯାଉଥିବାର ମନେ ହୁଏ । ଏବେ ଲୋକେ ଧର୍ମ ଭୟରେ ଯାହା କରୁଛନ୍ତି, ସେମାନେ ପୁଣି ନିରୀକ୍ଷକର ଭୟରେ କାର୍ଯ୍ୟ କରିବେ । ସେମାନଙ୍କ କାର୍ଯ୍ୟକୁ ନିରୀକ୍ଷକ ଅକାରଣ ସମୀକ୍ଷା କରିବେ । ତେଣୁ ନିରୀକ୍ଷକଙ୍କଠାରୁ ରକ୍ଷାପାଇବା ନିମିତ୍ତ ସେମାନେ ମିଥ୍ୟା କହିବେ । ପାପକୁ ଲୁଚାଇବା ପାଇଁ ନୂଆନୂଆ ପାପକାର୍ଯ୍ୟ କରିବେ ।"

ମନ୍ତ୍ରୀଙ୍କ କଥା ଶୁଣି ମୁଁ କହିଲି—"ଯାହାହେଉ ପଛକେ, ଆଜି ଜଣେ ଭୁଲ୍ କଲା, କାଲି ଆଉ ଜଣେ କରିବ । ତେଣୁ ନିରୀକ୍ଷକ ନିଯୁକ୍ତ ଯୁକ୍ତିଯୁକ୍ତ ।" ମୋର ପରାମର୍ଶ ଅନୁସାରେ ମନ୍ତ୍ରୀ ଦରମା ଦେଇ କେତେଜଣ ନିରୀକ୍ଷକ ରଖିଲେ । କିଛି ଦିନ ପରେ ସେମାନେ ମଧ୍ୟ ପ୍ରମାଦପୂର୍ଣ୍ଣ କାର୍ଯ୍ୟ କଲେ । ତେଣୁ ସେହି ନିରୀକ୍ଷକ-ମାନଙ୍କ କାର୍ଯ୍ୟ ତନଖି କରିବାପାଇଁ ଆହୁରି ନିରୀକ୍ଷକ ନିଯୁକ୍ତ କରିବାକୁ ପଡ଼ିଲା । ଏ ସବୁ ସତ୍ତ୍ୱେ ଲୋକେ ସାଧୁଭାବରେ ଧର୍ମପୂର୍ବକ କାର୍ଯ୍ୟ କରୁନାହାନ୍ତି ।"

ଦିନେ ଦେଖିଲି ଜଣେ ବ୍ରାହ୍ମଣ କ୍ଷୀର ବିକ୍ରୟ କରୁଛି । ତାକୁ ଡକାଇ କହିଲି, "ବ୍ରାହ୍ମଣ ଦେବତା ସହିତ ସମାନ । ତୁମେ ଏଭଳି ପାପକାର୍ଯ୍ୟ କାହିଁକି କରୁଛ ? ବ୍ରାହ୍ମଣ ଘିଅ, କ୍ଷୀର, ଚିନି, ତେଲ ଆଦି ରସ ବିକ୍ରୟ କରିବା ଉଚିତ ନୁହେଁ । ତୁମେ ଏପରି ନୀଚବୃତ୍ତି କିପରି ଅବଲମ୍ବନ କଲ ? ପେଟ ନ ପୂରିବାରୁ ସବୁ କିଛି କରିବାକୁ ପଡ଼ୁଛି ବୋଲି ବ୍ରାହ୍ମଣ ଉତ୍ତର ଦେବାରୁ ମୁଁ ଧନାଧ୍ୟକ୍ଷଙ୍କୁ ଡକାଇ ସେହି ବ୍ୟକ୍ତିକୁ ପର୍ଯ୍ୟାପ୍ତ ଧନ ଦେବାକୁ କହିଲି ଏବଂ କାର୍ଯ୍ୟରୁ ନିବୃତ୍ତ ହେବାକୁ ପରାମର୍ଶ ଦେଲି; କିନ୍ତୁ ଶୁଣୁଛି ଅନ୍ୟ ବର୍ଣ୍ଣରେ ମଧ୍ୟ ବୃତ୍ତିସାଙ୍କର୍ଯ୍ୟ ଘଟି ସାରିଲାଣି । ଲୋକମାନଙ୍କର ପରସ୍ପର ପ୍ରତି ବ୍ୟବହାର ଅତ୍ୟନ୍ତ ଜଟିଳ ଓ କୁଟିଳ ହୋଇଗଲାଣି । ଜଣେ ଅନ୍ୟ ଉପରେ ଅବିଶ୍ୱାସ କରୁଛି । ଦିନେ ଜଣେ କମାର ପାଖକୁ ଯାଇ ଏକ ବିଚିତ୍ର ଯନ୍ତ୍ର ଦେଖିଲି । ମୁଁ ସେ ଯନ୍ତ୍ରଟା କେବେ ଦେଖି ନ ଥିଲି । ମୁଁ ପଚାରିଲି "ଏଇଟା କ'ଣ," ଏହା କେଉଁ କାମରେ ଲାଗେ ।"

କମାର ଉତ୍ତର ଦେଲା—"ପ୍ରଭୋ ! ଦିନେ ମୁଁ ସ୍ନାନ କରିବାକୁ ଯାଇ ସ୍ନାନ ସାରି ଘରକୁ ଆସି ଦେଖିଲି ମୋ ପାତ୍ରଟି ନାହିଁ । ସେଇଟି କିଏ ନେଇଗଲା । ସେଥିପାଇଁ ବହୁଚିନ୍ତା କରି ଏ ଯନ୍ତ୍ରଟି ନିଜ ବୁଦ୍ଧିରେ ତିଆରି କରିଛି । ଏହାର ନାମ ହେଉଛି ତାଲା । କବାଟରେ କୁଣ୍ଡା ଲଗାଇ ସେଥିରେ ଏହାକୁ ଦେଇ ଦେଲେ, ଆଉ କେହି କବାଟ ଖୋଲିପାରିବେ ନାହିଁ । ସେହି ତାଲାର ଖୁବ ମୋ

Digitized by srujanika@gmail.com

ପାଖରେ ରହିବ । ସେଥିରେ ମୁଁ ଖୋଲିବ ଓ ବନ୍ଦ କରିବ ।" ଏହା ଶୁଣି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ମୁଁ କହିଲି—"ଦେଖ, ଘରେ ତାଲା ଲଗାଇବାଦ୍ୱାରା ସମସ୍ତଙ୍କ ପ୍ରତି ଅବିଶ୍ୱାସ କରାଗଲା । ତୁମର ସମ୍ପତ୍ତି ରକ୍ଷା ଭାର ମୁଁ ଗ୍ରହଣ କଲି । ଏହାକୁ ଭାଙ୍ଗି ଫିଙ୍ଗିଦିଅ । ଭବିଷ୍ୟତରେ ଆଉ ଏପରି କରିବନାହିଁ ।" ସେ ତତ୍କ୍ଷଣାତ୍ ମୋ ଆଦେଶ ପାଳନକଲେ ମଧ୍ୟ ତା' ମନରେ ଯେଉଁ ସଂସ୍କାରର ରେଖା ଅଙ୍କିତ ହୋଇସାରିଥିଲା, ତାହା ଦୂର ହେଲିନାହିଁ । ସେ ଆଜି ନ ହେଲେ କାଲି ପୁଣି ସେ ତାଲା ତିଆରି କରିବ ।

ଦିନେ ମୁଁ ଗଙ୍ଗା ନଦୀ କୂଳରୁ ଫେରୁଥିଲି । ଜଣେ କୃଷକ କାନ୍ଧରେ ଲଙ୍ଗଳ ପକେଇ ଘରକୁ ଯାଉଥିବାର ଦେଖିଲି । ମୁଁ ରଥ ଠିଆକରି ତାକୁ ପଚାରିଲି—"ତୁମେ ଏତେ ପରିଶ୍ରମ କାହିଁକି କରୁଛ ? ଲଙ୍ଗଳଟା ଜମିରେ ରଖି ଦେଇ ନ ଆସି କାନ୍ଧରେ ବହି ନେଇଯାଉଛ କାହିଁକି ?" ସେ ହାତଯୋଡ଼ି ଉତ୍ତର ଦେଲା—"ଧର୍ମାବତାର ! ସବୁବେଳେ ଜମିରେ ହିଁ ଲଙ୍ଗଳ ପଡ଼ିରହୁଥିଲା; କିନ୍ତୁ ଦିନେ ମୋ ଲଙ୍ଗଳଟି କିଏ ନେଇଗଲା । ମୁଁ ଗରିବ ଲୋକ । ତେଣୁ କଷ୍ଟ ହେଉ ପଛକେ ପ୍ରତିଦିନ ଏହାକୁ ଘରକୁ ନେଇଯାଉଛି । ପୁଣି ସକାଳେ ଉଠାଇ ଚାଷଜମିକୁ ନେଇଯାଉଛି ।"

ଏହା ଶୁଣି ମନରେ ବଡ଼ ଦୁଃଖ ହେଲା । ମୋ ରାଜ୍ୟରେ ଥିବା କୃଷକ ମଧ୍ୟ ଅବିଶ୍ୱାସ ଓ ଚୋରର ଭୟରେ ଭୀତତ୍ରସ୍ତ । ମୁଁ ଆଦେଶ ଦେଲି, ଲଙ୍ଗଳର ରକ୍ଷା ଦାୟିତ୍ୱ ରାଜ୍ୟ ଉପରେ ନିର୍ଭର । ତୁମ୍ଭେମାନେ ଏହି ଭାବରେ ଲଙ୍ଗଳକୁ ବହି ବହି ନବା ଆଣିବା ଆଉ କରିବନାହିଁ । ସେହିଠାରୁ ମୁଁ ଗ୍ରାମ ପଞ୍ଚାୟତ-ମାନଙ୍କୁ ଆଦେଶ ଦେଲି, ଯେ ଲଙ୍ଗଳ ଚୋରି କରିବ, ତାକୁ ପ୍ରାଣଦଣ୍ଡ ଦିଆଯିବ । ଅଉ ଦିନେ ଦେଖିଲି ଜଣେ ସାମନ୍ତରାଜା ଏକ ଲୌହ ଯନ୍ତ୍ରରେ ବସି ଆକାଶରେ ଉଡୁଛି । ତାକୁ ପଚାରି ଜାଣିଲି ଯେ, ଜନୈକ ଶିଳ୍ପୀ ତାହା ନିର୍ମାଣ କରିଛନ୍ତି । ଦେବତାଙ୍କ ବିମାନ ଭଳି ଏହା ସ୍ୱେଚ୍ଛାରେ ଯାତାୟାତ କରେନାହିଁ । ମୁଁ ଭାବିଲି ଯେ କେହି ଏହା ଉପରେ ଚଢ଼ି ପାପର ପ୍ରଚାର କରିବେ । ମୋ କଥା ଶୁଣି ସେ ଭୟଭୀତ ହୋଇ କହିଲେ—"ଧର୍ମାବତାର ! ଏହାଦ୍ୱାରା ଧର୍ମର ପ୍ରଚାର ମଧ୍ୟ କରାଯାଇ ପାରିବ ।"

ମୁଁ କହିଲି—"ଧାର୍ମିକ ଲୋକେ ନିଜ ତେଜୋବଳରେ ଯେଉଁ ସାମର୍ଥ୍ୟ ଅର୍ଜନ କରିଥାନ୍ତି, ତଦ୍ଦ୍ୱାରା ତାଙ୍କର ଭାବନା ଯେ କୌଣସି ସ୍ଥାନକୁ ପଠାଇ ଦେଇ ପାରନ୍ତି; କିନ୍ତୁ ଏ ପ୍ରକାର ଯନ୍ତ୍ରକୁ ଅଳ୍ପଶକ୍ତିସମ୍ପନ୍ନ, ଅସମର୍ଥ, ପାପପରାୟଣ, ଦୈବସମ୍ପତ୍ତି ରହିତ, ପ୍ରତ୍ୟେକ କାର୍ଯ୍ୟକୁ ଶୀଘ୍ର ସମ୍ପାଦନ କରିବାକୁ ଇଚ୍ଛୁକ ଲୋକେ ହିଁ ନିର୍ମାଣ କରନ୍ତି । ସମସ୍ତେ ଚାହାନ୍ତି ପ୍ରତ୍ୟେକ କାର୍ଯ୍ୟ ଖୁବ୍ ଶୀଘ୍ର

Digitized by srujanika@gmail.com

ସମାହିତ ହେଉ । ଏହି କଥା କହୁଥିବାବେଳେ ଭଗବାନ୍ ବ୍ୟାସଦେବ ଆସି ଉପସ୍ଥିତ ହେଲେ । ମୁଁ ଯଥୋଚିତ ସମ୍ମାନ ଜଣାଇ ତାଙ୍କୁ ଏ ସମସ୍ତ କଥା ପଚାରିଲି – "ପ୍ରଭୋ ! ଏହି ସାମନ୍ତ ରାଜା ନିଜ ଦେଶର ଶିଳ୍ପୀଙ୍କ ସହାୟତାରେ ଏ କଳଯନ୍ତ୍ରଟି ନିର୍ମାଣ କରାଇଛନ୍ତି । ଏହାଦ୍ୱାରା କଳିଯୁଗର ଭାବନା ଖୁବ୍ ଶୀଘ୍ର ପରାଭୂତ ହୋଇଯିବ । ଆପଣ ଆଦେଶ ଦିଅନ୍ତୁ, ତାଙ୍କୁ କି ପ୍ରକାର ଦଣ୍ଡରେ ଦଣ୍ଡିତ କରାଯିବ ?"

ଭଗବାନ୍ ବ୍ୟାସ ହସି ହସି କହିଲେ— ରାଜନ୍ ! "ତାଙ୍କୁ କୌଣସି ଦଣ୍ଡ ଦିଅନ୍ତୁନାହିଁ । ମୁଁ ତାଙ୍କୁ ବୁଝାଇ ଦେଉଛି । ଆପଣ ସେହି ଯନ୍ତ୍ରଟି ନଷ୍ଟ କରିଦିଅନ୍ତୁ । ତାହା ହିଁ ଯଥେଷ୍ଟ ଦଣ୍ଡର କାର୍ଯ୍ୟ କରିବ ।" ଏହାପରେ ବ୍ୟାସଦେବ ସେହି ରାଜାଙ୍କୁ କହିଥିଲେ—"ଦେଖ ଭାଇ, ଧର୍ମରାଜଙ୍କ ଶାସନକାଳରେ ଏଭଳି କରିବା ଉଚିତ ନୁହେଁ । ଆଜିଠାରୁ ଦୁଇ ଅଢ଼େଇ ହଜାର ବର୍ଷ ପରେ ନାସ୍ତିକ ବୌଦ୍ଧମାନେ ଯେତେବେଳେ ଭାରତ ଶାସନ କରିବେ, ସେତେବେଳେ ଏହି ଯନ୍ତ୍ର ନିର୍ମିତ ହେବ ଏବଂ ପାରଦ ସାହାଯ୍ୟରେ ଏହା ଚାଳିତ ହେବ । ପାଞ୍ଚ ହଜାର ବର୍ଷପରେ ଏହି ଯନ୍ତ୍ର ଘରେ ଘରେ ବ୍ୟବହୃତ ହେବ । ସେତେବେଳେ କଳା, ଗୋରା ଦସ୍ୟୁମାନେ ଭାରତ ଶାସନ କରିବେ । ସେତେବେଳେ ଏହାଦ୍ୱାରା ଅସତ୍ୟ, ଅଧର୍ମ ଓ କଳହର ପ୍ରଚାର ହେବ । ଏବେ ସେ ସମୟ ଆସିନାହିଁ । ଏହା କହି ବ୍ୟାସଦେବ ନିଜ ଆଖି ଆଗରେ ସେହି ଯନ୍ତ୍ରଟିକୁ ନଷ୍ଟ କରିଦେଇଥିଲେ ।"

ଏହାପରେ ମହର୍ଷି ବ୍ୟାସ ମୋତେ କହିଲେ—"ରାଜନ୍ ! ଏବେ ତୁମେ କ'ଣ ସବୁ ଦେଖୁଛ ? ଆଜିଠାରୁ ପାଞ୍ଚହଜାର ବର୍ଷ ପରେ ଲୋକମାନଙ୍କର ବର୍ଣ୍ଣାଶ୍ରମ ଧର୍ମରେ ଆଉ ଆସ୍ଥା ରହିବନାହିଁ । ଶିକ୍ଷାକ୍ଷେତ୍ରରେ ଗୁରୁଶିଷ୍ୟ ପରମ୍ପରା ନଷ୍ଟ ହୋଇଯିବ । ଶୂଦ୍ର ଓ ଅନ୍ତ୍ୟଜ ଶ୍ରେଣୀର ଲୋକେ ଉଚ୍ଚବର୍ଣ୍ଣର କାର୍ଯ୍ୟ କରିବେ । ଉଚ୍ଚବର୍ଣ୍ଣର ଲୋକେ ଅନ୍ତ୍ୟଜମାନଙ୍କ ସହିତ ସହଭୋଜନ ଓ ବିବାହକୁ ନିଜର ଗୌରବ ବୋଲି ମନେ କରିବେ । ସଦାଚାର ଓ ସଂସ୍କୃତିର ପ୍ରଭାବ ହ୍ରାସ ପାଇବ । ସନ୍ଧ୍ୟାବନ୍ଦନା, ଦେବ, ଋଷି, ପିତୃଶ୍ରାଦ୍ଧ, ତର୍ପଣ, ପୂଜା, ପାଠକୁ ସମସ୍ତେ ଉପହାସ କରିବେ । ସ୍ୱେଚ୍ଛାଚାର ଶ୍ରେଷ୍ଠଧର୍ମ ରୂପେ ଗୃହୀତ ହେବ । ସମସ୍ତେ ସମସ୍ତ ପ୍ରକାର ବୃତ୍ତିଦ୍ୱାରା ଅର୍ଥ ଉପାର୍ଜନରେ ବ୍ୟାପୃତ ରହିବେ । ଦସ୍ୟୁଧର୍ମୀ ଓ ବିଧର୍ମୀ ରାଜା ହେବେ । ରାଜାମାନେ ବେପାର କରିବେ ଓ ସ୍ତ୍ରୀ ଲୋକେ ଲଜ୍ଜାହୀନା ହୋଇଯିବେ । କୁଳୀନ ସ୍ତ୍ରୀଲୋକେ ଅର୍ଦ୍ଧନଗ୍ନ ଅବସ୍ଥାରେ ପୁରୁଷମାନଙ୍କ ସହିତ ରାସ୍ତାଘାଟ ଓ ଉଦ୍ୟାନରେ ବୁଲିବେ । କେହି ଆଉ କନ୍ୟା ଭାବରେ ରହିବେ ନାହିଁ । ଅବିବାହିତା, ବିବାହିତା, ବିଧବା ସମସ୍ତେ ଏକପ୍ରକାର ଦେଖାଯିବେ । କେହି ସୌଭାଗ୍ୟର ସଙ୍କେତ ଧାରଣ କରିବେ ନାହିଁ । କାନ୍ତି ଶ୍ରୀହୀନ ଓ ନସ୍ଥ

Digitized by srujanika@gmail.com

ଆଭୂଷଣ ରହିତ ହାତ ପାଦରେ ବିଧବାଙ୍କ ଭଳି ସ୍ତ୍ରୀଲୋକମାନେ ଘୂରିଆଡ଼େ ବୁଲିବେ । ପ୍ରତିଘରେ ଭ୍ରୂଣହତ୍ୟା ହେବ । କୁମାରୀ ଓ ବିଧବାଙ୍କଦ୍ୱାରା ଜନ୍ମିତ ଜାରଜ ସନ୍ତାନଙ୍କ ସଂଖ୍ୟା ବଢ଼ିଯିବ ଏବଂ ସେହିମାନେ ନାନାପ୍ରକାର ପାପାଚରଣରେ ପ୍ରବୃତ୍ତ ହେବେ । କୁଳୀନା ନାରୀ ଓ ବେଶ୍ୟା ମଧ୍ୟରେ ବେଶ, ଭୂଷା, ଆଚରଣ, ବ୍ୟବହାର ଦୃଷ୍ଟିରୁ କୌଣସି ଭେଦ ରହିବନାହିଁ । ଦାମ୍ପତ୍ୟ ଜୀବନ ନଷ୍ଟ ଭ୍ରଷ୍ଟ ହୋଇଯିବ । ସ୍ତ୍ରୀମାନେ ପୁରୁଷମାନଙ୍କଠାରୁ ପୃଥକ୍ ରହି ସଂଘର୍ଷର ସୂତ୍ରପାତ କରିବେ । ପାପାଚରଣ ପ୍ରବୃତ୍ତି ଏତେ ବଢ଼ିଯିବ ଯେ, ବହୁ ସ୍ତ୍ରୀଲୋକ ସ୍ୱେଚ୍ଛାଚରଣ ନିମିତ୍ତ ଓ ପ୍ରସବବେଦନାରୁ ରକ୍ଷା ପାଇବା ନିମିତ୍ତ ଶଲ୍ୟଚିକିତ୍ସାଦ୍ୱାରା ଗର୍ଭାଶୟକୁ ନଷ୍ଟ କରିଦେବେ ।"

ବ୍ୟାସଦେବଙ୍କଠାରୁ ଏ ପ୍ରକାର ବର୍ଣ୍ଣନା ଶୁଣି ମୁଁ କାନକୁ ହାତରେ ବନ୍ଦ କରି କହିଲି—"ପ୍ରଭୋ ! ଏହି ସ୍ତ୍ରୀଲୋକମାନେ ମଣିଷଭାବେ ରହିବେ ନା ରାକ୍ଷସୀ ପାଲଟିଯିବେ ?" ଏହାର ଉତ୍ତରରେ ସେ କହିଲେ, ବାହାରକୁ ସେମାନେ ମାନବୀ ବୋଲି ଜଣାପଡ଼ିଲେ ମଧ୍ୟ ବାସ୍ତବତଃ ରାକ୍ଷସୀ ଭାବେ କାର୍ଯ୍ୟ କରିବେ ।" ମୁଁ ବ୍ୟାକୁଳଭାବେ ବ୍ୟାସଦେବଙ୍କ ପାଦଦୁଇଟି ଧରି କହିଲି—"ପ୍ରଭୋ ! ମୋତେ ସେହି ସମସ୍ତ ଦେଖିବାକୁ ନ ପଡ଼ୁ । ଏପ୍ରକାର ପାପକାର୍ଯ୍ୟ ମୋ ଆଗରେ ନ ଘଟୁ । ଆପଣ ମୋତେ ଗୋଟିଏ ବର ଦିଅନ୍ତୁ, ଯେଉଁ ବର ପାଇ ମୁଁ ପ୍ରଭୁ ଶ୍ରୀକୃଷ୍ଣଙ୍କୁ ମଧ୍ୟ ପ୍ରାର୍ଥନା କରିଛି । ଆଗାମୀ ପାଞ୍ଚହଜାର ବର୍ଷ ପର୍ଯ୍ୟନ୍ତ ପୃଥିବୀରେ କଳିଯୁଗର ପ୍ରଭାବ ପ୍ରସାରିତ ନ ହେଉ ।" ବ୍ୟାସଦେବ ହସି ହସି କହିଲେ—"ଧର୍ମରାଜ ! ତୁମକୁ ଏ ପାପପୂର୍ଣ୍ଣ କାର୍ଯ୍ୟ ଦେଖିବାକୁ ପଡ଼ିବନାହିଁ । ମୋ ଆଶୀର୍ବାଦରୁ ପାଞ୍ଚହଜାର ବର୍ଷପରେ ହିଁ କଳିଯୁଗର ପ୍ରଭାବ ସ୍ୱତଃ ବିସ୍ତାର ଲାଭକରିବ ।" ଏହା କହି ସେ ଚାଲିଗଲେ ।

କାଲି ମୁଁ ଏକ ଆଶ୍ଚର୍ଯ୍ୟ ଘଟଣା ଦେଖିଲି । ଜଣେ କୁଳୀନ ଘରର ସ୍ତ୍ରୀ ଅର୍ଦ୍ଧନଗ୍ନ ଅବସ୍ଥାରେ ନିର୍ଲଜଭାବେ ହସି ହସି ରାସ୍ତାରେ ଯାଉଥିଲା । ମୋତେ ଦେଖି ମଧ୍ୟ ସେ ଲଜ୍ଜିତା ହେଲାନାହିଁ । ରାଜଭବନକୁ ଫେରିଆସି ଦେଖିଲି, ଜଣେ ସ୍ତ୍ରୀଲୋକ ସୁନ୍ଦର ବସ୍ତ୍ରଭୂଷଣ ପିନ୍ଧି, ସୁଗନ୍ଧ ଦ୍ରବ୍ୟ ବୋଳିହୋଇ ଠିଆହୋଇଛି । ମୋତେ ଦେଖି ଲଜ୍ଜିତା ହୋଇ ସେଠାରୁ ଚାଲିଗଲା । ମୁଁ ବୁଢ଼ୀ ଦାସୀକୁ ପଚାରି ବୁଝିଲି, ସେ ଦୁର୍ଯ୍ୟୋଧନର କନିଷ୍ଠ ଭାଇର ସ୍ତ୍ରୀ । ଏହା ଶୁଣି ମୋ ମୁଣ୍ଡରେ ବଜ୍ର ପଡ଼ିଲା ଭଳି ଅନୁଭବ କଲି । ମୁଁ ଜାଣିଗଲି ଯେ, କଳିଯୁଗ ମୋ ରାଜ୍ୟରେ ନୁହେଁ ମୋ ଘରେ ମଧ୍ୟ ପ୍ରବେଶ କରି ସାରିଛି । ତେଣୁ ଏବେ ଆଉ ଏ ସଂସାରରେ ଅଧିକକାଳ ରହିବା ଉଚିତ ନୁହେଁ । ଖୁବ୍ ନିକଟ ଭବିଷ୍ୟତରେ ଆମ ଉପରେ ବଡ଼ ବିପଦ ଆସୁଛି । ଆଜିକାଲି ମୁଁ ନାନାପ୍ରକାର ଅଶୁଭ ଦର୍ଶନ କରୁଛି । ସେ

Digitized by srujanika@gmail.com

ସମସ୍ତ ଉତ୍ତମମାନଙ୍କୁ ନଷ୍ଟ କରିବ । ଆଉ ଏକ ଘଟଣା ମନେ ପଡ଼ୁଛି, ସେଥିରୁ ମୁଁ ଭାବୁଛି ଭଗବାନ୍ ଏ ଧରାଧାମରୁ ତ୍ୟାଗ କରି ଚାଲିଗଲେଣି ବା ଯାଉଛନ୍ତି । ସେହି କାରଣରୁ ଚାରିଆଡ଼େ କଳିର ପ୍ରଭାବ ବ୍ୟାପିବାରେ ଲାଗିଛି ।

ମହର୍ଷି ସୂତ କହୁଛନ୍ତି—"ହେ ମୁନିଗଣ ! ଅର୍ଜୁନ ଫେରିବାରେ ବହୁ ବିଳମ୍ବ କରିବାରୁ ଧର୍ମରାଜ ନିଜ ଭାଇ ଭୀମ ଓ ଅନ୍ୟମାନଙ୍କୁ କହିଲେ—ଅର୍ଜୁନ ନ ଆସିବାର କାରଣ ମୁଁ ଜାଣିପାରୁନାହିଁ । ଏଣେ ଦେଖୁଛି କଳିକାଳର ପ୍ରଭାବ ବଢ଼ିଚାଲିଛି । ଏବେ ଆମ୍ଭେମାନେ ଏଠାରେ ଆଉ ରହିବା ଉଚିତ ନୁହେଁ । ବର୍ତ୍ତମାନ କଳିଯୁଗର ଶାସନ ସଂମସ୍ତ । ତାହାର ପ୍ରତ୍ୟକ୍ଷ ପଦକ୍ଷେପ ଦେଖାଗଲାଣି । କଳିଯୁଗ ନିଜେ ଦିନେ ଆସି ମୋତେ କହିଥିଲେ ଯେ, ସମୟ ହୋଇଗଲା, ଆପଣ ରାଜସିଂହାସନ ଯଥାଶୀଘ୍ର ତ୍ୟାଗ କରିବା ବିଧେୟ । ଉପସ୍ଥିତ ଭାଇ ଓ ଅନ୍ୟ ସଜ୍ଜନ କଳିଯୁଗର ସାକ୍ଷାତ୍କାର ପ୍ରସଙ୍ଗ ଜାଣିବାକୁ ଚାହିଁବାରୁ ଧର୍ମରାଜ କହିଲେ—"ଦିନେ, ମୋର ଏଇ ଭାଇ ଭୀମ, ଅର୍ଜୁନ, ନକୁଳ ଓ ସହଦେବ ସହିତ ସଭାଗୃହରେ ପ୍ରବେଶ କରିବାବେଳେ ଦ୍ୱାରଦେଶରେ ଜଣେ ଲୋକକୁ ଦେଖିଲି । ତା'ପାଖରେ ଏକ ସୁନ୍ଦର, ସୁଲକ୍ଷଣଯୁକ୍ତ ଦ୍ରୁତଗାମୀ ଘୋଡ଼ା ଥିଲା । ସେହି ଘୋଡ଼ାକୁ ଦେଖି ମୋର ଭାଇମାନେ ମୁଗ୍ଧ ହୋଇଗଲେ । ସେମାନେ ତାକୁ ପଚାରିଲେ, କ'ଣ ଭାଇ, ଘୋଡ଼ାଟିକୁ ବିକିବ କି ?" ସେ ଉତ୍ତର ଦେଲା— "ମହାରାଜ ! ଏହାକୁ ମୁଁ ବିକିବା ପାଇଁ ଆଣିଛି । ଆପଣମାନଙ୍କର ଧନର ଅଭାବ ନାହିଁ । ମୋର ମଧ୍ୟ ଧନାଭିଳାଷ ନାହିଁ । ମୁଁ ଚାରୋଟି ପ୍ରଶ୍ନ ପଚାରିବି । ଆପଣ-ମାନେ ଉତ୍ତର ଦେଇ ପାରିଲେ ଘୋଡ଼ାଟି ଆପଣଙ୍କର ହେବ । ମୁଁ ଏଠାରେ ଗାର ଟାଣି ଦେଉଛି । ଆପଣ ରାଜଜଣ ମୋ ପ୍ରଶ୍ନର ଉତ୍ତର ନ ଦେବାଯାଏ ସେ ଗାର ଡେଇଁ ଯାଇପାରିବେ ନାହିଁ ।" ଭାଇମାନଙ୍କର ସ୍ୱୀକୃତି ପାଇ ଅଶ୍ୱବିକ୍ରେତା ଆନନ୍ଦ ମନରେ କହିଲା—"ଦେଖନ୍ତୁ, ଏ ଘୋଡ଼ାଟିକୁ ବାଟରେ ଆସୁଥିବାବେଳେ ଏକ ଭୟଙ୍କର କୂପ ଦେଖିଲି । ସେହି କୂପ ମୁହଁରେ ଦଉଡ଼ିରେ ପଇସାଟିଏ ଝୁଲୁ ଯାଇଥିଲା । ସେହି ପଇସାରେ ଲକ୍ଷେ ମହଣ ଲୁହା ଅଟକି ରହିଥିଲା; ତଥାପି ପଇସାଟି କୂଅରେ ଗଳି ନ ପଡ଼ି ସେମିତି ଝୁଲି ରହିବାର କାରଣ କ'ଣ ?" ଏ ପ୍ରଶ୍ନ ଶୁଣି ମୋର ଚାରିଭାଇ ପରସ୍ପରର ମୁହଁକୁ ଚାହିଁଲେ । ଯେତେବେଳେ କେହି କିଛି ଉତ୍ତର ଦେଇପାରିଲେ ନାହିଁ ସେତେବେଳେ ସେ ବିନମ୍ରଭାବେ କହିଲା— "ଆପଣମାନଙ୍କ ମଧ୍ୟରେ ଯେ ବଡ଼ ସେ ଆସି ଏହି ଧର୍ମଗାର ଭିତରେ ଠିଆ ହୁଅନ୍ତୁ ।" ଏହା ଶୁଣି ଭୀମ ସେହି ଧର୍ମରେଖା ଭିତରେ ଯାଇ ଠିଆହେଲେ ।

ଏହାପରେ ସେ ଦ୍ୱିତୀୟ ପ୍ରଶ୍ନ ପଚାରିଲା—"ଦିନେ ଆସୁଥିବାବେଳେ ବାଟରେ ପାଞ୍ଚଟି କୂଅ ଦେଖିଲି । ମଝିରେ ଗୋଟିଏ ଓ ତା'ର ଚାରିପାଖରେ

Digitized by srujanika@gmail.com

ସ୍ତ୍ରେଟି କୂଅ ଥିଲା । ସବୁ କୂଅରୁ ପାଣି ଉଚ୍ଛୁଳି ପଡ଼ୁଥିଲା । ଯେତେବେଳେ ପାଖ କୂଅର ପାଣି କମିଯାଉଥିଲା ସେତେବେଳେ ମଝି କୂଅରୁ ପାଣି ଉଚ୍ଛୁଳି ଯାଇ ଅନ୍ୟ କୂଅଗୁଡ଼ିକୁ ପାଣିରେ ପୂର୍ଣ୍ଣକରି ଦେଉଥିଲା; କିନ୍ତୁ ମଝି କୂଅଟି ଖାଲି ହୋଇ ଯାଉଥିବାବେଳେ ଚାରିକୂଅରୁ ପାଣି ଉଚ୍ଛୁଳି ଆସି ମଧ୍ୟ ତାକୁ ପୂର୍ଣ୍ଣ କରିପାରୁ ନ ଥିଲା । ଏହାର କାରଣ କ'ଣ ? କେହି ଏହାର ଉତ୍ତର ଦେଇ ନ ପାରିବାରୁ ଅର୍ଜୁନ ଆସି ଧର୍ମରେଖା ମଧ୍ୟରେ ଠିଆହେଲା ।

ତା'ପରେ ସେ ତୃତୀୟ ପ୍ରଶ୍ନ ପଚାରିବାକୁ ଯାଇ କହିଲା—ବନେ ବାଟରେ ଦେଖିଲି ଗାଈଟିଏ ଛୁଆ ଜନ୍ମ କରିଛି; କିନ୍ତୁ ବାଛୁରୀଟି ଗାଈର ଦୁଧ ନ ପିଇ ଗାଈ ହିଁ ବାଛୁରୀର ଦୁଧ ପିଉଥିଲା । ଏହାର କାରଣ କ'ଣ ?" ନକୁଳ ଓ ସହଦେବ ଏ ପ୍ରକାର ଅଦ୍‌ଭୁତ ପ୍ରଶ୍ନରେ ପରସ୍ପରକୁ ଚାହିଁରହିଲେ । ଶେଷରେ ଉତ୍ତର ଦେଇ ନ ପାରି ନକୁଳ ମଧ୍ୟ ସେହି ଧର୍ମ ରେଖା ଭିତରେ ଯାଇ ଠିଆହେଲା ।

ଚତୁର୍ଥ ପ୍ରଶ୍ନ ପଚାରିବାକୁ ଯାଇ ଘୋଡ଼ାବିକିବାବାଲା ପଚାରିଲା—"ବନେ ବାଟରେ ଆସୁ ଆସୁ ଆଗରେ ଏକ ପଶୁକୁ ଦେଖିଲି । ସେ ମୁହଁବାଟେ ବର ବର ଶବ୍ଦ କରି ମଳଦ୍ୱାର ବାଟେ ଘାସ ଖାଉଥିଲା । ଏହା କ'ଣ ?" ସହଦେବ ମଧ୍ୟ ଏ ପ୍ରଶ୍ନର କିଛି ଉତ୍ତର ଦେଇ ନ ପାରି ଧର୍ମ ପରିଧି ମଧ୍ୟରେ ଯାଇ ଠିଆ ହେଲା ।

ବହୁ ସମୟ ପର୍ଯ୍ୟନ୍ତ ଠିଆ ହୋଇ ମୁଁ ସମସ୍ତ ଲକ୍ଷ୍ୟ କରୁଥିଲି । ମୁଁ ଯାଇ କହିଲି—"କ'ଣ ଭାଇ, ଘୋଡ଼ାଟି ବିକିବ କାହିଁକି ? ସେ କହିଲା—ଅନ୍ନଦାତା ! ମୁଁ ତ ଘୋଡ଼ାଟି ବିକିବା ନିମିତ୍ତ ଆଣିଛି । ଆପଣଙ୍କର ଧନର ଅଭାବ ନାହିଁ । ସେ କଥା ମୁଁ ଏହି କୁମାରମାନଙ୍କୁ କହିଛି; କିନ୍ତୁ ମୋର ଧନର ଆବଶ୍ୟକତା ନାହିଁ । ମୋ ପ୍ରଶ୍ନ ଚାରୋଟିର ଉତ୍ତର ପାଇଲେ ଘୋଡ଼ାଟିକୁ ଅଶ୍ୱଶାଳାରେ ବାନ୍ଧିଦେଇ ଆସିବି । ମୁଁ ତାର ପ୍ରଥମ ପ୍ରଶ୍ନ ଶୁଣି କହିଲି— ତୁ ବଡ଼ ଧୂର୍ତ୍ତ । ଆମ ରାଜ୍ୟରେ ତୁ କଳିଯୁଗର କଥା କହୁଛୁ ? ଏସବୁ କଳିଯୁଗରେ ହିଁ ସମ୍ଭବ ହେବ । କଳିଯୁଗରେ ଧର୍ମକାର୍ଯ୍ୟ କେହି କରିବେ ନାହିଁ । ଯେ ଦୟାପରବଶ ହୋଇ ମୁଠାଏ ଅନ୍ନ ଦାନ କରିବ, ସେ ପଇସାକର ଦାନରେ ଲକ୍ଷେ ମହଣ ଲୁହା ରୂପକ ଅଧର୍ମକୁ ଝୁଲାଇ ରଖିବ । ଯେ ଦୟା ଦାନକୁ ପୁରା ତ୍ୟାଗ କରିଦେବ, ସେ ସେହି ଲୁହା ସହିତ ସଂସାର ରୂପକ ମୋହ କୂପରେ ଗଳି ପଡ଼ିବ ।"

ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେଇ କହିଲି—"ତୁ ବଡ଼ ଧୂର୍ତ୍ତ ଓ ଅଧର୍ମ ବନ୍ଧୁ । ପୁଣି ସେହି କଳିଯୁଗର କଥା ମୁହଁରେ ଆଣୁଛୁ ? ଏ ସବୁ ଘଟଣା କଳିଯୁଗରେ ଘଟିବ । ପିତା ନିଜର ଚାରି ପୁଅଙ୍କୁ ପାଳନ ପୋଷଣ କରିବେ, ତାଙ୍କୁ ପେଟପୁରା ଖାଇବାକୁ ପିଇବାକୁ ଦେବେ, ଯୋଗ୍ୟ କରାଇବେ; କିନ୍ତୁ କଳିଯୁଗର ପୁଅ ବୃଦ୍ଧାବସ୍ଥାରେ ବାପାଙ୍କୁ ପଚାରିବେ ନାହିଁ । ସମସ୍ତେ ମିଳିମିଶି ମଧ୍ୟ ମା'ବାପାଙ୍କୁ

Digitized by srujanika@gmail.com

ପେଟପୂର୍ତ୍ତି ଖାଇବାକୁ ଦେବେନାହିଁ । ସେମାନେ ଶେଷରେ ଅନାଥାଶ୍ରମର ଆଶ୍ରୟ ନେବେ ବା ମୃତ୍ୟୁବରଣ କରିବେ ।” ତା’ର ତୃତୀୟ ପ୍ରଶ୍ନ ଶୁଣି ଉତ୍ତର ଦେଲି— ଏ ଘଟଣା କଳିଯୁଗରେ ଘଟିବ । ଝିଅ ଜନ୍ମ ହେବା ମାତ୍ରେ, ତାହାର ସାହାଯ୍ୟରେ ପିତା ଋଣ କରି ଚାଲିବେ । ଋଣ ଭାରରେ ବୃଦ୍ଧ ଝିଅ ବଡ଼ହେବା ମାତ୍ରେ ତାକୁ ବିକ୍ରୟ କରିବାବାଲା ନୀଚ, ଅଧମ, ପାପୀ, ରାକ୍ଷସ ପିତା କଳିଯୁଗରେ ହିଁ ଜନ୍ମ ହେବେ । ସେହି ବିକ୍ରୀତ କନ୍ୟାର ଯେଉଁ ପୁତ୍ର ଜନ୍ମ ହେବ, ସେ ନିଜ ପିତାଙ୍କ ପିଣ୍ଡଦାନରେ ଅଧିକାରୀ ହୋଇପାରିବ ନାହିଁ । କନ୍ୟା- ବିକ୍ରୟୀ, କନ୍ୟାର ଅର୍ଥୋପଜୀବୀ ସବୁଠାରୁ ବଡ଼ ପାପୀ । ସେଭଳି ପାପୀର ମୁଖ ଦେଖିବା ମଧ୍ୟ ମହାପାପ । କଳିଯୁଗରେ ଏଭଳି ଅନେକ ପାପୀ ଜନ୍ମ ଗ୍ରହଣ କରିବେ ।”

ଚତୁର୍ଥ ପ୍ରଶ୍ନର ଉତ୍ତର ଦେଇ କହିଲି—“ମୁଁ ବର୍ତ୍ତମାନ ନିଶ୍ଚିତଭାବେ କହିପାରେଁ, ତୁ କପଟବେଶଧାରୀ ସାକ୍ଷାତ୍ କଳିଯୁଗ । ଏ ପ୍ରକାର ଜୀବ ରୂପେ କବିମାନେ କଳିଯୁଗରେ ଜନ୍ମ ହେବେ । ସେମାନେ ବେଦଶାସ୍ତ୍ର, ଇତିହାସ, ପୁରାଣର ଆଶ୍ରୟ ତ୍ୟାଗକରି ମନ ଇଚ୍ଛା ରଚନାରେ ପ୍ରବୃତ୍ତ ହେବେ । ସେହି ରଚନାଦ୍ୱାରା ଅର୍ଥର ଅନର୍ଥ ସୃଷ୍ଟି କରିବେ । ଅନୁକୂଳ ମାର୍ଗ ଛାଡ଼ି ପ୍ରତିକୂଳ ମାର୍ଗରେ ଅଗ୍ରସର ହେବେ । ମୁଖରେ ନ ଖାଇ ଅପାନମାର୍ଗରେ ଖାଇବେ । ବର୍ତ୍ତମାନ ମୁଁ ତୁମର ଚାରୋଟି ପ୍ରଶ୍ନର ଉତ୍ତର ଦେଲି । ଏବେ ତୁମେ ନିଜର ପରିଚୟ ଦିଅ । ତୁମେ କିଏ ?”

ଏହା ଶୁଣି ସେ ପୁରୁଷଟି କହିଲା—“ପ୍ରଭୋ ! ମୁଁ ନିଜେ କଳିଯୁଗ । ଏବେ ମୋ ରାଜତ୍ୱର ସମୟ ଆସିଛି; କିନ୍ତୁ ଆପଣ ହେଉଛନ୍ତି ସାକ୍ଷାତ୍ ଧର୍ମ, ଆପଣ ଯେ ପର୍ଯ୍ୟନ୍ତ ଏହି ପୃଥିବୀରେ ଅଛନ୍ତି, ସେ ପର୍ଯ୍ୟନ୍ତ ମୁଁ ମୋର ଅଧିକାର ବିସ୍ତାର କରିପାରିବି ନାହିଁ । ଆପଣ ଧର୍ମାତ୍ମା, କାହାରିକୁ କଷ୍ଟ ଦେବାକୁ ଚାହାନ୍ତି ନାହିଁ; କିନ୍ତୁ ଏବେ ରାଜସିଂହାସନ ମୋତେ ମିଳିବା ଉଚିତ । ମୋର ସାମ୍ରାଜ୍ୟ ଏବେ ବିସ୍ତାରଲାଭ କରିବା ବାଞ୍ଛନୀୟ ।”

ହସି ହସି ମୁଁ କହିଲି—“ଆରେ ଧୂର୍ତ୍ତ ! ମୁଁ ପ୍ରଥମରୁ ଏହା ଜାଣିଥିଲି । ତୁ ଅଧର୍ମର ମିତ୍ର । ମୁଁ ଜାଣେ, ଏବେ ତୋର ସାମ୍ରାଜ୍ୟର ସମୟ ଆସିଛି; କିନ୍ତୁ ଯେ ପର୍ଯ୍ୟନ୍ତ ଆନନ୍ଦକନ୍ଦ ଦେବକୀନନ୍ଦନ ଶ୍ରୀକୃଷ୍ଣ ଏହି ପୃଥିବୀରେ ବିରାଜମାନ ଅଛନ୍ତି, ସେ ପର୍ଯ୍ୟନ୍ତ ମୁଁ ସିଂହାସନ ଛାଡ଼ିପାରିବି ନାହିଁ । ସେ ଯେତେବେଳେ ସ୍ୱଧାମ ଯାତ୍ରା କରିବେ, ସେତେବେଳେ ଆମ୍ଭେମାନେ ମଧ୍ୟ ହିମାଳୟ ଯାତ୍ରା କରିବୁ । ତା’ପରେ ତୁମେ ନିଜ ଇଚ୍ଛା ଅନୁସାରେ କାର୍ଯ୍ୟ କରିବ । ଶ୍ରୀକୃଷ୍ଣ ଥିବା ପର୍ଯ୍ୟନ୍ତ ତୁମେ ମୋ ରାଜ୍ୟରେ ରହିବାର ବିଚାର ତ୍ୟାଗ କର । ମୋ କଥା ଶୁଣି କଳିଯୁଗ ପ୍ରସନ୍ନ ହୋଇ ଚାଲିଗଲା ।

Digitized by srujanika@gmail.com

ତେଣୁ ସେହି ସବୁ ଘଟଣା ଆଜି ପ୍ରତ୍ୟକ୍ଷଭାବେ ମୋ ଆଖି ଆଗରେ ନାଚି-ଯାଉଛି । ମୋର ମନେହୁଏ ଖୁବ୍ ସମ୍ଭବତଃ ଭଗବାନ୍ ପୃଥିବୀ ତ୍ୟାଗ କରି ନିଜ ଧାମକୁ ଫେରିଗଲେଣି । ଶ୍ରୀକୃଷ୍ଣ ରହିତ ଓ କଳିଯୁଗାକ୍ରାନ୍ତ ଏହି ଧରଣୀରେ ଏବେ ରହିବା ସମ୍ଭବ ନୁହେଁ । ଭାଇମାନେ ! ଏବେ ଆମ୍ଭମାନଙ୍କୁ ହିମାଳୟ ଯାତ୍ରା କରିବାକୁ ପଡ଼ିବ । ଏହା କହି ଧର୍ମରାଜ ଅତ୍ୟନ୍ତ ଚିନ୍ତାକୁଳ ହୋଇ କାନ୍ଦିବାକୁ ଲାଗିଲେ । ତାଙ୍କ ମୁଖମଣ୍ଡଳ ମଳିନ ହୋଇଗଲା । ଅତୀବ ବିଷାଦଯୁକ୍ତ ହୋଇ ସେ ଦୀର୍ଘଶ୍ୱାସ ଛାଡ଼ିବାକୁ ଲାଗିଲେ ।

ତ୍ୟାଗେ୍ୟା ସବନେ ଧର୍ମ କର୍ମ କଛୁ କରେଁ ନ ହିତକର ।
ପାଲେଁ ପାପୀ ପେଟ ପାପ କରି ସଭୀ ନାରି ନର ॥
କରେ ନାହିଁ ବିଶ୍ୱାସ ପରସ୍ପର ପ୍ରେମ ନ ରାଖେଁ ।
ତାନକ ଦ୍ରବ୍ୟ କେ ହେତୁ ହାଲ ମିଥ୍ୟା ସବ ଭାଖେଁ ।
ନିରଖି ନିତ୍ୟ ଉତପାତ ଅତି,
ମନ ମଲୀନ ମେରୋ ଭୟୋ ।
କପଟ ବନ୍ଧୁ କଳିକାଲକା,
ଧରା ଧାମ ପୌ ଛା ଗୟୋ ॥



Digitized by srujanika@gmail.com

# ଧର୍ମରାଜ ଦେଖିଥିବା ଅପଶକୁନ

ଇମେ ଜନପଦା ଗ୍ରାମାଃ ପୁରୋଦ୍ୟାନାକରାଶ୍ରମାଃ ।
ଭ୍ରଷ୍ଟଶ୍ରିୟୋ ନିରାନନ୍ଦାଃ କମଘଂ ଦର୍ଶୟନ୍ତି ନଃ ॥

(ଭାଗବତ-୧.୧୪.୨୦)

ଛପ୍‌ପୟ

ଫରକେ ବାଇଁ ବାହୁ ହୃଦୟମେ,କମ୍ପନ ହୋୱେ ।
କର ମୁଁହ ମେରୀ ଓର ଶ୍ୱାନ ନିରଭୟ ହ୍ୱୈ ରୋୱେ ॥
ଉଲୁ ଔର କପୋତ ମୃତ୍ୟୁ କେ ଦୂତ କହାୱେ ।
କରକଶ କଠିନ କରାଲ, ଶବ୍ଦ କରି ହୃଦୟ ଲଗାୱେ ॥
ଲୀଲା ବିଗ୍ରହ ତ୍ୟାଗି କା, ଶ୍ୟାମ ଧାମ ଗମନେ କହୀ ।
କରୁଁ କହାଁ ଚିତ ଦୁଃଖିତ ଅତି
ଅରଜୁନ ହୂ ଆୟୋ ନହୀ ॥

ସମୟ ଅନୁସାରେ ପ୍ରକୃତିର ପରିବର୍ତ୍ତନ ଘଟେ । ଶୀତ ପରେ ପରେ ଗ୍ରୀଷ୍ମ ହଠାତ୍ ଆସେନାହିଁ, ତାହା ଧୀରେ ଧୀରେ ବଢ଼ିବାକୁ ଲାଗେ । ସେହିପରି ଗ୍ରୀଷ୍ମ ପରେ ବର୍ଷା ଆସେ ଓ ବର୍ଷା ପରେ ପୁଣି ଶୀତ ପଡ଼େ । ବିଭିନ୍ନ ଋତୁର କ୍ରମପ୍ରାଧାନ୍ୟ ଅନୁଭୂତ ହେଲାଭଳି ଶୁଭ ଶକୁନ ଓ ଅପଶକୁନ ମିଶାମିଶି ହୋଇ ଦେଖାଗଲା । ଅବିଶ୍ୱାସ ବୃଦ୍ଧିହେତୁ ଅପଶକୁନ ପ୍ରତି ଲୋକେ ଆଉ ଅଧିକ ଗୁରୁତ୍ୱ ଦେଲେନାହିଁ । ପ୍ରଥମେ ସମସ୍ତ କାର୍ଯ୍ୟ ଶୁଭମୁହୂର୍ତ୍ତ ଦେଖି କରାଯାଉଥିଲା; ଏବେ ଅଶୁଭ ଶକୁନ ଅଶୁଭ ଫଳ ଦେବବୋଲି ଆଉ କେହି ଭାବୁ ନାହାନ୍ତି ।

Digitized by srujanika@gmail.com

ଧର୍ମରାଜଙ୍କୁ ଅତୀବ ଦୁଃଖିତ, ଚନ୍ତିତ ଓ ବିଳାପ କରୁଥିବାର ଦେଖି ଭୀମସେନ ପଚାରିଲେ—"ରାଜନ୍ ! ଆପଣ କ'ଣ ଏପରି ଅପଶକୁନ ଦେଖିଲେ ଯେ ସେଥିପାଇଁ ଏତେ ବ୍ୟସ୍ତ ବିବ୍ରତ ହୋଇପଡ଼ୁଛନ୍ତି । ଆମର ଆଉ କେହି ଶତ୍ରୁ ନାହିଁ ଯେ ଆମ ଉପରେ ଆକ୍ରମଣ କରିବ । ଆତ୍ମୀୟ, ସ୍ୱଜନ, ବନ୍ଧୁବାନ୍ଧବ ସମସ୍ତେ ମୃତ୍ୟୁବରଣ କରିଛନ୍ତି । ଆଉ ଭାଇମାନଙ୍କ କଥା ରହିଲା । ଆମ୍ଭେମାନେ ମଧ୍ୟ ବେଶିଦିନ ବଞ୍ଚିବାପାଇଁ ଇଚ୍ଛା କରୁନାହୁଁ । ତେବେ ଆପଣ ଏତେ ଚନ୍ତିତ କାହିଁକି ?"

ଧର୍ମରାଜ କହିଲେ—"ଭୀମସେନ୍ ! ଶତ୍ରୁମାନଙ୍କଠାରୁ ମୋର ଟିକେ ହେଲେ ଭୟ ନାହିଁ । ଗୋଟିଏ ଗୋଟିଏ ବାଣରେ ତ୍ରିଲୋକକୁ ଭସ୍ମ କରିଦେବାଭଳି ବୀର ଦ୍ରୋଣ, ଭୀଷ୍ମ, କର୍ଣ୍ଣ ପ୍ରଭୃତି ଯୋଦ୍ଧାଙ୍କୁ ଆମେ ଜୟକରି ପାରିଥିବାବେଳେ ଏବେ ଆମର ଅନିଷ୍ଟ ସାଧନ କଲାଭଳି ଶତ୍ରୁ କିଏ ଅଛି ? ଭାଇମାନଙ୍କ ବାହୁବଳ ଉପରେ ମୋର ଦୃଢ଼ଭରସା ରହିଛି । ମୋର ଦେହ ବିଷୟରେ ମଧ୍ୟ କିଛି ଚନ୍ତା ନାହିଁ, ଏହା ଦିନେ ନା ଦିନେ ନଷ୍ଟ ହେବ; କିନ୍ତୁ ଗୋଟିଏ ବିଷୟରେ ମୋର ଚନ୍ତା ହେଉଛି ଯେ, ଆମର ସାନଭାଇ ଅର୍ଜୁନକୁ ମୁଁ ଦ୍ୱାରକା ପଠାଇଥିଲି । ତାକୁ କହିଥିଲି ସେଠାରୁ ଖବର ନେଇ ଶୀଘ୍ର ଫେରିଆସିବ । ସେ ଏଠାରୁ ଯିବାର ସାତ ମାସରୁ ଅଧିକ ହେଲାଣି । ସେ ନିଜେ ଆସିଲା ନାହିଁ କି କାହାରି ହାତରେ କିଛି ଖବର ପଠାଇଲା ନାହିଁ । ସେ ବିଷୟରେ ମୋର ବଡ଼ ସନ୍ଦେହ ହେଉଛି । ଦେବର୍ଷି ନାରଦ ଏଆଡ଼େ ଆସିଥିଲେ । ସେ କହିଗଲେ ଯେ ଆମେ ଥାଉଁ ଥାଉଁ ଭଗବାନ୍ ଦେବକୀନନ୍ଦନ ଧରାଧାମ ତ୍ୟାଗକରି ସ୍ୱଧାମ ଯାତ୍ରା କରିବେ । ମୁଁ ଏହି ଦୁଃସମ୍ବାଦ ଶୁଣିବାପାଇଁ ଆଦୌ ପ୍ରସ୍ତୁତ ନୁହେଁ । ଏ ଦୁଃଖ ମୋ ପକ୍ଷରେ ଅସହ୍ୟ । ତୁମେ ଜାଣ ମୋ ଶରୀରରେ ଥିବା ବାୟୁ ମୋର ପ୍ରାଣ ନୁହେଁ, ଭଗବାନ୍ ବାସୁଦେବ ମୋର ଓ ଆମ ସମସ୍ତଙ୍କର ପ୍ରାଣ । ଯାହା କିଛି ଧନଲାଭ ହୋଇଛି, ରାଜ୍ୟ ମିଳିଛି, ଐଶ୍ୱର୍ଯ୍ୟ, କୁଳ ଓ ପ୍ରଜାବର୍ଗଙ୍କ ଆଦର ମିଳିଛି, ଶତ୍ରୁଜୟ, ଯଜ୍ଞାଦିଦ୍ୱାରା ଲୌକିକ ଓ ପାରଲୌକିକ ପୁଣ୍ୟଲାଭ ହୋଇଛି, ସେ ସମସ୍ତ ସେହି ଭଗବାନ୍ ଶ୍ରୀକୃଷ୍ଣଙ୍କ ଦୟାରୁ ସମ୍ଭବ ହୋଇଛି । ତାଙ୍କ ବିନା ଆମେ କ'ଣ କରିପାରି ଥାନ୍ତେ । ତାଙ୍କର ସହାୟତା, ସମ୍ମତି, କୃପା ଓ ଅନୁଗ୍ରହ ମିଳି ନ ଥିଲେ, ଆମେ ଆଜି ଏହି ଅବସ୍ଥାରେ ନ ଥାନ୍ତେ ! ଆମକୁ ଛାଡ଼ି ସେ ଚାଲିଯିବେ, ଏହି ଚନ୍ତା ବାରମ୍ବାର ମୋ ମନରେ ଆସୁଛି । ସେଇଥି ପାଇଁ ମୋ ମନ ବ୍ୟଥିତ ହେଉଛି । ଗୋଟିଏ ଅଧେ ନୁହେଁ ଅନେକ ପ୍ରକାର ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଅପଶକୁନ ମୋତେ ଦେଖାଗଲାଣି ।"

Digitized by srujanika@gmail.com

ଅପଶକୁନ ବିଷୟରେ ଭୀମସେନଙ୍କୁ ବୁଝାଇବାକୁ ଯାଇ ଯୁଧିଷ୍ଠିର କହିଲେ—"ଦେଖ, ପୁରୁଷର ବାମ ଅଙ୍ଗ ବିଶେଷକରି ଆଖି, ବାହୁ ଓ ଜଙ୍ଘ ଆଦି ଫରକିବା ଅଶୁଭ । ସ୍ତ୍ରୀମାନଙ୍କର ସେହି ସେହି ଦକ୍ଷିଣାଙ୍ଗ ଫରକିବା ମଧ୍ୟ ଅଶୁଭ-ସୂଚକ । ପୁରୁଷର ବାମ ଚକ୍ଷୁର ଉପର ପତା, ଭ୍ରୂ ଫରକିଲେ ଅଶୁଭ; କିନ୍ତୁ ତଳପତା ଓ କପୋଳ ଫରକିଲେ ଅଧିକ ଅଶୁଭକାରକ । ମୋର ଏହି ସବୁ ଅଙ୍ଗ ବାରମ୍ବାର ସ୍ଫୁରିତ ହେଉଛି । କୌଣସି ଉପାୟରେ ତାହା ବନ୍ଦ ହେଉନି । କେବଳ ସେତିକି ନୁହେଁ, ଛାତିଟା ମଧ୍ୟ ଅକାରଣ ଧଡ଼ପଡ଼ ହେଉଛି । ଆଉ ମନରେ ଅବସାଦ ଆସୁଛି ।"

ଭୀମସେନ କହିଲେ—"ପ୍ରଭୋ ! କେବେକେବେ ମାନସିକ ଭ୍ରମ ସୃଷ୍ଟି ହେଲେ ଏଭଳି ଅବସ୍ଥା ଘଟେ । ଅର୍ଜୁନ ନ ଆସିବାରୁ ଆପଣଙ୍କ ମନରେ ଆଶଙ୍କା ଜାତ ହୋଇଛି । ସେଥିପାଇଁ ଆପଣଙ୍କ ଚିତ୍ତ ଚଞ୍ଚଳ ହେଉଛି, ମନ ଅସ୍ଥିର ହେଉଛି । ଆପଣ ସେ ସବୁ ଆନୁମାନିକ ଆଶଙ୍କା ତ୍ୟାଗ କରନ୍ତୁ । ମଙ୍ଗଳମୟ ଶ୍ରୀହରି ସବୁ କିଛି ମଙ୍ଗଳ କରିବେ ।"

ଧର୍ମରାଜ କହିଲେ—"ଭୀମସେନ ! ଯଦି ତାହା ହୋଇଥାନ୍ତା, ତେବେ ତୁମ କଥା ସତ ହୁଅନ୍ତା; କିନ୍ତୁ ମୋ ମନରେ କେବଳ ନୁହେଁ ବାହାରେ ମଧ୍ୟ ବହୁବିଧ ଅପଶକୁନ ଦେଖୁଛି । ଦେଖ, ଶୃଗାଳ ଶୃଗାଳୀ ସର୍ବଦା ରାତିରେ ହିଁ ଶବ୍ଦ କରନ୍ତି; କିନ୍ତୁ ମୁଁ ଦେଖୁଛି ଉଦିତ ସୂର୍ଯ୍ୟଙ୍କୁ ଚାହିଁ ଶୃଗାଳୀ କାନ୍ଦୁଛି । କୁକୁର ମୋ ଆଡ଼କୁ ଚାହିଁ ନିର୍ଭୟରେ ଭୁକୁଛି । ଯେଉଁ ପୁରୁଷକୁ ଦେଖି ଓ ତାହାର ଆଡ଼କୁ ମୁହଁ କରି କୁକୁର ଅତି କର୍କଶ ସ୍ୱରରେ କାନ୍ଦେ, ତାହାର ବହୁ ଅନିଷ୍ଟ ଘଟିଥାଏ । ଶାସ୍ତ୍ରର ନିୟମ ଅଛି—ଗାଈକୁ ଦକ୍ଷିଣରେ ଓ କୁକୁର, ଶିଆଳ, ଗଧ, ଶୁକର ଆଦିଙ୍କୁ ବାମଭାଗରେ ଦେଖିବା ଉଚିତ; କିନ୍ତୁ ଚେଷ୍ଟା କଲେ ବି ଗାଈ ଦକ୍ଷିଣ ଭାଗକୁ ଆସୁ ନାହିଁ । ସେ ସେହି ବାମଭାଗ ଆଡ଼କୁ ଚାଲିଯାଉଛି । ଅନ୍ୟ ପଶୁମାନେ ଦକ୍ଷିଣ ଭାଗରେ ନିର୍ଭୟ ହୋଇ ଚାଲିଯାଉଛନ୍ତି । ମୋର ଘୋଡ଼ାଶାଳାରେ ବି ସେହି ଅବସ୍ଥା । ସହଦେବଦ୍ୱାରା ମୁଁ ଘୋଡ଼ାମାନଙ୍କର କେତେ ଯତ୍ନ ନେଉଛି; କିନ୍ତୁ ସେମାନେ ସମସ୍ତେ ଆଖିରୁ ଲୁହଗଡ଼ାଇ କାନ୍ଦୁଛନ୍ତି । ମୋର ଘର ଆଗରେ ବସି ମୃତ୍ୟୁର ଦୂତ କପୋତ ଓ ପେଚା ସାରାରାତି ଅତି କଠୋର ଶବ୍ଦ କରୁଛନ୍ତି । ଏଇସବୁ ଘଟଣାରୁ ମୁଁ ଜାଣୁଛି ଯେ ପୃଥିବୀର ପ୍ରଳୟ ଅତି ଆସନ୍ନ । ଦିଗସବୁ ଧୂମାଳ ଓ ଅନ୍ଧାରିଆ ଦେଖାଯାଉଛି । ବାରମ୍ବାର ଉଲ୍‌କାପାତ ହେଉଛି । ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଚାରିପାଖରେ ମଣ୍ଡଳ ଦେଖାଯାଉଛି । ଭୂକମ୍ପ, ଅଗ୍ନିଉଦ୍‌ଗିରଣ, ଓ ଅସମୟରେ ବିଜୁଳି ଓ ବଜ୍ରପାତ ଘଟୁଛି । ରାଜ୍ୟର ଲୋକେ କହୁଛନ୍ତି କେତେକ ସ୍ଥାନ ରକ୍ତବର୍ଣ୍ଣ ଦେଖାଯାଉଛି ।

Digitized by srujanika@gmail.com

ଭୀମସେନଙ୍କ ପ୍ରଶ୍ନର ଉତ୍ତରଦେଇ ଯୁଧିଷ୍ଠିର କହିଲେ—"ପାଣି ଯେପରି ବର୍ଷା ହୁଏ ସେହିପରି ଆକାଶରୁ ରକ୍ତବର୍ଷା ହୁଏ । ଘରର ଛାତ ଉପରେ ରକ୍ତ ଜମିଯାଏ । ପୃଥିବୀ ରକ୍ତରଞ୍ଜିତ ହୋଇଯାଏ । ଏଭଳି ବର୍ଷା ମୁଁ ନିଜେ ଦେଖିଛି । କେବଳ ସେତକ ନୁହେଁ, ଆକାଶରେ ଆହୁରି ଅନେକପ୍ରକାର ଉତ୍ପାତ ଘଟୁଛି । ଗ୍ରହ, ନକ୍ଷତ୍ରମାନଙ୍କ ମଧ୍ୟରେ ପରସ୍ପର ସଂଘର୍ଷ ଘଟୁଛି । ଦିନରେ ଭୂତ, ପ୍ରେତ ନାଚୁଥିବାର ଦେଖାଯାଉଛନ୍ତି । ପୃଥିବୀ ଗର୍ଭରୁ ଅସମ୍ଭବ ଉତ୍ତାପ ବାହାରୁଛି । ନଦ, ନଦୀ, ସରୋବରର ଜଳ ଆନ୍ଦୋଳିତ ହେଉଛି । ଲୋକେ ଭୀତତ୍ରସ୍ତ ହୋଇ-ପଡ଼ୁଛନ୍ତି ।" ଆପଣ କ'ଣ ଏସବୁ ଦେଖିଛନ୍ତିବୋଲି ଭୀମସେନ ପଚାରିବାରୁ ଧର୍ମରାଜ ଉତ୍ତର ଦେଲେ—"କେତେକ ସମ୍ବାଦ ମୁଁ ବିଶ୍ୱସ୍ତ ଲୋକଙ୍କଠାରୁ ଶୁଣିଛି, ଆଉ କେତକ ଘଟଣା ମୁଁ ନିଜେ ଦେଖିଛି । ସକାଳେ ସନ୍ଧ୍ୟାରେ ଅଗ୍ନିହୋତ୍ର କରିବାକୁ ଯାଇ ଦେଖିଛି, ଯେତେ ଚେଷ୍ଟା କଲେ ମଧ୍ୟ ଅଗ୍ନି ପ୍ରଜ୍ୱଳିତ ହେଉନାହିଁ । ବାରମ୍ବାର ଘୃତ ଆହୁତି ଦେଲେ ମଧ୍ୟ କେବଳ ଧୂଆଁ ଉଠି ରହିଯାଉଛି । ଏହା ଦିନକର ଘଟଣା ନୁହେଁ, ଅନେକଦିନ ହେଲା ଏପରି ଘଟୁଛି । ସେଥିପାଇଁ ମୋର ଆଶଙ୍କା ବଢ଼ିଯାଉଛି । ଘୋଡ଼ାଶାଳରେ ଘୋଡ଼ା କେବଳ ନୁହେଁ, ଗୋଶାଳାରେ ଗାଈଗୁଡ଼ିକ ମଧ୍ୟ କାନ୍ଦୁଛନ୍ତି । ବାଛୁରି ଦୁଧ ପିଉନାହିଁ କି ଗାଈ ଦୁଧ ଦେଉ ନାହିଁ । ଯେତେ ଘାସ, କୁଟା ଦେଲେ ମଧ୍ୟ ବଳଦ ତାହା ଖାଉନାହିଁ କି ସ୍ଥିର ହେଉନାହିଁ । ଏକ ସମୟରେ ସମସ୍ତଙ୍କର ଏ ପ୍ରକାର ଅବସ୍ଥା ଦେଖାଯାଉଛି ।

ଏ ସମସ୍ତ ମନୁଷ୍ୟ, ପଶୁ, ପକ୍ଷୀମାନଙ୍କର କଥା ଛାଡ଼, ଆଉ ଏକ ଆଶ୍ଚର୍ଯ୍ୟ ଘଟଣା ଘଟୁଛି । ଦେବମୂର୍ତ୍ତିମାନଙ୍କ ଆଖିରୁ ମଧ୍ୟ ଲୁହ ଗଳୁଛି । ସେମାନଙ୍କ ଶରୀର ସ୍ୱେଦସିକ୍ତ ହେଉଛି । ଜୀବନ୍ତ ପ୍ରାଣୀଭଳି ସେମାନେ ହଲଚଲ ହେଉଥିବାର ଦେଖାଯାଉଛନ୍ତି । ତଦ୍‌ବ୍ୟତୀତ ନାନାପ୍ରକାର ଉତ୍ପାତ ଘଟୁଛି । ପୂର୍ବଭଳି ଧନଧାନ୍ୟ ଥିଲେ ମଧ୍ୟ ଦେଶ, ଗ୍ରାମ, ପୁର, ପୁଷ୍ପୋଦ୍ୟାନ, ଋଷି ଆଶ୍ରମ ସବୁ ଖାଲି ଖାଲି ଲାଗୁଛି ଓ ଶ୍ରୀହୀନ ଦେଖାଯାଉଛି । ଏହି ସବୁ ଘଟଣା ଦେଖି ଓ ଅର୍ଜୁନ ନ ଫେରିବାହେତୁ ମୋର ସନ୍ଦେହ ହେଉଛି ଯେ, ସମ୍ଭବତଃ ଏହି ପୃଥିବୀରେ ବଜ୍ର, ଅଙ୍କୁଶ, ଧ୍ୱଜ ଆଦି ଚିହ୍ନିତ ଶ୍ରୀକୃଷ୍ଣ ଭଗବାନଙ୍କର ପାଦ ଆଉ ପଡ଼ୁନାହିଁ । ସତରେ କଣ ଭଗବାନ୍ ବାସୁଦେବ ଏହି ଧରା ତ୍ୟାଗକରି ନିଜ ଧାମକୁ ଫେରିଗଲେଣି ?

Digitized by srujanika@gmail.com

ଧର୍ମରାଜଙ୍କ କଥା ଶୁଣି ଭୀମସେନ କହିଲେ—ଦେବ ! ଏସବୁ ପ୍ରକୃତରେ ବଡ଼ ଅନିଷ୍ଟକାରୀ ଅପଶକୁନ । ଏବେ ଆମେ କ'ଣ କରିବା ? ଆପଣ ଆଦେଶ ଦେଲେ ମୁଁ ଦ୍ୱାରକାଯାଇ ସବୁ ସମ୍ବାଦ ବୁଝିଆସନ୍ତି । ଏହା ଶୁଣି ଧର୍ମରାଜ ଚିନ୍ତିତ ହୋଇପଡ଼ିଲେ ଏବଂ କ'ଣ କରିବେ ବସି ବସି ତାହାହିଁ ଭାବିବାକୁ ଲାଗିଲେ ।

**ଗୈୟାଁ ରୋୱେଁ ନିତ୍ୟ ଘାସ ଘୋଡ଼ା ନହିଁ ଖାୱେଁ ।**
**ବହେ, ବାୟୁ ବୀଭତ୍ସ, ରକ୍ତ ବାଦଲ ବରସାୱେଁ ॥**
**ପୃଥ୍ୱୀ ପ୍ରେମ ପିଶାଚ, ପାପ ପ୍ରାନ ନଚୈଁ ପୂରନ ।**
**ଭଈ ଗଈ ଶୁଭକାନ୍ତ ଲଡ଼େ ନଭମେଁ ସବ ଗ୍ରହଗନ ॥**
**ଦେବମୂର୍ତ୍ତି ମୁଖ ମଳିନ କରି, ଅଶ୍ରୁବିନ୍ଦୁ ବରସାୱତୀଁ ।**
**ଅତି ଅପଶକୁନ ଜନାୱତୀ, ଦୁଃଖଦ ଦୃଶ୍ୟ ଦିଖଲାୱତୀ ॥**



Digitized by srujanika@gmail.com

# ଦ୍ୱାରକାରୁ ଅର୍ଜୁନଙ୍କ ପ୍ରତ୍ୟାଗମନ

ଇତି ଚିନ୍ତୟତସ୍ତସ୍ୟ ଦୃଷ୍ଟାରିଷ୍ଟେନ ଚେତସା ।
ରାଜ୍ଞଃ ପ୍ରତ୍ୟାଗମଦ୍ ବ୍ରହ୍ମନ୍ ଯଦୁପୁର୍ଯ୍ୟା କପିଧ୍ୱଜଃ ॥

( ଭାଗବତ-୧. ୧୪. ୨୨ )

ଛପପଦ୍ୟ

ଧର୍ମରାଜ ଭୟଭୀତ ଭଯେ ଅର୍ଜୁନ ତହିଁ ଆଯେ ।
ମୁଖମଣ୍ଡଳ ଅତି ମଳିନ ଦୁଃଖିତ ଚିନ୍ତିତ ଘବରାଯେ ॥
ସବଇ ହର୍ଷିତ ଭଯେ ନହୀଁ ଅର୍ଜୁନ ହରଷାଯେ ।
ପକରି ପୈର ଗିରି ପରେ ବଚନ ନହୀଁ କଛୁ ସୁନାଯେ ॥
ବାର ବାର ପୁଛେ ନୃପତି, ବନ୍ଧୁ ବାନ୍ଧବ ବାତି ସବ ।
ସମ୍ବନ୍ଧୀ ସବ ସୁଖୀ ହୈଁ ? କହେ କହାଁ ।
ତୌ ଚଲେ କବ ॥

ଆମେ କାହାର ବିଷୟ ଚିନ୍ତା କରୁଥିବାବେଳେ ଯଦି ସେ ଆସି ପହଞ୍ଚିଯାଏ ତେବେ ଆମ ଆନନ୍ଦର ସୀମା ରହେନାହିଁ; କିନ୍ତୁ ଶଙ୍କା ଅନୁରୂପେ ତାଙ୍କୁ ଦୁଃଖିତ ଦେଖିଲେ ନିଜର ସମସ୍ତ ଆନନ୍ଦ ମଉଳିଯାଏ । ଏହାକୁ ହର୍ଷ ଓ ବିଷାଦର ସାଙ୍କର୍ଯ୍ୟ କହନ୍ତି । ଏଥିରେ ହର୍ଷ ଓ ବିଷାଦ ମିଶ୍ରିତଭାବେ ଥାଏ । ଶଙ୍କାର ନିରାକରଣ ନିମିତ୍ତ ଆମେ ନାନାପ୍ରଶ୍ନ ପଚାରି ବସୁ ଏବଂ ଆସିଥିବା ବ୍ୟକ୍ତିଠାରୁ କେବଳ ହଁ ନାଁ ଶୁଣିବାକୁ ଇଚ୍ଛା କରୁଁ ।

ଧର୍ମରାଜ ବିଶେଷ ଚିନ୍ତିତ ଓ ଦୁଃଖିତ ଥିଲେ । ଅପଶକୁନ କାରଣରୁ ବ୍ୟାକୁଳତା ବଢ଼ୁଥିଲା । ଏହି ସମୟରେ ଅର୍ଜୁନ ଆସି ପହଞ୍ଚିଲେ । ସାତ ଆଠମାସ ପରେ ସେ ପ୍ରିୟବନ୍ଧୁଙ୍କଠାରୁ ଫେରିଛନ୍ତି । ଦୀର୍ଘକାଳ ଧରି ସେ ସେଠାରେ ପ୍ରାଣାଧିକ ବନ୍ଧୁଙ୍କ ସହିତ ରହିଥିଲେ । ଏହି ସବୁ କାରଣରୁ ଅର୍ଜୁନ ବିଶେଷ ପ୍ରସନ୍ନ ରହିବାର କଥା; କିନ୍ତୁ ସେ ଅତ୍ୟନ୍ତ ଦୁଃଖିତ ଦେଖାଯାଉଥିଲେ । ମୁହଁ ମଉଳି

Digitized by srujanika@gmail.com

ଯାଇଥିଲା, ଶରୀରର ତେଜୋମୟ କାନ୍ତି ନଷ୍ଟ ହୋଇଯାଇଥିଲା । ସେ ଗଭୀର ଚିନ୍ତାରେ ନିମଗ୍ନ ଥିଲେ । କୌଣସି ଏକ ଗୁରୁତର ଶୋକରେ ସନ୍ତପ୍ତ ଥିବାର ଦେଖାଯାଉଥିଲେ । ଅଶ୍ରୁଳ ନୟନରେ ଅଧୋମୁଖ ହୋଇ ଅର୍ଜ୍ଜୁନ ଧର୍ମରାଜଙ୍କ ଚରଣତଳେ ଆକୁଳତାର ସହିତ ପଡ଼ିଗଲେ । ନିଜ ଭାଇକୁ ଅନୁରୂପ ଚିନ୍ତିତ, ଦୁଃଖିତ ଓ ଶୋକାକୁଳ ଦେଖି ଧର୍ମରାଜ ମନେମନେ ନାରଦଙ୍କ କଥା ଭାବିଲେ । ହୃଦୟ ତାଙ୍କର ଥରିବାକୁ ଲାଗିଲା । ସେ ଦ୍ୱାରକାରେ ଥିବା ପ୍ରତ୍ୟେକ ଆତ୍ମୀୟଙ୍କ ନାମ କହି ଜଣ ଜଣକର କୁଶଳ ପ୍ରଶ୍ନ ପଚାରି ବସିଲେ । ଭାଇ ଅର୍ଜ୍ଜୁନ ତୁମେ ଏତେ ଉଦାସ କାହିଁକି ଦେଖାଯାଉଛ ? ବାଟରେ କିଛି ଦୁର୍ଘଟଣା ଘଟି ନାହିଁ ତ ? ଅତି ଶୀଘ୍ର ଆସିଥିବାରୁ କ୍ଳାନ୍ତ ହୋଇପଡ଼ିଛ କି ? ଦ୍ୱାରିକାରେ ଆମର ଆତ୍ମୀୟ ମଧୁ, ଭୋଜ, ଦଶାର୍ହ, ଅର୍ହ, ସାତ୍ତ୍ୱତ, ଅନ୍ଧକ ଓ ଯଦୁବଂଶୀ ବୀରମାନେ ସପରିବାର କୁଶଳରେ ଅଛନ୍ତି ତ ? ଜ୍ୟେଷ୍ଠ ମହାରାଜ ଶୂର ମନ୍ତ୍ରୀ ଓ ପରିଜନଙ୍କ ସହିତ ଭଲରେ ଅଛନ୍ତି ତ ? ଆମର ପ୍ରିୟ ବାସୁଦେବ କିପରି ଅଛନ୍ତି । ଧୃତଦେବୀ, ଶାନ୍ତିଦେବୀ, ଉପଦେବୀ, ଶ୍ରୀଦେବୀ, ଦେବରକ୍ଷିତା, ସହଦେବୀ, ଦେବକୀ ଏ ସାତଜଣ ଓ କଂସା, କଂସବତୀ, କଙ୍କା, ଶୂରଭୂ ଓ ରାଷ୍ଟ୍ରପାଳିକାଦି ମାଈଁମାନେ ନିଜ ନିଜର ପୁଅ ଝିଅଙ୍କ ସହିତ ସୁଖରେ ଅଛନ୍ତି ତ ? ଯାଦବ ମହାରାଜ କଂସ-ଜନକ ମାନନୀୟ ଉଗ୍ରସେନ ଓ ଉଗ୍ରସେନଙ୍କ ପିତା ଦେବକ ସୁସ୍ଥ ଓ ନିରୋଗ ଅଛନ୍ତି କି ? ସେମାନେ ସମସ୍ତେ ବହୁତ ବୁଢ଼ା ହୋଇଯାଇଥିବେ । ମୁଁ ଅନେକଦିନ ହେଲା ସେମାନଙ୍କୁ ଦେଖି ନାହିଁ ।

ଅର୍ଜ୍ଜୁନ ! ତୁମେ କିଛି କହୁନାହଁ କାହିଁକି ? ତୁମେ କିଛି କୁହ । କୃତବର୍ମା, ଅକ୍ରୁର, ଜୟନ୍ତ, ଗଦ, ସାରଣ, ଶତ୍ରୁଜିତ୍ ପ୍ରଭୃତିଙ୍କ କୁଶଳ ସମ୍ବାଦ କୁହ । ଆମର ମାନନୀୟ ହଳ ମୁଷଳଧାରୀ ବଳଦେବ, ପ୍ରଦ୍ୟୁମ୍ନ ପୁତ୍ର ଅନିରୁଦ୍ଧ ଓ ଶ୍ରୀକୃଷ୍ଣଙ୍କ ଅନ୍ୟ ପୁତ୍ରମାନଙ୍କ ଖବର କ'ଣ ଶୁଣାଅ । ଶ୍ରୀକୃଷ୍ଣଙ୍କର ୧୬୧୦୮୦ ଜଣ ପୁତ୍ର । ସେମାନଙ୍କ ମଧ୍ୟରେ ସୁଷେଣ, ଚାରୁଦେଷ୍ଣ, ଶାମ୍ବ, ଋଷଭ ଆଦି ୧୦୫ ଜଣଙ୍କର ନାମ ମୁଁ ଜାଣେ । ସେମାନଙ୍କର ଓ ଅନ୍ୟମାନଙ୍କର କୁଶଳ କୁହ । ତୁମେ ସେଠାରେ କିପରି ଆଦର ପାଇଲ, ସମ୍ପର୍କୀୟମାନେ କ'ଣ କ'ଣ ପଚାରିଲେ, ବାସୁଦେବ କେବେକେବେ ଆମକୁ ମନେ ପକାଉଛନ୍ତି କି ନାହିଁ, ତୁମେ ସେଠାରେ ଖୁସିରେ ଥିଲ କି ନାହିଁ ଶ୍ରୀକୃଷ୍ଣ କି କି ଖବର ପଠାଇଛନ୍ତି । ଆମର ଅଜା, ଆଈ, ମାମୁଁ ମାଈଁଙ୍କୁ କି କି ଉପହାର ଦେଲ ସବୁକଥା ମୋତେ ବିସ୍ତୃତଭାବେ କୁହ ।

ଭଗବାନ୍ ଶ୍ରୀକୃଷ୍ଣଙ୍କ କୁଶଳ ପ୍ରଶ୍ନ କ'ଣ ପଚାରିବି, ସେ ନିଜେ ତ କୁଶଳମୟ । ସମସ୍ତ ମଙ୍ଗଳ ଓ ଆନନ୍ଦର ସେହି ଏକମାତ୍ର ଆଧାର । ସ୍ୱର୍ଗରୁ

Digitized by srujanika@gmail.com

ସୁଧର୍ମା ସଭାକୁ ଯେ ମର୍ତ୍ତ୍ୟକୁ ଆଣିଥିଲେ । ସତ୍ୟଭାମାଙ୍କ ଅନୁରୋଧରେ ନନ୍ଦନବନରୁ ଦିବ୍ୟ ପାରିଜାତ ପୁଷ୍ପବୃକ୍ଷକୁ ଯେ ଉଠାଇ ଆଣିଥିଲେ, ତାଙ୍କର କୁଶଳପ୍ରଶ୍ନ କରିବା ଧୃଷ୍ଟତା ହେବ । ପରଂବ୍ରହ୍ମ ହୋଇ ମଧ୍ୟ ସେ ବ୍ରାହ୍ମଣ ଭକ୍ତ ଓ ମାନବବେଶରେ ଆବିର୍ଭୂତ ହୋଇ ମଧ୍ୟ ସେ ମାୟାତୀତ । ଯଦୁକୁଳ ରୂପକ କ୍ଷୀରସାଗରରେ ସେ ଅଶେଷ ଲୀଳା ରଚନା କରିଛନ୍ତି । ସର୍ବଦା ଭକ୍ତମାନଙ୍କର ସୁରକ୍ଷା ନିମିତ୍ତ ବ୍ୟାକୁଳ ସେହି ଶ୍ରୀକୃଷ୍ଣଙ୍କ କୃପାରୁ ଯାଦବମାନେ ପୃଥିବୀରେ ଥାଇ ମଧ୍ୟ ବିଷ୍ଣୁପାର୍ଷଦଙ୍କ ତୁଲ୍ୟ ବୈକୁଣ୍ଠ ସୁଖ ଅନୁଭବ କରୁଛନ୍ତି । ସେହି ଭଗବାନ୍ ଶ୍ରୀକୃଷ୍ଣଙ୍କର କୁଶଳ ପ୍ରଶ୍ନ, ମାୟାମୋହଗ୍ରସ୍ତ ମର୍ତ୍ତ୍ୟବାସୀ ପକ୍ଷରେ ନିହାତି ଅବାନ୍ତର ।

ଅର୍ଜ୍ଜୁନ ! କେଡ଼େ ଆଶ୍ଚର୍ଯ୍ୟର କଥା, ଯେଉଁ ରାଜାଙ୍କର ଦଶ କୋଡ଼ିଏ ଜଣ ରାଣୀ ଥାଆନ୍ତି, ସେମାନେ ପ୍ରତ୍ୟେକ ରାଣୀକୁ ସନ୍ତୁଷ୍ଟ କରିପାରନ୍ତି ନାହିଁ । ପ୍ରତିଦିନ ସେହି ରାଣୀମାନେ ପରସ୍ପର ମଧ୍ୟରେ କଳିଗୋଳ କରନ୍ତି; କିନ୍ତୁ ରୁକ୍ମିଣୀ ଆଦି ୧୬୧୦୮ ରାଣୀ ଶ୍ରୀକୃଷ୍ଣଙ୍କର ଅଛନ୍ତି । ସେମାନେ ସମସ୍ତେ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ବଳି ଶ୍ରୀକୃଷ୍ଣଙ୍କଠାରେ ବିଶେଷ ଅନୁରକ୍ତ । ଶ୍ରୀକୃଷ୍ଣ ମଧ୍ୟ ସେମାନଙ୍କ ପାଇଁ ପ୍ରତ୍ୟହ ଯେଉଁ ନିତ୍ୟ ନୂତନ ସ୍ୱର୍ଗୀୟ ସୁଖଭୋଗ ଦାନ କରନ୍ତି, ତାହା ଇନ୍ଦ୍ରପତ୍ନୀ ଇନ୍ଦ୍ରାଣୀଙ୍କ ଭାଗ୍ୟରେ ମଧ୍ୟ ସମ୍ଭବ ହୁଏ ନାହିଁ । ସେହି ରାଣୀମାନେ ଶ୍ରୀକୃଷ୍ଣଙ୍କୁ ନିଜ ନିଜର ପ୍ରାଣନାଥ ଭାବେ ଲାଭ କରି ଅତୀବ ଆନନ୍ଦରେ ଅଛନ୍ତି । ସେମାନେ ତୁମ ସହିତ ଆନନ୍ଦରେ ହାସ ପରିହାସ କରିଥିବେ । ଭଗବାନଙ୍କ ସହିତ ସେମାନେ ଏଠାକୁ ଆସିଛନ୍ତି । ମୋତେ ଦେଖି ଲାଜ କରନ୍ତି, ଓଢ଼ଣାରେ ମୁହଁ ଘୋଡ଼େଇ ପକାନ୍ତି; କିନ୍ତୁ ବେଶଭୂଷା ହୋଇ ରାଜଗଲିବେଳେ ସଜ୍ଜିତ ସୈନ୍ୟସାମନ୍ତ ସହିତ ମନ୍ମଥ ଜୈତଯାତ୍ରା କଲାଭଳି ମନେହୁଏ ।

ଏତେ କଥା କହିବା ପରେ ମଧ୍ୟ ଯେତେବେଳେ ଅର୍ଜ୍ଜୁନ କିଛି କହିଲେ ନାହିଁ, ସେତେବେଳେ ଧର୍ମରାଜଙ୍କ ସନ୍ଦେହ ବଢ଼ିଗଲା । ଯାଦବମାନଙ୍କ କୁଶଳ ପ୍ରଶ୍ନ ପଚାରିବାବେଳେ ଅର୍ଜ୍ଜୁନଙ୍କ ମୁଖମଣ୍ଡଳ ଅଧିକରୁ ଅଧିକ ଶୋଚା ପଡ଼ିଯାଉଥିଲା । ଏହା ଲକ୍ଷ୍ୟ କରି ଯୁଧିଷ୍ଠିର ପୁଣି କହିଲେ—ଭାଇ ଅର୍ଜ୍ଜୁନ ! ତୁମେ ତ କିଛି କହୁ ନାହଁ । ତୁମେ କାନ୍ଦୁଛ କାହିଁକି ? ମୁଁ ପଚାରିବାପରେ ମଧ୍ୟ ତୁମେ ଯାଦବମାନଙ୍କ ବିଷୟରେ କିଛି କହୁନାହଁ କାହିଁକି ? ତୁମେ ଖୁବ୍ ଦୁର୍ବଳ ଓ ନିଷ୍ପ୍ରଭ ଦେଖାଯାଉଛ । ତୁମେ ସେଠାରେ ଖୁବ୍ ବେଶି ଅବହେଳା ପାଇଲ କି ? ଦ୍ୱାରକାର ଯାଦବମାନେ ତ କେବେହେଲେ ତୁମ ପ୍ରତି ଖରାପ ବ୍ୟବହାର କରିବେ ନାହିଁ, ତାହାହେଲେ ତୁମକୁ କିଏ ଅପମାନିତ କଲା କି ? ଅନ୍ୟର ଅପମାନ ଅପେକ୍ଷା ଆତ୍ମୀୟସ୍ୱଜନଙ୍କ ଅପମାନର ଆଘାତ ଖୁବ୍ ବେଶି ହୁଏ । ସେ ଅପମାନ

Digitized by srujanika@gmail.com

ସାର୍ଜୀବନ ଭୂଲି ହୁଏ ନାହିଁ । ଦୁର୍ଭର୍ତ୍ସନାଯୁକ୍ତ ଅମଙ୍ଗଳ ବଚନ ହୃଦୟରେ ଗଭୀର ରେଖାପାତ କରିଥାଏ । ସେହି ଚନ୍ଦ୍ରାରେ ସର୍ବଦା ମୁଖ ମଳିନ ରହେ । ଚନ୍ଦ୍ରାରେ ଶରୀର ବିକଳ ଦେଖାଯାଏ । କାରଣ, ଚିତା ଓ ଚନ୍ଦ୍ରା ମଧ୍ୟରେ ଚନ୍ଦ୍ରାର ପ୍ରଭାବ ଅଧିକ । ସେଥିପାଇଁ କହନ୍ତି—

ଚିତା ଚନ୍ତା ଦ୍ୱୟୋର୍ମଧ୍ୟେ ଚନ୍ତା ଏବ ଗରୀୟସୀ ।
ଚିତା ଦହତି ନିର୍ଜୀବଂ ଚନ୍ତା ଏବ ସଜୀବକମ୍ ।।

ତେଜୋହୀନ ହେବାର ଆଉରି କାରଣ ଅଛି । କେହି ଜଣେ ବଡ଼ ଆଶାୟୀ ହୋଇ ଆମ ପାଖକୁ ଆସିଲା । ଆମେ ସେ କାମଟି କରିବାକୁ ଏକାନ୍ତ ଅସମର୍ଥ । ସେ ଅତି ନମ୍ରଭାବେ ପ୍ରାର୍ଥନା କରିବାରୁ ଆମେ ତାଙ୍କୁ ଆଶ୍ୱାସନା ଦେଲୁ ଯେ, ତୁମ କାମ ନିଶ୍ଚୟ ହେବ, ତୁମେ ନିଶ୍ଚିନ୍ତ ରୁହ । ଆମ କଥା ଉପରେ ବିଶ୍ୱାସ ରଖି ସେ ନିଶ୍ଚିନ୍ତ ଭାବେ କାର୍ଯ୍ୟର ସଫଳତା ନିମିତ୍ତ ଅପେକ୍ଷା କଲେ । କିଛିଦିନ ପରେ ଲୋଭବଶତଃ ହେଉ ବା ଭୁଲ୍‌ବଶତଃ ହେଉ ଆମେ କହିଲୁ—ଆପଣ ଯାହା କରନ୍ତୁ ଯୁଆଡେ ଯାଆନ୍ତୁ ପଛେ, ଆପଣଙ୍କ କାର୍ଯ୍ୟ ହୋଇପାରିବ ନାହିଁ । ଏହା ଶୁଣି ସେ ଯେଉଁ ଦୀର୍ଘ ଶ୍ୱାସ ତ୍ୟାଗ କରେ, ତଦ୍ଦ୍ୱାରା ପ୍ରତିଶ୍ରୁତିଦାତା ଶ୍ରୀହୀନ ଓ କ୍ଳାନ୍ତ ହୀନ ହୋଇଯାଏ । ଆମ୍ଭେମାନେ ସେପରି କିଛି ତ କରିନାହୁଁ । ସେହିପରି କୌଣସି କାରଣରୁ ଦୁଃଖିତ ହୋଇ ବ୍ରାହ୍ମଣ, ବାଳକ, ଗୋରୁ, ବୃଦ୍ଧ, ରୋଗୀ ଅଥବା ସ୍ତ୍ରୀଲୋକ ଶରଣାର୍ଥୀ ହୋଇଥିଲେ ଆମର ସାମର୍ଥ୍ୟ ଥାଇ ମଧ୍ୟ ଯଦି ଆମେ କ୍ଷମା ନ କରୁ ବା ତିରସ୍କାରପୂର୍ବକ ତାଙ୍କୁ ତ୍ୟାଗ କରୁଁ, ତେବେ ଆମେ ତେଜୋହୀନ ଓ ବୀଭତ୍ସ ହୋଇଯାଉଁ ।

ତୁମର ମୁଖ ଶୁଖି ଯାଇଛି । ପଚାରିଲେ ମଧ୍ୟ ଉତ୍ତର ଦେଉନାହଁ । ଏ ଅବସ୍ଥା ମଧ୍ୟ ଅପମାନ ହେତୁ ସମ୍ଭବ । ଆନ୍ତରିକ ଗ୍ଲାନି ବା ପାପକର୍ମରୁ ମଧ୍ୟ ଏପରି ଘଟେ । ମୁଁ ସ୍ୱପ୍ନରେ ସୁଦ୍ଧା ଭାବିପାରୁନି ଯେ ତୁମଭଳି ବୀର ଅଗମ୍ୟାଗମନ ବା କୌଣସି ସ୍ତ୍ରୀ ଲୋକକୁ ଅପମାନ ଦେଇଥିବ । ସେପରି କାମ ତୁମର ମୁଁ ଆଜିପର୍ଯ୍ୟନ୍ତ ଦେଖିନାହିଁ । ତୁମେ କେବେହେଲେ ଧର୍ମଚ୍ୟୁତ ହୋଇ ନ ଥିବ । ସ୍ୱର୍ବେଶ୍ୟା ଉର୍ବଶୀକୁ ଯେ ପ୍ରତ୍ୟାଖ୍ୟାନ କରିଛି, ସେହି ଅର୍ଜୁନ ଅନ୍ୟ ସ୍ତ୍ରୀକୁ ଆଖି ଉଠାଇ ଦେଖିଥିବ, ଏହା ମୋର ବିଶ୍ୱାସ ହେଉ ନାହିଁ । ଭୁଲ୍‌ରେ ମଧ୍ୟ ତୁମେ ଏପରି ପାପକାର୍ଯ୍ୟ କରିନାହଁ ।

ବଳବାନ୍ ପୁରୁଷ ହୀନବଳଦ୍ୱାରା ପରାଜିତ ହେଲେ ଏପରି କ୍ଳାନ୍ତହୀନ ହୁଅନ୍ତି । ତୁମେ ମହାଭାରତ ଯୁଦ୍ଧରେ ଭୀଷ୍ମ, ଦ୍ରୋଣ, କର୍ଣ୍ଣଭଳି ମହାରଥୀଙ୍କୁ ପରାସ୍ତ କରିଛ । ସଂସାରରେ ଏପରି ଆଉ କିଏ ଅଛି ଯେ ତୁମକୁ ପରାଜିତ କରିପାରିବ । ତେଣୁ କାହାରିଠାରୁ ପରାଜିତ ହୋଇଥିବାର ସମ୍ଭାବନା ନାହିଁ ।

Digitized by srujanika@gmail.com

ମାନବ ଯେତେବେଳେ ଇନ୍ଦ୍ରିୟର ବଶୀଭୂତ ହୋଇ ଲୋଭାକୃଷ୍ଟ ହୁଏ, ସେତେବେଳେ ଜିହ୍ୱାଲାଳସାବଶତଃ ସ୍ୱାଦିଷ୍ଟ ଖାଦ୍ୟ ପ୍ରଥମେ ବାଳକ ଓ ବୃଦ୍ଧଙ୍କୁ ନ ଦେଇ ନିଜେ ଖାଇଯାଏ । ସେହି କାରଣରୁ ମନୁଷ୍ୟ ସଦ୍‌ଗୁଣହୀନ ହୁଏ ଓ ପରିଶେଷରେ ପ୍ରେତଭଳି ଦେଖାଯାଏ । ଏ ପ୍ରକାର ଶାସ୍ତ୍ରନିନ୍ଦିତ କର୍ମ ଯଦି ତୁମେ କରିଛ, ତେବେ ତାହା ନିଃସନ୍ଦେହରେ ମୋତେ କୁହ । ମୁଁ ପଣ୍ଡିତମାନଙ୍କୁ ଡକାଇ ତା'ର ଯଥୋଚିତ ପ୍ରାୟଶ୍ଚିତ୍ତ କରାଇବି ।

ମୋର ଆଉ ଏକ ଆଶଙ୍କା ହେଉଛି ଯାହା ମୁଁ କରିବାକୁ ଚାହୁଁନାହିଁ ଈଶ୍ୱରଙ୍କ ଦୟାରୁ ମୋର ଆଶଙ୍କା ଅମୂଳକ ହେଉ, କିନ୍ତୁ ମୋତେ ତାହା ଅମୂଳକ ହେଲାଭଳି ମନେ ହେଉନାହିଁ । ନାନାପ୍ରକାର ଉତ୍ପାତ, କାଳର ବିପରୀତ ଘଟଣାବଳୀ ଏବଂ ପୃଥିବୀ, ଅନ୍ତରୀକ୍ଷ ଓ ଆକାଶମଣ୍ଡଳର ଅପଶକୁନଗୁଡ଼ିକ ରହି ରହି ମୋର ଆଶଙ୍କାକୁ ଦୃଢ଼ତର କରୁଛି । ତୁମର ପରମ ପ୍ରେମାସ୍ପଦ, ଅଭିନ୍ନହୃଦୟ, ମିତ୍ର, ସଖା, ସାରଥି ଭଗବାନ ଶ୍ୟାମସୁନ୍ଦର ତୁମକୁ କାନ୍ଦିବାକୁ ଛାଡ଼ିଦେଇ ଏ ଧରାଧାମ ତ୍ୟାଗକରି ଚାଲିଯାଇ ନାହାଁନ୍ତି ତ ? ଭାଇ ଅର୍ଜୁନ ! ଯାହା ସବୁ କହୁଛି ତାହାର ଫଳାଫଳ ଉପରେ ଭିତ୍ତି କରି ପ୍ରସଙ୍ଗତଃ ମୁଁ ଏହା କହୁଛି । ମୋର ଅନ୍ତଃକରଣ କହୁଛି, ତୁମର ତଦ୍‌ବ୍ୟତୀତ ଅନ୍ୟ କିଛି ଦୁଃଖର କାରଣ ମୋତେ ଦେଖାଯାଉନାହିଁ । ଆଉ କେତେ ସମୟ ତୁମେ କଥା ଲୁଚାଇ ପାରିବ ? ବର୍ତ୍ତମାନ ସବୁ ସତ ଖୋଲି କରି କୁହ । ମୋତେ କୁହ, କେଉଁ ଅପରାଧରୁ ଶ୍ୟାମସୁନ୍ଦର ଆମ୍ଭମାନଙ୍କୁ ଅନାଥ ଓ ନିରାଶ୍ରୟ କରି ପୃଥିବୀରୁ ଅନ୍ତର୍ହିତ ହୋଇଗଲେ ? ସେ ଏକା ଯାଇଛନ୍ତି ନା ତାଙ୍କ ସହିତ ଅନ୍ୟ କେହି ଯାଇଛନ୍ତି । ତାଙ୍କୁ ଛାଡ଼ି ଯାଦବମାନେ କିପରି ଜୀବନଧାରଣ କରିଛନ୍ତି ? ଭାଇ ଅର୍ଜୁନ ! ଯାହା ହେଉ ପଛକେ ଘଟଣା କ'ଣ କୁହ ।

ଏହା କହୁଁ କହୁଁ ଧର୍ମରାଜ କାନ୍ଦିବାକୁ ଲାଗିଲେ । ଅର୍ଜୁନ ମଧ ଖୁବ୍ ଉଚ୍ଚସ୍ୱରରେ କାନ୍ଦିଲେ । ଅନ୍ୟ ପାଣ୍ଡବ ଓ ସଭାସଦ୍‌ଗଣ ଶୋକସନ୍ତପ୍ତ ହୋଇ ଘନ ଘନ ଦୀର୍ଘଶ୍ୱାସ ତ୍ୟାଗକରି ଉଚ୍ଚସ୍ୱରରେ ବିଳାପ କରିବାକୁ ଲାଗିଲେ ।

### ଛପପୟ

ଅରଜୁନ ବୋଲେ ନହିଁ, ବହୁତ ବିଲପେ ପଛିତାଏଁ ।
ଧରମରାଜ ପୁଚକାରୀ ପ୍ୟାର କରି ଧୀର ବନ୍ଧାଏଁ ॥
ଦୁଃଖକୋ କାରନ ବନ୍ଧୁ ! ଶୋକ ତଜି ମୋଇ ବତାଓ ।
ଯଦୁନନ୍ଦନ କେ ସଭୀ ସୁଖଦ ସମ୍ବାଦ ସୁନାଓ
ବଚନ କଠିନ କାହୁକହେ ଅଥବା ଅପମାନିତ ଭୟେ ॥
ୟା ତନୁ ତଜି କେ ଭୁବନପତି ନିତ୍ୟ ଧାମ
ତୋ ନହିଁ ଗୟେ ॥

Digitized by srujanika@gmail.com

# ଅର୍ଜ୍ଜୁନଙ୍କ ଦ୍ୱାରା ଶ୍ରୀକୃଷ୍ଣ କୃପା ବର୍ଣ୍ଣନା

ଯତ୍ସଂଶ୍ରୟାଦ୍ ଦ୍ରୁପଦଗେହ ମୁପାଗତାନାଂ
ରାଜ୍ଞାଂ ସ୍ୱୟମ୍ବର ମୁଖେ ସ୍ମର ଦୁର୍ମଦାନାମ୍ ।
ତେଜୋ ହୃତଂ ଖଲୁ ଭୟାଭିହତଶ୍ଚ ମତ୍ସ୍ୟଃ
ସଜ୍ଜୀକୃତେନ ଧନୁଷାଧିଗତା ଚ କୃଷ୍ଣା ॥

( ଭାଗବତ ୧. ୧୫. ୬ )

### ଛପପଯ୍ୟ

ଦୁଃଖ କୋ ବାର୍‌ପାର ନ ଅର୍ଜ୍ଜୁନ କହତ୍ ପାଓଁ ।
କୃଷ୍ଣ କୃପା କୁଁ ସୁମିର, ନୟନତେଁ ନୀର ବହାଓଁ ॥
ନାଥ ସ୍ୱାରଥୀ ସଦା ସୁହୃଦ ସମ୍ବନ୍ଧି ବନ୍‌ଠକେ ।
ନିତ ନିତ ନେହ ବଢ଼ାଇ, ଛାଁଡ଼ି ଗମନେ ଛଳ କର୍‌କେ
ହାୟ !. ପ୍ରଭୋ ! ଅବ ଜାୟଁ କିତ
ଇତ ଉତ ନହୀଁ ସନ୍ତୋଷ ସୁଖ
ଅଶ୍ରୁ ପୌଁଛି ବୋଲେ ବଚନ
ତାତ ବାତ ତେ ବଢ଼େ୍ୟା ଦୁଖ ॥

ଦୁଃଖରେ ହୃଦୟ ଯେତେବେଳେ ପୂର୍ଣ୍ଣଯାଏ ସେତେବେଳେ ମୁହଁରୁ ଆଉ କଥା ବାହାରେ ନାହିଁ । କଥା ଅଟକିଯାଏ ଓ ହୃଦୟ ବିଦୀର୍ଣ୍ଣ ହୋଇଯାଏ । ଯଥେଷ୍ଟ ଅଶ୍ରୁପାତ, ଇଷ୍ଟ ବ୍ୟକ୍ତି ସମ୍ବନ୍ଧୀୟ ଆଲୋଚନା ଓ ତା'ର ଯଶୋଗାନ ଦ୍ୱାରା ଶୋକାବେଗ ଊଣା ହୁଏ ଏବଂ ଚିତ୍ତ ଶାନ୍ତ ହୁଏ । ଯେଥିପାଇଁ ସାନ୍ତ୍ୱନା ଦେବାକୁ ଆସିଥିବା ମୃତବ୍ୟକ୍ତିର ଗୁଣଗାନ କରି କହନ୍ତି—ତାଙ୍କ ବିଷୟରେ

Digitized by srujanika@gmail.com

କ'ଣ କହିବି । ସେ ଜଣେ ସାଧାରଣ ଲୋକ ନ ଥିଲେ, ସେ ଥିଲେ ମର୍ତ୍ତ୍ୟର ଦେବତା । ମୋ ପାଇଁ ସେ ଏହା କରିଥିଲେ, ତାହା କରିଥିଲେ ଇତ୍ୟାଦି । ଏହିଭଳି କହି ଶୋକସନ୍ତପ୍ତ ବ୍ୟକ୍ତି ଓ ତା'ର ପରିବାରକୁ ସାନ୍ତ୍ୱନା ଦେଇଥାନ୍ତି । ପରୋକ୍ଷ ପୁରୁଷର ଆଲୋଚନାବେଳେ ଚିତ୍ତ ତଦାକାର ହୋଇଯାଏ । ସେତେବେଳେ ବିୟୋଗ ଦୁଃଖ ହ୍ରାସ ପାଏ । ସେଥିପାଇଁ ଶାସ୍ତ୍ରକାରମାନେ ବାରମ୍ବାର ଭଗବତ୍ ଯଶୋଗୁଣଗାନ, ନାମଗୁଣ କୀର୍ତ୍ତନ ବିଷୟରେ ଅଧିକ ଦୃଷ୍ଟି ଦେବାକୁ ଉପଦେଶ ଦେଇ କହିଛନ୍ତି, ଲୀଳାକଥା ଶ୍ରବଣ ପଠନଦ୍ୱାରା ରସାସ୍ୱାଦନ ସହିତ ଭଗବତ୍ ଚରଣରେ ସ୍ନେହ ଅଭିବୃଦ୍ଧିର ଅନ୍ୟ କୌଣସି ସରଳ ଉପାୟ ନାହିଁ । ପରସ୍ପର ତାଙ୍କର ଚର୍ଚ୍ଚା ଓ ତାଙ୍କର ଗୁଣଗାନଦ୍ୱାରା ଆନନ୍ଦ ଅନୁଭବ କରିବା ଉଚିତ ।

ଧର୍ମରାଜ ଯେତେବେଳେ ବାରମ୍ବାର ନିଜର ପ୍ରଶ୍ନ ଦୋହରାଇ ନାନା ପ୍ରକାର କଳ୍ପିତ ଆଶଙ୍କା ବିଷୟ କହୁଥିଲେ, ସେତେବେଳେ ଅର୍ଜ୍ଜୁନଙ୍କର ଦୁଃଖ ବଢ଼ିଯାଉଥିଲା । ସେ ଲମ୍ବା ଲମ୍ବା ଦୀର୍ଘଶ୍ୱାସ ଛାଡ଼ୁଥିଲେ ଓ ଦୁଃଖରେ ଅଧିକ ଅଧୀର ହୋଇଉଠୁଥିଲେ । ତାଙ୍କ ମୁଖ ମଳିନ, ହୃଦୟ କମଳ ଶୁଷ୍କ ଓ ଶରୀର କାନ୍ତିହୀନ ହୋଇଯାଇଥିଲା । ସେ ଅନ୍ତର୍ଯ୍ୟାମୀ ପ୍ରଭୁଙ୍କ ଧ୍ୟାନରେ ମଗ୍ନ ହୋଇ ରହିଥିବାରୁ ବାହ୍ୟ ଜଗତ୍‌ର ଜ୍ଞାନ ରହୁ ନ ଥିଲା । ସେ ଅବସ୍ଥାରେ ଅର୍ଜ୍ଜୁନ ଧର୍ମରାଜଙ୍କ ପ୍ରଶ୍ନର ଉତ୍ତର କପରି ଦେଇପାରିଥାନ୍ତେ ।

ଶୋକାବେଗ କିଛିମାତ୍ରାରେ କମିଯିବା ପରେ ଭଗବତ ଧ୍ୟାନରୁ ନିଜକୁ ମୁକୁଳାଇ ଆଣି ଅର୍ଜ୍ଜୁନ ଦୁଇ ହାତରେ ନିଜର ଅଶ୍ରୁବିନ୍ଦୁ ପୋଛିବାକୁ ଲାଗିଲେ । ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ହେବାର କାରଣ ଅତି ଉତ୍କଣ୍ଠାର ସହିତ କହିବାକୁ ଇଚ୍ଛା କରୁଥିଲେ, ମାତ୍ର ସେ କିଛି କହିବାକୁ ସମର୍ଥ ହୋଇପାରୁ ନ ଥିଲେ । ଯେତେବେଳେ ସେ ଶ୍ରୀକୃଷ୍ଣଙ୍କ ମଧୁର ମନୋହର ଶ୍ୟାମସୁନ୍ଦର ମୂର୍ତ୍ତିର ସ୍ମରଣ କରୁଥିଲେ ସେତେବେଳେ ତାଙ୍କ ହୃଦୟ ବ୍ୟାକୁଳ ଆବେଗରେ କଣ୍ଠ ଗଦ୍‌ଗଦ୍ ହୋଇ ଉଠୁଥିଲା । ବାରମ୍ବାର ଭଗବାନ୍‌ଙ୍କ ମିତ୍ରତା ମନେ ପଡ଼ିଯାଉଥିଲା । ବହୁ ସମୟ ଏହି ଅବସ୍ଥାରେ କଟିଯିବା ପରେ ଅତି କଷ୍ଟରେ ଧୈର୍ଯ୍ୟ ଧାରଣପୂର୍ବକ ଗଦ୍‌ଗଦ କଣ୍ଠରେ ସେ ଯୁଧିଷ୍ଠିରଙ୍କୁ କହିଲେ—ରାଜନ୍ ! ଭଗବାନ୍ ମୋ ସହିତ ବିଶ୍ୱାସଘାତକତା କଲେ ।

ଧର୍ମରାଜ ବିସ୍ମିତ ହୋଇ ସମ୍ଭ୍ରମର ସହିତ କହିଲେ—ଭାଇ ଅର୍ଜ୍ଜୁନ ! ସବୁ କଥା ବିସ୍ତୃତ ଭାବେ ଲୁହ, କ'ଣ ହେଲା ? ଭଗବାନ୍ ତ ଅତୀବ ଭକ୍ତବତ୍ସଳ, ସେ କ'ଣ କଲେ ? ଅର୍ଜ୍ଜୁନ କାନ୍ଦି କାନ୍ଦି କହିଲେ—କିଏ କହୁଛି ଭକ୍ତବତ୍ସଳ

Digitized by srujanika@gmail.com

ବୋଲ୍ । ଯଦି ଭକ୍ତବତ୍ସଳ ହୋଇଥାନ୍ତେ, ତେବେ ମୋ ଭଳି ପାପୀକୁ ଏଭଳି କାହିଁ ତା ପାଇଁ ଛାଡ଼ି ଦେଇ ସେ ନିଜେ ଏକା ଏକା ସ୍ୱଧାମକୁ ଚାଲିଗଲେ କିମିତି ? ଏହା ଶୁଣିବା ମାତ୍ରେ ଧର୍ମରାଜ ଚିତ୍‌ପଟାଙ୍ଗ ହୋଇ ପଡ଼ିଗଲେ, କହିଲେ, "ସତରେ ହେ ଶ୍ୟାମସୁନ୍ଦର ! ତୁମେ ଏ ଧରାଧାମ ତ୍ୟାଗକରି ଚାଲିଗଲ ? ଧର୍ମରାଜ ତଳେ ପଡ଼ିଯିବାର ଦେଖି ମନ୍ତ୍ରୀ ଓ ପାରିଷଦଗଣ ଅତି ସାବଧାନତାର ସହିତ ତାଙ୍କୁ ଉଠାଇ ପୁଣି ସିଂହାସନରେ ବସାଇଦେଲେ । ମହାରାଜ ଯୁଧିଷ୍ଠିର ପିଲାଙ୍କ ଭଳି କାନ୍ଦି କାନ୍ଦି କହିଲେ—ଅର୍ଜୁନ ! ତୁମେ ଶ୍ୟାମସୁନ୍ଦରଙ୍କର ସମସ୍ତ କଥା ମୋତେ କୁହ । ତାଙ୍କର ପବିତ୍ର କାହାଣୀ କହି ମୋର ସନ୍ତପ୍ତ ହୃଦୟକୁ ଶାନ୍ତ ଶୀତଳ କର । ହାୟ, ମୋ ହୃଦୟ ବଜ୍ରଠାରୁ ମଧ୍ୟ କଠିନ । ଶ୍ୟାମସୁନ୍ଦରଙ୍କ ବିୟୋଗବାର୍ତ୍ତା ଶୁଣି ମଧ୍ୟ ଏ ଛାତି ଫାଟି ନ ଯାଇ ଏ ଯାଏ ରହିଛି । ଏହା ଖଣ୍ଡ ଖଣ୍ଡ ହୋଇଯାଉ ନାହିଁ କିପରି ? ଆରେ ଅର୍ଜୁନ ! ମହାଭାରତ ଯୁଦ୍ଧରେ ତୋର ଯେଉଁ ବଳ ଥିଲା ତାହା କୁଆଡ଼େ ଗଲା । ତୁ ସେଠାରେ ଥାଇ ମଧ୍ୟ କିଛି ବି କରିପାରିଲୁ ନାହିଁ ।"

ଅଶ୍ରୁଳ ନୟନରେ ଅର୍ଜୁନ ଗଦ୍‌ଗଦ ହୋଇ କହିଲେ—ମୋର ବଳ କେଉଁଠି ଥିଲା ? ସେ ସବୁ ତ ତାଙ୍କରି କରୁଣା । ସେହି ମୋ ଦେହରେ ପ୍ରବିଷ୍ଟ ହୋଇ ସବୁକାର୍ଯ୍ୟ କରୁଥିଲେ । ତାଙ୍କ ସହିତ ମୋର ସମସ୍ତ ତେଜ ନିର୍ବାତ ହୋଇ ଯାଇଛି । ମୁଁ ନିସ୍ତେଜ ହୋଇଯାଇଛି । ମୋର ଏବେ ବଳ ଓ ପରାକ୍ରମ ବୋଲି ଆଉ କିଛି ନାହିଁ । ମୁଁ ବର୍ତ୍ତମାନ ମୃତବ୍ୟକ୍ତି ସହିତ ସମାନ । କେବଳ ମୁଁ ନୁହେଁ, ଶ୍ୟାମସୁନ୍ଦରଙ୍କ ବିନା ସମସ୍ତ ଜଗତ ଶବ ସହିତ ସମାନ । ସମସ୍ତେ ନିର୍ଜୀବ ଓ ସ୍ଥାବର । ଆମଠାରେ ତାଙ୍କର କେତେ ସ୍ନେହ ଓ ପ୍ରେମ ଥିଲା । ସର୍ବପ୍ରଥମ ଦ୍ରୌପଦୀଙ୍କ ସ୍ୱୟମ୍ବରରେ ମୁଁ ପୀତାମ୍ବର ବାସୁଦେବଙ୍କ ଦର୍ଶନ ଲାଭ କରିଥିଲି । ସେ ବଳଦେବଙ୍କ ସହିତ ରାଜନ୍ୟମଣ୍ଡଳୀରେ ତାରାଗଣଙ୍କ ମଧ୍ୟରେ ତାରାପତି ଚନ୍ଦ୍ରଙ୍କ ଭଳି ଶୋଭା ପାଉଥିଲେ । ସେ ବ୍ରାହ୍ମଣ ବେଶରେ ଲୁଚି ରହିଥିଲେ । ତାଙ୍କର ଦୃଷ୍ଟି ଅତ୍ୟନ୍ତ ସ୍ନେହପୂର୍ଣ୍ଣ ଥିଲା । ସେ ଦୃଷ୍ଟିରେ ଥିଲା ଐନ୍ଦ୍ରଜାଲିକର ଆକର୍ଷଣ । ମୁଁ ଏକାଥରକେ ସେହିଆଡ଼କୁ ଆକୃଷ୍ଟ ହୋଇଯାଇଥିଲି ।

ତ୍ରୈଲୋକ୍ୟ ସୁନ୍ଦରୀ ଦ୍ରୌପଦୀଙ୍କ ପାଣି ଗ୍ରହଣ ନିମିତ୍ତ ବହୁ ବଡ଼ ବଡ଼ ବଳବାନ୍ ରାଜା ପ୍ରାଣପଣ ପ୍ରଯତ୍ନ କରୁଥିଲେ । ଚନ୍ଦ୍ର ଉପରସ୍ଥିତ ମତ୍ସ୍ୟକୁ ଲକ୍ଷ୍ୟ ଭେଦ କରିବା ନିମିତ୍ତ ଏକ ଆରେକଠୁ ବ୍ୟାପୃତ ହେଉଥିଲେ । ସମସ୍ତଙ୍କ ଇଚ୍ଛା ଥିଲା, ଅଯୋନିଜା ଦ୍ରୌପଦୀ ତାଙ୍କୁ ହିଁ ମିଳିଯିବେ । ଦ୍ରୌପଦୀଙ୍କ ତ୍ରିଭୁବନ ସୁନ୍ଦର ରୂପକୁ ନିରୀକ୍ଷଣ କରି ସମସ୍ତଙ୍କ ଚିତ୍ତ ଚଞ୍ଚଳ ହେଉଥିଲା । ସମସ୍ତେ ମଦନ ବାଣାନଳରେ ଦଗ୍‌ଧ ହେଉଥିଲେ । ଶ୍ରୀକୃଷ୍ଣଙ୍କ ପକ୍ଷରେ ସେହି ଲକ୍ଷ୍ୟଭେଦ

Digitized by srujanika@gmail.com

କରିବା କେଉଁ ବଡ଼ କଥା ଥିଲା । ରାଜା ବୃହତ୍ସେନଙ୍କ କନ୍ୟା ସୁଲକ୍ଷଣାର ବିବାହରେ ଏହାଠାରୁ ବଳି କଠିନ ଲକ୍ଷ୍ୟଭେଦର ବ୍ୟବସ୍ଥା କରାଯାଇଥିଲା । ଦ୍ରୁପଦଙ୍କ ସଭାର ଲକ୍ଷ୍ୟ ତ ବାହାରୁ ଦେଖାଯାଉଥିଲା; କିନ୍ତୁ ବୃହତ୍ସେନଙ୍କ ଲକ୍ଷ୍ୟ ବାହାରୁ ଆବୃତ ରଖାଯାଇଥିଲା । ଚତୁର୍ଦ୍ଦିଗ ଧୂମ ପରିପୂର୍ଣ୍ଣ ହୋଇଥିଲା । ଲକ୍ଷ୍ୟର ଛାୟାଟା କେବଳ ଜଳରେ ପଡ଼ୁଥିଲା । ସେହି ଛାୟାକୁ ଦେଖି ଲକ୍ଷ୍ୟଭେଦ କରିବାର ସର୍ତ୍ତ ଥିଲା । ଲକ୍ଷଣା ସ୍ୱୟମ୍ବରରେ ମଧ୍ୟ ସବୁ ରାଜା ଉପସ୍ଥିତ ଥିଲେ । ମୁଁ ମଧ୍ୟ ଥିଲି । କେହି ସେ ଲକ୍ଷ୍ୟଭେଦ କରିପାରିଲେ ନାହିଁ । ମୁଁ ଯାଇ ଶର ସନ୍ଧାନ କଲି; କିନ୍ତୁ ମୋର ବାଣ ଲକ୍ଷ୍ୟକୁ କେବଳ ଛୁଇଁ ଦେଇ ବାହାରକୁ ଚାଲିଗଲା । ତା'ପରେ ଭଗବାନ୍ ବାସୁଦେବ ଉଠିଲେ ଏବଂ ଆଖିପିଛୁଳାକେ ସେହି ଛାଇକୁ ଚାହିଁ ଲକ୍ଷ୍ୟକରି ବାଣରେ କାଟି ଫିଙ୍ଗିଦେଲେ । ସେଥିପାଇଁ ସେ ଆଦୌ ଆୟାସ କରି ନ ଥିଲେ । ତେଣୁ ତାଙ୍କ ପକ୍ଷରେ ଦ୍ରୁପଦ ରାଜାଙ୍କ ସଭାରେ ଥିବା ଲକ୍ଷ୍ୟଭେଦ କରିବା କେଉଁ ବଡ଼ ବିଚିତ୍ର ଥିଲା; କିନ୍ତୁ ମନେ ମନେ ସେ ଏହି ଲକ୍ଷ୍ୟ ଭେଦ କରିବାକୁ ଚାହିଁ ନ ଥିଲେ । ସେ ତ୍ରୈଲୋକ୍ୟମୋହିନୀ ଦ୍ରୌପଦୀଙ୍କୁ ଆମ୍ଭମାନଙ୍କ ପତ୍ନୀଭାବେ ଦେଖିବାକୁ ଚାହିଁଥିଲେ । ସେ ଆମ୍ଭମାନଙ୍କୁ ବିଜୟୀ କରିବା ନିମିତ୍ତ ଅଣ୍ଟା ବାନ୍ଧିଥିଲେ । ସେ ବାରମ୍ବାର ମୋତେ ଚାହୁଁଥିଲେ ଏବଂ ବଳଦେବଙ୍କ କାନରେ କ'ଣ କହୁଥିଲେ । ମୁଁ ସେତେବେଳେ ଜାଣିଥିଲି ଯେ, ସେ ମୋର ମାମୁଁ ବସୁଦେବଙ୍କ ପୁତ୍ର ଭଗବାନ୍ ବାସୁଦେବ । ମୁଁ ସେହି ପରିପୂର୍ଣ୍ଣ ସଭାରେ ନିଜର ସର୍ବସ୍ୱ ତାଙ୍କ ଚରଣତଳେ ସମର୍ପି ଦେଇଥିଲି ।

ସମସ୍ତ ରାଜା ଲକ୍ଷ୍ୟ ଭେଦରେ ଅସଫଳ ହେବାପରେ ବ୍ରାହ୍ମଣମାନଙ୍କ ଗହଣରେ ବ୍ରାହ୍ମଣ ରୂପ ଧାରଣକରି ବସିଥିବା ମୋତେ ସମସ୍ତେ ପ୍ରେରଣା ବଳରେ ଉଠାଇଲେ । ମୁଁ ମନେ ମନେ ଶ୍ୟାମସୁନ୍ଦରଙ୍କ ଚରଣରେ ବିନମ୍ର ପ୍ରଣାମ ଜଣାଇଲି । ସେ କରୁଣାପୂର୍ଣ୍ଣ ଦୃଷ୍ଟିରେ ମୋତେ ଚାହିଁଲେ ଏବଂ ହୃଦୟରେ ମୋର ମଙ୍ଗଳ କାମନା କଲେ । ମୋ ଭଳି ଜଣେ ବ୍ରାହ୍ମଣର ଲକ୍ଷ୍ୟଭେଦ ନିମିତ୍ତ ଦୁଃସାହସ ଦେଖି ରାଜା ଓ ରାଜକୁମାରଗଣ ବିସ୍ମିତ ହୋଇ-ଯାଇଥିଲେ । ସେମାନେ ଭାବୁଥିଲେ ଯେଉଁ ଲକ୍ଷ୍ୟକୁ ଏଡ଼େ ବଡ଼ ବଡ଼ ରାଜା ମହାରାଜା ଭେଦକରି ପାରିଲେନାହିଁ, ତାହା ଜଣେ ଅନାଥ, ଭିକ୍ଷୁକ ବେଦାଧ୍ୟାୟୀ ବ୍ରାହ୍ମଣ କିପରି ପାରିବ ? ମୁଁ ଶ୍ରୀକୃଷ୍ଣଙ୍କ କୃପାବଳରେ କୌଣସି ବିଷୟ ପ୍ରତି ଦୃଷ୍ଟି ନ ଦେଇ ସମସ୍ତେ ଚାହୁଁ ଚାହୁଁ ଲକ୍ଷ୍ୟଭେଦ କଲି ଓ ଦ୍ରୌପଦୀଙ୍କୁ ନେଇ ସଭାମଣ୍ଡପର ବାହାରକୁ ଆସିଲି ।

ଆପଣ ସେତେବେଳେ ଚାଲି ଆସିଥିଲେ । ସମସ୍ତେ ମୋତେ ବିଜୟୀ ଦେଖି ମୋ ସହିତ ଯୁଦ୍ଧ କରିବାକୁ ଆଗେଇ ଆସିଲେ । ଭୀମସେନ ହଠାତ୍

Digitized by srujanika@gmail.com

ଗଛଟିଏ ଉପାଡ଼ି ସେଥିରେ ସେମାନଙ୍କୁ ବାଡ଼େଇବାରେ ଲାଗିଲେ । ଏସବୁ କାଣ୍ଡ ଦେଖି ଶ୍ରୀକୃଷ୍ଣ ଜମନ୍ତ୍ର ଛଳରେ ମୋର ଆଡ଼କୁ ଚାହୁଁଥିଲେ ଏବଂ ଅତି ଉଚ୍ଚ ଭାବେ ବଳଦେବଙ୍କୁ ମୋ ପରିଚୟ ଦେଉଥିଲେ । ଶ୍ୱେତବସ୍ତ୍ର ପରିହିତା ଅଧୋମୁଖୀ ଦ୍ରୌପଦୀଙ୍କୁ ମୋ ସହିତ ଯାଉଥିବାର ଓ ମୋ ବେକରେ ଦ୍ରୌପଦୀଙ୍କ ପ୍ରଦତ୍ତ ସୁନ୍ଦରମାଳାକୁ ଦେଖି ସେ ଆନନ୍ଦରେ ନାଚି ଯାଉଥିଲେ । ସେ ନିଜ ମେଘ ନୟନରେ ଆମ ଦୁହିଁଙ୍କୁ ନିରୀକ୍ଷଣ କରୁଥିଲେ ।

ରାଜାମାନଙ୍କୁ ପରାସ୍ତ କରି ଆମେ ଦ୍ରୌପଦୀଙ୍କୁ ସାଙ୍ଗରେ ନେଇ ନିଜର ବାସସ୍ଥାନ କୁମ୍ଭକାର ଘରକୁ ଆସିଲୁ । ସେତେବେଳକୁ ରାତି ହୋଇଯାଇଥିଲା । ମୁଁ ଶ୍ୟାମସୁନ୍ଦରଙ୍କର ମୋହନମୂରତି ମନେ ମନେ ଚିନ୍ତା କରୁଥାଏଁ । ଏହି ସମୟରେ କମଳମାଳା ପରିହିତ ପୀତାମ୍ବରଧାରୀ ଦେବକୀନନ୍ଦନ, ବଳଦେବଙ୍କ ସହିତ ଆସି ଆମ ପାଖରେ ପହଞ୍ଚିଲେ । ଆସି ପହଞ୍ଚିବା ମାତ୍ରେ ସେ ଦୁହେଁ ମା' କୁନ୍ତୀଙ୍କ ପାଦସ୍ପର୍ଶ କଲେ ଆଉ ଆପଣଙ୍କ ପାଦତଳେ ବସି କହିବାକୁ ଲାଗିଲେ—ରାଜନ୍ ! ଆପଣ ମୋତେ ଜାଣନ୍ତି ନାହିଁ । ପୂର୍ବରୁ ମୋତେ ଆପଣ ଦେଖିନାହାଁନ୍ତି । ମୁଁ ବସୁଦେବଙ୍କ ପୁତ୍ର ଶ୍ରୀକୃଷ୍ଣ, ଆପଣଙ୍କର ଶ୍ରେଷ୍ଠ ଭାଇ । ଆପଣ ତାଙ୍କୁ ସେତେବେଳେ ଅତି ଆଦରରେ କୁଣ୍ଢାଇ ପକାଇଲେ । ସେ ମଝି ପିଲାଙ୍କ ଭଳି ଆପଣଙ୍କ ଛାତିରେ ଲାଗି ରହିଲେ । ତା'ପରେ ମୁଁ ଯାଇ ତାଙ୍କୁ ପ୍ରଣାମ କଲି । ସେ ନିଜର ବିଶାଳ ବାହୁରେ ଜାବୁଡ଼ି ଧରି, ଛାତିରେ ଛାତିକୁ ଲଗାଇ ହସି ହସି ଦ୍ରୌପଦୀଙ୍କୁ ଲକ୍ଷ୍ୟ କରି କହିଲେ—ଭାଇ, ବୋହୂଟି ତ କାଳୀ; କିନ୍ତୁ ବଡ଼ ଗୁଣବତୀ, ଉଭୟଙ୍କ ଦାମ୍ପତ୍ୟ ଜୀବନ ସୁଖମୟ ହେଉ । ପ୍ରଥମ ମିଳନରେ ଏତେ ମମତା, ବାତ୍ସଲ୍ୟ ତ ପୂର୍ବରୁ ଅନ୍ୟ କେଉଁଠି ଦେଖି ନ ଥିଲି । ତା'ପରେ ଧୀରେ ଧୀରେ ସେ କହିଲେ, ଏବେ ଆମେ ଯାଉଛୁ, ବର୍ତ୍ତମାନ ଆପଣମାନଙ୍କ ଆଗରେ ଆଉ ଅଧିକ ସମୟ ରହିବା ଉଚିତ ନୁହେଁ । ଅଧିକ କାଳ ଅପେକ୍ଷା କଲେ ଆମ ସମସ୍ତଙ୍କ ପାଇଁ ବିପଦଜନକ ଅବସ୍ଥା ସୃଷ୍ଟି ହେବ ।

ହେ ରାଜନ୍ ! ଚରାଚର ଜଗତର ତ୍ରିଭୁବନର କାହା ପ୍ରତି ଭୟ ଥିଲା । ସେ ତ ମାନବଲୀଳା କରୁଥିଲେ । ନିଜର ଭକ୍ତବତ୍ସଳତା ଦେଖାଉଥିଲେ । ଆତ୍ମର ସମ୍ବନ୍ଧୀୟ ବୋଲି ପରିଚୟ ଦେଇଥିଲେ । ତାଙ୍କର ଦୟାରୁ ଆମେ କୃଷ୍ଣାଙ୍କୁ ପାଇଥିଲୁ । ମହାରାଜ ଦ୍ରୁପଦଙ୍କ ଦୟାରୁ ଆମେ ଆମର ପୈତୃକ ରାଜ୍ୟ ଫେରିପାଇଥିଲୁ । ଭଗବାନ୍‌ଙ୍କ ଦୟା ନ ଥିଲେ, ଆମକୁ ରାଜ୍ୟ କିଏ ଦେଇଥାନ୍ତା । ଆମେ ଭିକ୍ଷାକରି ବଣ ଜଙ୍ଗଲରେ ବୁଲୁଥିଲେ; କିନ୍ତୁ ସେହି ସର୍ବେଶ୍ୱର ଆମକୁ ଛତ୍ରପତି ସମ୍ରାଟ କରିଲେ । ଆମେ ଇନ୍ଦ୍ରପ୍ରସ୍ଥରେ ଆଜି ଦେବତାମାନଙ୍କ ଭଳି ସୁଖଭୋଗରେ ରହିଛୁ ।

Digitized by srujanika@gmail.com

ଦ୍ରୌପଦୀ ଓ ଆପଣଙ୍କ ଏକାନ୍ତ ଭବନରେ, ବିପ୍ର ଓ ଗାଈଙ୍କ ରକ୍ଷା ନିମିତ୍ତ ଅସ୍ତ୍ର ଧାରଣ କରି ନିୟମଭଙ୍ଗ ହେତୁ ମୋତେ ବାର ବର୍ଷ ବନବାସ କରିବାକୁ ପଡ଼ିଥିଲା । ସେହି ସମୟରେ ଭଗବାନ୍‌ଙ୍କ ସାନ ଭଉଣୀ ସୁଭଦ୍ରାଙ୍କ ସହିତ ମୋର ମିଳନ ହେଲା । ତାହା ସେ ଜାଣିଥିଲେ । ତାଙ୍କ ବଡ଼ଭାଇ ବଳଭଦ୍ର ଏ ବିଷୟରେ ସ୍ୱୀକୃତ ଦେବେନାହିଁ ବୋଲି ମଧ୍ୟ ସେ ଜାଣିଥିଲେ । ବଳଭଦ୍ର ଦୁର୍ଯ୍ୟୋଧନଙ୍କ ସହିତ ସୁଭଦ୍ରାଙ୍କୁ ବିବାହ ଦେବା ନିମିତ୍ତ ସ୍ଥିର କରିଥିଲେ; କିନ୍ତୁ ଶରଣାଗତ ବତ୍ସଳ ଯଦୁନନ୍ଦନ ମୋତେ କହିଲେ-– ତୁମେ ମୋ ଭଉଣୀ ସୁଭଦ୍ରାଙ୍କୁ ହରଣକରି ନେଇଯାଅ । କେବଳ ସେତିକି ନୁହେଁ, ତାଙ୍କ ରଥ ମଧ୍ୟ ମୋତେ ଦେଇଥିଲେ । ତାଙ୍କ ଦୟାର ଅନ୍ତ ନାହିଁ । ପ୍ରତ୍ୟେକ କଥାରେ ସେ ମୋର ମାନ ରକ୍ଷା କରୁଥିଲେ । ଯାହା ମୁଁ କହେଁ ତାହାକୁ ସେ ହସି ହସି ସ୍ୱୀକୃତ ଦିଅନ୍ତି । ମୋ କଥାରେ କେବେ ସେ 'ନା' ବୋଲି କହିବାର ଜାଣିନ । ହାୟ, ମୁଁ କ'ଣ ଜାଣିଥିଲି, ସେ ମୋ ସହିତ ଏପରି ଛଳନା କରିବେ ? ମୋତେ ଏଭଳି କନ୍ଦାଇ ସେ ନିଜ ଧାମକୁ ଚାଲିଯିବେ । ଏବେ ମଧ୍ୟ ମୁଁ ଯେତେବେଳେ ଯାଇଥିଲି, ମୋ ସହିତ ବହୁ ପୁରୁଣା କଥାବାର୍ତ୍ତା ହେଉଥିଲେ । କେତେ ସ୍ନେହରେ ମୋତେ ସେ ରଖିଥିଲେ । ତାଙ୍କର ପ୍ରତି କଥା ମୋର ଏବେ ମନେ ପଡ଼ୁଛି । ହୃଦୟ ମୋର ଫାଟି ଯାଉଛି । ହେ ରାଜନ୍ ! ଏବେ ଆଉ ଏ ସଂସାରରେ ରହିବା ଉଚିତ ନୁହେଁ । ଏହା କହି ଅର୍ଜୁନ କାନ୍ଦିବାକୁ ଲାଗିଲେ ।

## ଛପ୍‌ପୟ

ଜିନକୀ କୃପା କଟାକ୍ଷ ପାଇ ହମ ଭୟେ ସୁଖାରେ ।
ରାଜନ୍ କୈସେ କହୁଁ ଶ୍ୟାମ ନିଜଧାମ ପଧାରେ ॥
ଜିନକେ ପ୍ରେମ ପ୍ରସାଦ ପ୍ରିୟା କୃଷ୍ଣାର୍ପା ପାଈ ।
ଯନ୍ତ୍ର ମତ୍ସ୍ୟକୁଁ ବେଧି ଦ୍ରୁପଦପୁର ଲହୀ ବଡ଼ାଈ ॥
କାମମତ୍ତ ସବ ନୃପନି କେ ସିର ପର ପୈର ଜମାଇକେଁ ।
ଦ୍ରୁପଦସୁତା ହମନେ ବରୀ ଗୟେ ଅନାଥ ବନାଇକେଁ ।



Digitized by srujanika@gmail.com

# ଖାଣ୍ଡବ ଦହନ ଓ ଶ୍ରୀକୃଷ୍ଣଙ୍କ କୃପା

ଯତ୍ସନ୍ନିଧାବହମୁ ଖାଣ୍ଡବ ମଗ୍ନୟେଽଦା
ମିନ୍ଦ୍ରଂଚ ସାମରଗଣଂ ତରସା ବିଜିତ୍ୟ ।
ଲବ୍ଧା ସଭା ମୟକୃତାଦ୍ଭୁତଶିଲ୍ପମାୟା
ଦିଗଭ୍ୟୋଽହରନ୍ନୃପତୟୋ ବଳିମଧ୍ୱରେ ତେ ॥
( ଭାଗବତ ୧ । ୧୫ । ୮ )

## ଛପ୍‌ପୟ

ଜିନକୀ ଲହିକେ କୃପା ଅକାରଜ କାରଜ କୀହ୍ନେ ।
ବିପ୍ରବେଶ ମହ ବହ୍ନି ଆଇ ବର ମାଂଗେ ଦୀହ୍ନେ ।
ସନ୍ନିଧି ସମର୍ଥୀ ଶ୍ୟାମ, ଭୋଜ୍ୟ ବହ୍ନି ଖାଣ୍ଡବ ଦୀହ୍ନୋ ।
ଅତି ପ୍ରଚଣ୍ଡ ଧରି ରୂପ ଦାହ ବନ ସବଟେ କୀହ୍ନୋ ॥
ଦେବରାଜ ରକ୍ଷା କରୀ କିନ୍ତୁ ପରାଜିତ ଓ୍ୱେ ଭୟେ ।
ଧରାଧାମ ତଜ ଧାମ ନିଜ ଅଜ ଅଚ୍ୟୁତ ଅବ ଚଲି ଗୟେ ॥

ଧର୍ମରାଜଙ୍କ ଦୁଃଖର ସୀମା ରହିଲା ନାହିଁ । ଜଳରୁ ବାହାର ଆସିଥିବା ମାଛ ସୂର୍ଯ୍ୟତାପରେ ଛଟପଟ ହେଲା ଭଳି ଧର୍ମରାଜ ଶ୍ରୀକୃଷ୍ଣଙ୍କ ବିରହରେ ଛଟପଟ ହେଉଥିଲେ । ଅର୍ଜୁନ ନିରବ ହେବା ପରେ ସେ କହିଲେ —ଭାଇ ଅର୍ଜୁନ ! ତୁମେ ଦେବକୀନନ୍ଦନଙ୍କର ପ୍ରିୟ ମିତ୍ର । ମୋ ଭଳି ହତଭାଗ୍ୟଙ୍କୁ ତ ସେ ବଡ଼ ବୋଲି ମାନ୍ୟ କରୁଥିଲେ । ମୋ ଆଗରେ ଟିକିଏ ଲାଜ ମଧ୍ୟ କରୁଥିଲେ; କିନ୍ତୁ ତୁମେ ତ ତାଙ୍କର ଅଭିନ୍ନ ହୃଦୟ ଥିଲ । ତୁମ ସହିତ ସେ ନିର୍ଭୟରେ ଓ ନିଃସଙ୍କୋଚଭାବେ ମିଳାମିଶା କରୁଥିଲେ । ସେ ଯେତେବେଳେ ଯାଉଥିଲେ, ତୁମକୁ ସାଙ୍ଗରେ ନେଇଯାଉଥିଲେ । ତୁମ ବିନା କେବେ ସେ ଏକାକିଆ ଖାଉ ନ ଥିଲେ । ସେ ଏ ସଂସାରରେ ଆମର ଏକମାତ୍ର ବନ୍ଧୁ ଥିଲେ । ତାଙ୍କ ବିନା ଆମ୍ଭେ ଜୀବନଧାରଣ କରିପାରିବା ନାହିଁ । ତାଙ୍କ ପ୍ରୟାଣ ବାର୍ତ୍ତା ଶ୍ରବଣରେ

Digitized by srujanika@gmail.com

ଏ ଦେହ ନିଷ୍ପ୍ରାଣ ଭଳି ଲାଗୁଛି । ତାଙ୍କର ସ୍ମୃତି ବର୍ଣ୍ଣନାଦ୍ୱାରା ତୁମେ ମୋତେ ଭାବଜଗତରେ ତାଙ୍କ ସହିତ ସାକ୍ଷାତ କରାଇବାର ଚେଷ୍ଟା କର । ତାଙ୍କ ଲୀଳା ଶ୍ରବଣଦ୍ୱାରା ଆମ୍ଭେମାନେ କୌଣସି ପ୍ରକାର ପ୍ରାଣ ଧାରଣ କରିବାକୁ ସମର୍ଥ ହେବା । ତେଣୁ ନୀରବ ନ ରହି ତାଙ୍କର ସ୍ମୃତି ଓ ଗୁଣଗାନଦ୍ୱାରା ମୋର ଶୋକ ସନ୍ତାପକୁ ଶାନ୍ତ କର । ଧ୍ୟାନବଳରେ ମୁଁ ସେହି ନନ୍ଦନନ୍ଦନଙ୍କ ସାକ୍ଷାତ ଲାଭକରୁଛି । ତାଙ୍କ ଲୀଳା ଶ୍ରବଣଦ୍ୱାରା ବିୟୋଗ ଦୁଃଖ ସାମାନ୍ୟ ଊଣା ହେଉଛି । ଆଉ କୌଣସି ଶ୍ରୀକୃଷ୍ଣଙ୍କ ପ୍ରସଙ୍ଗ କୁହ । ନିଦ୍ରା ନୟନରୁ ଯାଇ ଭଗବାନଙ୍କୁ ଖୋଜିବୁଲୁଛି । ଏତେ ବଡ଼ ଶୋକରାତି କିଭଳି କଟିବ ? ଯାହା କିଛି କାର୍ଯ୍ୟ ହେବ, ସେ ସମସ୍ତ ରାତ ପାହିଲେ । ସୂର୍ଯ୍ୟୋଦୟ ପରେ ଆମେ ଭାବି କର୍ତ୍ତବ୍ୟ ବିଷୟରେ ସିଦ୍ଧାନ୍ତ କରିବା । ସେ ପର୍ଯ୍ୟନ୍ତ ତୁମେ ତ୍ରୈଲୋକ୍ୟ ପାବନ ଦ୍ୱାରକାନାଥ ଶ୍ରୀକୃଷ୍ଣଙ୍କ ପ୍ରସଙ୍ଗ ବର୍ଣ୍ଣନା କରିଯାଅ ।

ଏତିକି କହି ଧର୍ମରାଜ ନୀରବ ହୋଇଗଲେ । ଅନ୍ୟ ଭାଇ, ମନ୍ତ୍ରୀ ଓ ପ୍ରଧାନ ଅଧିକାରୀଗଣ ସଭାରେ ଶୋକସନ୍ତପ୍ତ ହୋଇ ପାଷାଣ ମୂର୍ତ୍ତି ଭଳି ନିଶ୍ଚଳ ଭାବେ ବସିଥିଲେ । ସମସ୍ତେ ଶୌଚ, ସନ୍ଧ୍ୟା, ଖାଇବା, ପିଇବା ଭୁଲିଗଲେ । ଆଖିରୁ ଲୁହ ଗଡ଼ାଇ ଅର୍ଜ୍ଜୁନଙ୍କ ମୁଖରୁ ଶ୍ରୀକୃଷ୍ଣଙ୍କ କୃପା ପ୍ରସଙ୍ଗ ଶୁଣୁଥିଲେ । ଆଖି ପୋଛି ଓ ଗଳା ସଫାକରି କାନ୍ଦି କାନ୍ଦି ଅର୍ଜ୍ଜୁନ କହିଲେ—ରାଜନ୍ ! କୃପାସାଗର ଶ୍ରୀକୃଷ୍ଣଙ୍କ ସମ୍ବନ୍ଧରେ କ'ଣ ବା ମୁଁ କହିପାରିବି । ମୋର ପ୍ରତ୍ୟେକ ଲୋମକୂପ ତାଙ୍କ ଉପକାରରେ ପରିପୂର୍ଣ୍ଣ । ଯଦି ମୋର ପ୍ରତ୍ୟେକ ଲୋମକୂପରେ କୋଟି କୋଟି ଜିହ୍ୱା ସୃଷ୍ଟି ହେବ ଓ ପ୍ରଳୟକାଳ ପର୍ଯ୍ୟନ୍ତ କହିବାପାଇଁ ସମୟ ମିଳିବ, ତେବେ ବି ତାଙ୍କର ସମସ୍ତ ପ୍ରସଙ୍ଗ ବର୍ଣ୍ଣନା କରିବା ସମ୍ଭବ ହେବ ନାହିଁ ସେ ଏପରି ଲୀଳା କରିଛନ୍ତି ଆଉ ଏପରି ଦୃଶ୍ୟ ଦେଖାଇଛନ୍ତି, ଯାହାକୁ ବ୍ରହ୍ମାଦି ଦେବଗଣ ମଧ୍ୟ ଜାଣି ପାରିନାହାନ୍ତି । ଇନ୍ଦ୍ର, ଅଗ୍ନି ଓ ବାୟୁ ଭଳି ପ୍ରବଳ ପ୍ରତାପୀ ଦେବଗଣ ତାଙ୍କ ଆଗରେ ହାତ ଯୋଡ଼ି ଠିଆ ହେଉଥିଲେ । ସେ ମଧ୍ୟ ଏମାନଙ୍କ ସହିତ ପିଲାଙ୍କ ଭଳି ଖେଳ ଓ କୌତୁକ କରୁଥିଲେ । ସେ ଇଚ୍ଛା ଅନୁସାରେ ଖେଳନା ରଚନା କରୁଥିଲେ ଓ ଭାଙ୍ଗୁଥିଲେ । ସେଥିରେ ଠିକଏ ହେଲେ ତାଙ୍କର ଶୋକ ବା ସନ୍ତାପ ହେଉ ନ ଥିଲା । ବରଂ ସେ ଭଙ୍ଗା ଗଢ଼ା ମଧ୍ୟରେ ଏକ ପ୍ରକାର ଆନନ୍ଦ ଲାଭ କରୁଥିଲେ । ଦେବଗଣ ତାଙ୍କର ମାନବ ଅବତାରକୁ ଦେଖି ମୋହିତ ହୋଇଯାଉଥିଲେ । ସାଧାରଣ ମଣିଷ ଭଳି ସେ ମଧ୍ୟ ନାନାପ୍ରକାର ମାନବୋଚିତ ବ୍ୟବହାର ପ୍ରଦର୍ଶନ କରୁଥିଲେ । ସେହି ମାନବୀୟଲୀଳା ମଧ୍ୟରେ ତାଙ୍କର ଦିବ୍ୟଲୀଳା ପ୍ରକାଶ ପାଉଥିଲା ।

Digitized by srujanika@gmail.com

ଆପଣଙ୍କର ମନେ ଥିବ, ଥରେ ଆପଣଙ୍କ ଆଦେଶରେ ଆମ୍ଭମାନେ ଯମୁନାକୂଳରେ ଜଳକ୍ରୀଡ଼ା ପାଇଁ ଯାଇଥିଲୁ । ଏକାକିଆ ପାଇ ସେ ମୋତେ ବହୁତ ସ୍ନେହ ଓ ଆଦର କରିଥିଲେ । ତାଙ୍କର ପ୍ରେମ ପ୍ରବାହରେ ଭାସିଯାଇ ମୁଁ ନିଜକୁ ଭୁଲିଯାଇଥିଲି । ଆପଣ ଆମ ସାଙ୍ଗରେ ବହୁ ନାଟ, ନର୍ତ୍ତକ ଦାସ, ଦାସୀ, ଗାୟକ, ବାଦକ, ପଠାଇଥିଲେ; କିନ୍ତୁ ସେମାନେ ମୋତେ ଆଦୌ ଆନନ୍ଦ ଦେଇ ପାରୁ ନ ଥିଲେ । ଯମୁନାକୂଳରେ ଆମେ ଖୁବ୍ ଆମୋଦ ପ୍ରମୋଦ କଲୁ । ସେ ମୋତେ ସାଙ୍ଗରେ ନେଇ ଯମୁନା ଜଳରେ ବହୁ ସମୟ ପର୍ଯ୍ୟନ୍ତ ପହଁରିଲେ । ଜଳ ଫିଙ୍ଗି ମୋତେ ଅସ୍ଥିର କରି ପକାଉଥିଲେ । ମୁଁ ଆକୁଳରେ ତାଙ୍କ କାନ୍ଧକୁ ଧରୁଥିଲି । ସେହି ଶ୍ରୀଅଙ୍ଗ ସ୍ପର୍ଶ ଆଜି ଦୁର୍ଲ୍ଲଭ । ଜଳକ୍ରୀଡ଼ାରେ କ୍ଳାନ୍ତ ହୋଇ ଫେରିବାପରେ ସେ ସ୍ନେହରେ କହିଲେ—ଅର୍ଜ୍ଜୁନ ! ଏହି ଗହଳରେ ମୋତେ ଭଲ ଲାଗୁନାହିଁ । ଚାଲ ଆମେ ଦୁହେଁ ନିରୋଳାରେ କେଉଁଠି ଯାଇ ବସିବା । ମୋର ମଧ୍ୟ ସେହି ଇଚ୍ଛା ଥିଲା । ମୋତେ ସାଙ୍ଗରେ ନେଇ ଏକ ନିକୁଞ୍ଜରେ ଯାଇ ବସିଲେ । ମୋହର କୋଳରେ ମୁଣ୍ଡ ରଖି, ମୋ ମୁହଁକୁ ଚାହିଁ କେତେ କେତେ କଥା କହିବାକୁ ଲାଗିଲେ । ମୁଁ ବୈକୁଣ୍ଠ ସୁଖ ଅନୁଭବ କଲି । ଏ ସଂସାରରେ ମନ ଅନୁରୂପ ମିତ୍ର ପାଇଥିବା ଲୋକ ଧନ୍ୟ । ସାଙ୍ଗ ସାଙ୍ଗ ପାଖରେ କଥାବାର୍ତ୍ତା ହେବାବେଳେ ଦୁଃଖପୂର୍ଣ୍ଣ ସଂସାରର ସ୍ମୃତି ବିଲୀନ ହୋଇଯାଏ । ସେମାନେ ଏ ସଂସାରଠାରୁ ପୃଥକ୍ ସଦା ସୁଖମୟ ଏକ ଭାବ ସଂସାରରେ ବିଚରଣ କରୁଥାନ୍ତି । ମୁଁ ସେହି ଅନୁପମ ପ୍ରେମ ରସରେ ବିଭୋର ଥିବାବେଳେ ତାଳଗଛ ଭଳି ଡେଙ୍ଗା, ପରମ ତେଜସ୍ୱୀ, ତାମ୍ରବର୍ଣ୍ଣ ଶ୍ମଶ୍ରୁଧାରୀ ଜଣେ ବ୍ରାହ୍ମଣ ଆସି ପହଞ୍ଚିଲେ । ଆମେ ଦୁହେଁ ବ୍ରାହ୍ମଣଙ୍କ ସମ୍ମାନ ପାଇଁ ଉଠି ଠିଆହେଲୁ । ସେ ଆମ ପାଖରେ ପହଞ୍ଚି କହିଲେ --"ମୁଁ ବଡ଼ କ୍ଷୁଧାର୍ତ୍ତ । ମୋତେ କିଛି ଖାଇବାକୁ ଦିଅ ।"

ମୁଁ କହିବା ପାଇଁ ଯାଉଥିଲି —ବ୍ରାହ୍ମଣ ଦେବତା ! ତୁମେ ଖାଇବା ପାଇଁ ଆମର ଏକାନ୍ତ ଭାବକୁ କାହିଁକି ନଷ୍ଟ କଲ ? ଆମର ସେବକଙ୍କ ପାଖରେ ଯଥେଷ୍ଟ ଭୋଜନ ସାମଗ୍ରୀ ଅଛି । ସେଠାରେ ମାଗିଥିଲେ ହୋଇଥାନ୍ତା; କିନ୍ତୁ ଶ୍ରୀକୃଷ୍ଣଙ୍କ ମୁହଁ ଦେଖି ମୁଁ କିଛି କହିପାରିଲି ନାହିଁ । ମେଘ ଗମ୍ଭୀରବାଣୀରେ ଶ୍ରୀକୃଷ୍ଣ ସେହି ବ୍ରାହ୍ମଣଙ୍କୁ ସମ୍ବୋଧନ କରି କହିଲେ—ବିପ୍ରବର ! ଆପଣ ସାଧାରଣ ବ୍ରାହ୍ମଣ ଭଳି ଦେଖାଯାଉ ନାହାନ୍ତି । ସାଧାରଣ ଭୋଜନରେ ମଧ୍ୟ ଆପଣ ତୃପ୍ତ ହେବା ଭଳି ମନେ ହେଉନି । ତେଣୁ ଆପଣ ପ୍ରଥମେ କ'ଣ ଖାଇବେ କହନ୍ତୁ । ଆପଣଙ୍କ ଭୋଜ୍ୟଦ୍ରବ୍ୟ ଶୁଣିବା ପରେ ଆମେ ଦେଇ ପାରିବୁ କି ନାହିଁ ଜଣାଇବୁ ।

Digitized by srujanika@gmail.com

ଭଗବାନ୍‌ଙ୍କ କଥା ଶୁଣି ମୁଁ ବିସ୍ମିତ ହୋଇଗଲି । ସେତେବେଳକୁ ମୋର ମନ ଶାନ୍ତ ହୋଇଯାଇଥାଏ । ଯାହାଙ୍କୁ ମୁଁ ସାଧାରଣ ବ୍ରାହ୍ମଣ ବୋଲି ଭାବିଥିଲି ତାଙ୍କୁ ଭୋଜନ ଦେବାରେ ଅଖିଳ ବ୍ରହ୍ମାଣ୍ଡପତି ଶ୍ୟାମସୁନ୍ଦର ମଧ୍ୟ ଶଙ୍କିତ ହେଉଥିଲେ । ସେ ବ୍ରାହ୍ମଣ ତାଙ୍କର ତାମ୍ରବର୍ଣ୍ଣ ଶ୍ମଶ୍ରୁକୁ ହଲାଇ ହସିଦେଲେ, ଆଉ କହିଲେ—ଭଗବାନ୍ ! ମୁଁ ସାଧାରଣ ବ୍ରାହ୍ମଣ ନୁହେଁ । ମୁଁ ହେଉଛି ଅଗ୍ନି । ମୋର ଅଜୀର୍ଣ୍ଣ ହୋଇଯାଇଛି । ମୁଁ ଏଇ କଣ୍ଟକବର୍ତ୍ତୀ ଖାଣ୍ଡବ ବନକୁ ଦହନ କରିବା ପାଇଁ ଚାହୁଁଛି । ଏଥିରେ ଅନେକ ଯକ୍ଷ, ରାକ୍ଷସ, ଅସୁର, ନାଗ, ସର୍ପାଦି ରହିଛନ୍ତି । ସେମାନଙ୍କୁ ଭସ୍ମ କଲାପରେ ମୋର ତୃପ୍ତି ହେବ । ଏହି ବନକୁ ଦହନ କରିବା ପରେ ହିଁ ମୋର ଅଜୀର୍ଣ୍ଣ ଜୀର୍ଣ୍ଣ ହେବ ।

ଭଗବାନ୍ କହିଲେ,—'ତେବେ ଆମକୁ ପଚାରୁଛ କାହିଁକି ? ତୁମେ ତ ହୁତାଶନ । ସମସ୍ତ ବ୍ରହ୍ମାଣ୍ଡକୁ ଭସ୍ମ କରିବାପାଇଁ ସମର୍ଥ ।' ଏହା ଶୁଣି ଅଗ୍ନି ଦୁଃଖର ସହିତ କହିଲେ—କିପରି ଭସ୍ମ କରିପାରିବି ? ଏହି ବନରେ ଥିବା ତକ୍ଷକ ନାଗ ଇନ୍ଦ୍ରଙ୍କର ମିତ୍ର । ତେଣୁ ସମଗ୍ର ବନର ସୁରକ୍ଷା ଭାର ଇନ୍ଦ୍ର ଗ୍ରହଣ କରିଛନ୍ତି । ମୁଁ ଯେତେବେଳେ ଚେଷ୍ଟା କରିଛି, ସେତେବେଳେ ଇନ୍ଦ୍ର ଅଧିକ ବୃଷ୍ଟି କରିଦିଅନ୍ତି । ତେଣୁ ମୋର ଆଉ ଉପାୟ କିଛି ରହିନାହିଁ । ବହୁବାର ଚେଷ୍ଟା କରି ମଧ୍ୟ ମୁଁ ବିଫଳ ହୋଇଛି । ଆପଣ ଦୁହେଁ ଅସ୍ତ୍ରଶସ୍ତ୍ରରେ ବିଶାରଦ । ଆପଣ ଚାହିଁଲେ ଶସ୍ତ୍ରବଳରେ ଇନ୍ଦ୍ରଙ୍କ ଜଳବର୍ଷାକୁ ଅବରୋଧ କରି ମୋର ମନୋରଥ ପୂରଣ କରିପାରିବେ ।

ହେ ରାଜନ୍ ! ଯେତେବେଳେ ଅସ୍ତ୍ରଶସ୍ତ୍ରର ପରାକ୍ରମ ଦେଖାଇବା କାର୍ଯ୍ୟ ପଡ଼େ, ସେତେବେଳେ ସେ ମୋ ଆଡ଼କୁ ଚାହାନ୍ତି, ସତେ ଯେପରି ଅସ୍ତ୍ରଶସ୍ତ୍ର ସମ୍ବନ୍ଧରେ ସେ କିଛି ଜାଣନ୍ତିନାହିଁ । ମୁଁ ତାଙ୍କର ଭରସାରେ ଏପରି କାର୍ଯ୍ୟ କରି ପକାଏ ଯେ, ଦେବତାମାନେ ମିଳି ମିଶି ସେ କାର୍ଯ୍ୟ କରିପାରନ୍ତି ନାହିଁ । ମୁଁ ଏଭଳି କଠିନ କାର୍ଯ୍ୟ ବିଷୟରେ ପ୍ରତିଜ୍ଞା କରିଦିଏ ଯେ, ତାହା ମର୍ତ୍ତ୍ୟବାସୀ ପ୍ରାଣୀଙ୍କ ଶକ୍ତିର ବାହାରକୁ ଚାଲିଯାଏ । ଭଗବାନ୍‌ଙ୍କ ଇଙ୍ଗିତରେ ମୁଁ କହିବାକୁ ଆରମ୍ଭ କଲି—ଅଗ୍ନିଦେବ ! ଆପଣ ନିର୍ଭୟରେ ଖାଣ୍ଡବ ବନ ଦହନ କରନ୍ତୁ । ମୁଁ ଆପଣଙ୍କ ସୁରକ୍ଷା ଦାୟିତ୍ୱ ନେଲି । ମୋ ବାହୁରେ ଏତେ ବଳ ଅଛି ଯେ, ଗୋଟିଏ ଇନ୍ଦ୍ର କଥା ଛାଡ଼ନ୍ତୁ ଶହେ ଇନ୍ଦ୍ର ଏକ ସମୟରେ ଆସିଲେ ବି ମୋତେ ପରାସ୍ତ କରିପାରିବେ ନାହିଁ; କିନ୍ତୁ ମୋର ବଳ ଅନୁସାରେ ମୋ ପାଖରେ ରଥ ନାହିଁ କି ଅସ୍ତ୍ରଶସ୍ତ୍ର ନାହିଁ । ସାଧାରଣ ଧନୁକୁ ମୁଁ ସହଜରେ ଗୁଣ ଦେଇ ଟାଣିଲେ ବି ତାହା ଭାଙ୍ଗିଯାଏ । ମୁଁ ଅତି ସହଜରେ ଦୁଇହାତରେ ବାଣ ବର୍ଷି ପାରେ । ଯେତେ ବାଣ ଥିଲେ ବି ସବୁ ଶୂନ୍ ଶୀଘ୍ର ସରିଯାଏ । ତେଣୁ ଆପଣ ମୋର ବଳ ଅନୁରୂପ

Digitized by srujanika@gmail.com

ଏହି ଦିବ୍ୟଧନୁ, ଅକ୍ଷୟ ତୂଣୀର ଓ ମୋର ବେଗକୁ ସହିପାରିବା ଭଳି ଯୋଗ୍ୟ ରଥଟିଏ ଦେଲେ ମୁଁ ଶ୍ରୀକୃଷ୍ଣଙ୍କ ସହାୟତାରେ ଆପଣଙ୍କ ମନୋରଥ ପୂର୍ଣ୍ଣ କରିବାକୁ ସମର୍ଥ ହେବି ।

ମୋ କଥା ଶୁଣି ଶ୍ୟାମସୁନ୍ଦର ଟିକିଏ ହସିଲେ । ଅଗ୍ନିଦେବ ସନ୍ତୁଷ୍ଟ ହୋଇ ମୋତେ ଏହି ଗାଣ୍ଡୀବ ଧନୁ, ଅକ୍ଷୟ ତୂଣୀର ଓ କପିକେତନଯୁକ୍ତ ଦିବ୍ୟ ରଥ ଦେଇଛନ୍ତି । ଶ୍ରୀକୃଷ୍ଣଙ୍କୁ ମଧ୍ୟ ଚକ୍ର ଓ ଆଗ୍ନେୟାସ୍ତ୍ର ଦେଇଛନ୍ତି; କିନ୍ତୁ ଏ ସବୁ ଅସ୍ତ୍ରଶସ୍ତ୍ରର ଆବଶ୍ୟକତା କ'ଣ ତାଙ୍କର ଥିଲା ? ସେ ଇଚ୍ଛା କରିବାମାତ୍ରେ ଏ ସୃଷ୍ଟି-ବିହୀନ ହୋଇପାରେ; କିନ୍ତୁ ସେ ଅଗ୍ନିଙ୍କୁ ଅପମାନ କଲେ ନାହିଁ । ସେ ଅଗ୍ନିଙ୍କ ଅସ୍ତ୍ରକୁ ଶ୍ରଦ୍ଧାର ସହିତ ଗ୍ରହଣ କରିଥିଲେ । ଯେଉଁ ସମୟରେ ଅଗ୍ନିଦେବ ଖାଣ୍ଡବ-ବନକୁ ଦହନ କଲେ ସେତେବେଳେ ଦେବତାମାନଙ୍କ ପ୍ରେରଣାରେ ଦଳବଳ ସହିତ ଇନ୍ଦ୍ର ତା'ର ସୁରକ୍ଷା ପାଇଁ ଆସି ପହଞ୍ଚିଲେ । ସେ ଆସିବା ମାତ୍ରେ ମୋ ସହିତ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । ଶ୍ରୀକୃଷ୍ଣଙ୍କ ପଛରେ ଠିଆହୋଇ ମୁଁ ଗାଣ୍ଡୀବ ଧନୁ ଉଠାଇ ଇନ୍ଦ୍ର ଓ ଦେବଗଣଙ୍କ ଉପରେ ବାଣବର୍ଷା କରିବାରେ ଲାଗିଗଲି । ମୋ ବାଣରେ ବ୍ୟଥିତ ହୋଇ ଦେବଗଣ ନିଜ ନିଜର ପ୍ରାଣ ନେଇ ଯୁଦ୍ଧସ୍ଥଳରୁ ପଳାଇଗଲେ । ମୋର ପିତା ଇନ୍ଦ୍ର ଲଜ୍ଜିତ ହେଲେ ଓ ହର୍ଷିତ ବି ହେଲେ । ନିଜ ପରାଜୟ ହେତୁ ସେ ଲଜ୍ଜିତ ହୋଇଥିଲେ ବି ମୋର ପରାକ୍ରମ ଦେଖି ଆନନ୍ଦିତ ହୋଇଥିଲେ । ସେହି ପରାକ୍ରମ ମୋର ନିଜର ନୁହେଁ, ତାହା ସେହି ପୁରାଣ ପୁରୁଷ ପ୍ରଭୁ ଶ୍ରୀକୃଷ୍ଣଙ୍କର । ତାଙ୍କ ସହିତ ସେ ପରାକ୍ରମ ମୋର ଚାଲିଗଲା । ମୁଁ ବର୍ତ୍ତମାନ ସାଧାରଣ ପୁରୁଷ ଭଳି ନିର୍ବୀର୍ଯ୍ୟ ।

ଆହା ! ସେ ସମୟରେ ଭଗବାନ୍‌ଙ୍କର କି ଅଦ୍‌ଭୁତ ଓ ଅପୂର୍ବ ଶୋଭା ଥିଲା । ଅଗ୍ନିଦେବ ଖାଣ୍ଡବ ବନ ଦହନ କରୁଥିଲେ । ଚାରିଆଡ଼େ ଠୋ ଠା ଶବ୍ଦ ହେଉଥିଲା । ସିଂହ, ବ୍ୟାଘ୍ର ଭଲ୍ଲୁକ, ପଶୁପକ୍ଷୀ, ନାଗାଦି ସମସ୍ତେ ଜଳି ଯାଉଥିଲେ । ଶ୍ରୀକୃଷ୍ଣ ମୋ ରଥକୁ ଚକ୍ରଭଳି ଖାଣ୍ଡବ ବନର ଚାରିପାଖରେ ପରିଭ୍ରମଣ କରାଉଥିଲେ । କୌଣସି ଗୋଟିଏ ଜୀବ ଅଗ୍ନିଙ୍କ କବଳରୁ ବାହାରକୁ ଆସିବା-ମାତ୍ରେ ଆମେ ତତ୍କ୍ଷଣ ଅସ୍ତ୍ରଦ୍ୱାରା ତାକୁ ମାରି ଦେଉଥିଲୁ । ଦୈବଯୋଗକୁ ଇନ୍ଦ୍ରଙ୍କ ମିତ୍ର ତକ୍ଷକ ନାଗ ସେତେବେଳେ କୁରୁକ୍ଷେତ୍ର ଯାଇଥିଲେ । ସେ ବଞ୍ଚିଗଲେ, କିନ୍ତୁ ଦାନବାରଣୀ ସୁପ୍ରସିଦ୍ଧ ଶିଳ୍ପୀ ମୟଦୈତ୍ୟ ସେଠାରେ ଥିଲେ । ଅଗ୍ନିର ଜ୍ୱାଳା ସହି ନ ପାରି ସେ ବାହାରକୁ ପଳାଇଲେ । ଅଗ୍ନିଦେବ ବାୟୁ ସାହାଯ୍ୟରେ ତାଙ୍କୁ ଭକ୍ଷଣ କରିବା ନିମିତ୍ତ ତା'ପଛରେ ଗୋଡ଼ାଇଲେ । ଅଗ୍ନି ନିଜ ଆଡ଼କୁ ମାଡ଼ି ଆସୁଥିବାର ଦେଖି ମୟଦାନବ ଏକ ଗୁପ୍ତମାର୍ଗରେ ପଳାଇଗଲା । ଆଗରେ ଚକ୍ର ଧାରଣ କରି ଶ୍ରୀକୃଷ୍ଣ ଅନ୍ୟ ପ୍ରାଣୀଙ୍କୁ ସଂହାର କରୁଥିବାର ଦେଖି ଆତୁରି

Digitized by srujanika@gmail.com

ବେଗରେ ପଳାଇବାକୁ ଲାଗିଲା । ମୟଦୈତ୍ୟ ପଳାଇ ଯାଉଥିବାର ଦେଖି ଶ୍ରୀକୃଷ୍ଣ ତା'ପଛରେ ଦୌଡ଼ିଲେ । ଅଗ୍ନି ଓ ଶ୍ରୀକୃଷ୍ଣଙ୍କ ଚକ୍ର ଆଗରେ ଏପରି ପ୍ରାଣୀ କିଏ ଏ ସଂସାରରେ ଅଛି ଯେ ନିଜ ପ୍ରାଣରକ୍ଷା କରିପାରିବ ? ମୟଦାନବ ଯେତେବେଳେ ବୁଝିପାରିଲା ଏ ପୃଥିବୀରେ ତାର ଆଉ ରକ୍ଷକ କେହି ନାହିଁ ସେତେବେଳେ ସେ ମୋର ଶରଣପ୍ରାର୍ଥୀ ହେଲା । ଅତି କରୁଣ ବାଣୀରେ ମୋତେ ସମ୍ବୋଧନ କରି କହିଲା—'ପାଣ୍ଡୁନନ୍ଦନ ! ପ୍ରଚଣ୍ଡ ଅଗ୍ନି ଓ ଚକ୍ରଧାରୀ ଶ୍ରୀକୃଷ୍ଣଙ୍କ କବଳରୁ ମୋତେ ରକ୍ଷାକର ।' ମୁଁ ଆବେଗରେ କହି ଦେଲି – 'ତୁମେ ନିର୍ଭୟ ହୁଅ । ଏବେ ଆଉ ନିଜ ପ୍ରାଣ ପାଇଁ ଭୟ କରନାହିଁ ।'

ମୋର ଏହି କାର୍ଯ୍ୟକୁ ଯେ କୌଣସି ବୀର ନିଜର ଅପମାନ ବୋଲି ଭାବିଥାନ୍ତା । ସହୋଦର ଭାଇ ହୋଇଥିଲେ ବି ଏଭଳି କାର୍ଯ୍ୟରେ ଖୁବ୍ ବ୍ୟଥିତ ହୋଇଥାନ୍ତା; କିନ୍ତୁ, ଏହା ଦେଖି ଭଗବାନ୍ ହସିଦେଇ କହିଲେ—'ହେ ଦାନବଶ୍ରେଷ୍ଠ ମୟ ! ଏବେ ଆଉ ତୁମର କୌଣସି ଚିନ୍ତା ରହିବା ଉଚିତ ନୁହେଁ । କୁନ୍ତିନନ୍ଦନ ଯାହାକୁ ଅଭୟ ଦେଇଛନ୍ତି, ତାକୁ ଏ ସଂସାରରେ ଆଉ କିଏ ମାରିବାକୁ ସାହସ କରିବ ?' ଏଥିରୁ ସେ ସେବକମାନଙ୍କ ପ୍ରତି କେତେ ଦୟାଳୁ, ତାହା ଜଣାପଡ଼େ । ସେ ମୋ କଥାକୁ କେତେ ମହତ୍ତ୍ୱ ଦେଉଥିଲେ । ନିଜର ପ୍ରତିଜ୍ଞା ବିନିମୟରେ ମୋ ପ୍ରତିଜ୍ଞାକୁ ସୁରକ୍ଷା କରୁଥିଲେ । ଏ ସମସ୍ତ ତାଙ୍କ ଭଗବତ୍ତ୍ୱର ଅନୁରୂପ କାର୍ଯ୍ୟଥିଲା । ସାଧାରଣ ମାନବଠାରେ ଏଭଳି ଐଶୀ ଶକ୍ତି କାହିଁ ? କିଏ ଏଭଳି ସହନଶୀଳତା ପ୍ରକାଶ କରିବାକୁ ସମର୍ଥ ?

ଉପକାର ବଦଳରେ ମୁଁ କିଛି ପ୍ରତ୍ୟୁପକାର କରିବାକୁ ଚାହୁଁଥିଲି । ମୁଁ ସିଧାସିଧା ଭାବରେ ତା'ର ଉତ୍ତର ଦେଇ କହିଲି ଶ୍ରୀକୃଷ୍ଣଙ୍କ ପ୍ରସନ୍ନତା ହିଁ ମୋର ସର୍ବଶ୍ରେଷ୍ଠ କାର୍ଯ୍ୟ । ମୁଁ ମୟକୁ କହିଲି, ଶ୍ରୀକୃଷ୍ଣ ଯେଉଁ କାର୍ଯ୍ୟରେ ପ୍ରସନ୍ନ ହେବେ, ସେଭଳି କାମଟିଏ ତୁମେ କରିଦିଅ । ମୟ ଭଗବାନ୍‌ଙ୍କୁ ପ୍ରାର୍ଥନା କଲା । ତା'ର ପ୍ରାର୍ଥନାରେ ଶ୍ରୀକୃଷ୍ଣ କିଛିକାଳ ନୀରବ ରହି କ'ଣ ଭାବିବାକୁ ଲାଗିଲେ । ସମ୍ଭବତଃ ସେ କେଉଁ କାର୍ଯ୍ୟଦ୍ୱାରା ମୋର ମଙ୍ଗଳ ହେବ, ତାହା ହିଁ ଭାବୁଥିଲେ । କିଛି ସମୟ ପରେ ସେ କହିଲେ—ମୟ ! ତୁମେ ମୋତେ ଯଦି ଖୁସି କରିବାକୁ ଚାହୁଁଛ, ତେବେ ଧର୍ମରାଜ ଯୁଧିଷ୍ଠିରଙ୍କ ପାଇଁ ଏଭଳି ଏକ ଅନୁପମ ଦିବ୍ୟ ସଭା ନିର୍ମାଣ କରିଦିଅ, ଯାହା ପୃଥିବୀର ସର୍ବଶ୍ରେଷ୍ଠ ଓ ଅତୁଳନୀୟ ହୋଇ ରହିବ । ଦୈତ୍ୟ, ଦାନବ, ଦେବତା, ଗନ୍ଧର୍ବ ଆଦି କେହି ସେଭଳି ସଭା ନିର୍ମାଣ କରିପାରିବେ ନାହିଁ । ଏହାଠାରୁ ବଳି ମୋର ଆଉ କୌଣସି ପ୍ରିୟକାର୍ଯ୍ୟ ନାହିଁ । ମୁଁ ଧର୍ମରାଜଙ୍କୁ ସମ୍ରାଟଙ୍କ ଦିବ୍ୟ ସିଂହାସନରେ ସଭାରେ ବସିଥିବାର ଦେଖି ଆନନ୍ଦିତ ହେବି । ଏହା ହିଁ ମୋର ଇଚ୍ଛା ।'

Digitized by srujanika@gmail.com

ରାଜନ୍ ! ସେ ଥିଲେ ଭକ୍ତବତ୍ସଳ । ମୋ ପ୍ରତି ତାଙ୍କ ହୃଦୟରେ ଅଶେଷ ପ୍ରେମ ଥିଲା । ନିଷ୍କପଟ, ପ୍ରେମପୂର୍ଣ୍ଣ ଓ ମମତାଭରା ହୃଦୟ ହେତୁ ସେ ଏଭଳି ସଦ୍‌ବ୍ୟବହାର ଦେଖାଇଥିଲେ । ଶ୍ରୀକୃଷ୍ଣଙ୍କଠାରୁ ଆପଣ ଏହି ଦିବ୍ୟ ସଭା ଲାଭ କରିଥିଲେ । ରାଜସୂୟ ଯଜ୍ଞ ସମୟରେ ସମଗ୍ର ପୃଥିବୀର ରାଜାଗଣ ସେହି ସଭାକୁ ଆସି ଆପଣଙ୍କୁ ନାନାବିଧ ଉପହାର ଭେଟି ଦେଇଥିଲେ । ତାହାର କଳାକୌଶଳରେ ଦୁର୍ଯ୍ୟୋଧନଙ୍କର ଜଳରେ ସ୍ଥଳ ଓ ସ୍ଥଳରେ ଜଳର ଭ୍ରମଜାତ ହୋଇଥିଲା । ଶ୍ରୀକୃଷ୍ଣଙ୍କ ଦୟାରୁ ସଂସାରର ସର୍ବଶ୍ରେଷ୍ଠ ସଭା ଆପଣଙ୍କୁ ବସିବା ପାଇଁ ମିଳିଥିଲା ।

ସେ ମୋତେ ପାଳି ପୋଷି ଆକାଶଠାରୁ ମଧ୍ୟ ଉନ୍ନତ କରି ଗଢ଼ିଥିଲେ । ମୋର ସୌଭାଗ୍ୟ ଉପରେ ଗର୍ବଜାତ ହୋଇଥିଲା । ମୁଁ ଯେତେବେଳେ ନିଜକୁ ବୁଝିବାକୁ ଚେଷ୍ଟା କଲି, ସେତେବେଳେ ହୃଦୟସ୍ପର୍ଶୀ ଏକ ଘଟଣା ଘଟିଥିଲା । ସେହି ଘଟଣାରେ ତାଙ୍କ ଆନ୍ତରିକ ପ୍ରେମର ସର୍ବଶ୍ରେଷ୍ଠ ନିଦର୍ଶନ ମୋତେ ମିଳିଥିଲା । ଦେବରାଜ ହୋଇଥିବାରୁ ଇନ୍ଦ୍ରଙ୍କ ମନରେ ଏକ ବଡ଼ ଗର୍ବ ଥିଲା । ଖାଣ୍ଡବ ବନ ଦହନ ପରେ ଅଗ୍ନି ସନ୍ତୁଷ୍ଟ ହୋଇଗଲେ । ତା'ପରେ ଇନ୍ଦ୍ର ଆମ ପାଖକୁ ଆସି ଆମ ଦୁହିଁଙ୍କୁ ବର ମାଗିବାପାଇଁ କହିଲେ । ମୋତେ ପୃଥିବୀର ସର୍ବଶ୍ରେଷ୍ଠ ଯୋଦ୍ଧାଭାବେ ପ୍ରତିଷ୍ଠା କରିବା ପାଇଁ ଶ୍ରୀକୃଷ୍ଣଙ୍କ ଅଭିଳାଷ ଥିଲା । ମୋର ମଧ୍ୟ ଅଦ୍ୱିତୀୟ ଯୋଦ୍ଧା ହେବାର ବାସନା ଥିଲା । ତେଣୁ ମୁଁ ଦେବରାଜଙ୍କୁ ସେହିଭଳି ଅସ୍ତ୍ର ପ୍ରାର୍ଥନା କଲି. ଆଉ ସେ ମଧ୍ୟ ମୋର ପ୍ରାର୍ଥନା ପୂରଣ କରିଥିଲେ; କିନ୍ତୁ ବରଦାତା ଶ୍ୟାମସୁନ୍ଦରଙ୍କୁ ମଧ୍ୟ ବର ପ୍ରାର୍ଥନା ନିମିତ୍ତ ଇନ୍ଦ୍ର ବାଧ୍ୟ କଲେ । ଭଗବାନ୍ ତାଙ୍କୁ ତିରସ୍କାର ବା ପ୍ରତିରୋଧ କଲେନାହିଁ । ସେ ଇନ୍ଦ୍ରଙ୍କୁ ଏଭଳି ବରଦାନ ମାଗିଲେ ତାହା ଶୁଣିବା ମାତ୍ରେ ମୋର ସମଗ୍ର ଶରୀର ରୋମାଞ୍ଚିତ ହୋଇଗଲା । ତାଙ୍କର ଭକ୍ତବାତ୍ସଲ୍ୟରେ ମୋର ହୃଦୟ ପୁରି ଉଠିଲା । ସେଦିନ ମୋର ଏହି ବିଶ୍ୱାସ ହୋଇଥିଲା ଯେ, ଶ୍ୟାମସୁନ୍ଦର କେବେହେଲେ ମୋତେ ପରିତ୍ୟାଗ କରିବେ ନାହିଁ ।

ଇନ୍ଦ୍ରଙ୍କ ବର ପ୍ରାର୍ଥନା ନିମିତ୍ତ ଅନୁରୋଧ ରକ୍ଷାକରି ଭଗବାନ୍ କହିଲେ—ହେ ଦେବରାଜ ! ଆପଣ ବର ଦେବାକୁ ଚାହୁଁଥିଲେ ମୋତେ ସେହି ବର ଦିଅନ୍ତୁ, ଯେପରି ମୋର ଓ ଅର୍ଜ୍ଜୁନର ମୈତ୍ରୀ ଦୃଢ଼ରୁ ଦୃଢ଼ତର ହେବ । ହେ ରାଜନ୍ ! ଏଭଳି ବର ମୋର ମାଗିବା ଉଚିତ ଥିଲା । ପ୍ରଭୁ ଯଦୁନନ୍ଦନଙ୍କର କାହା ସହିତ ମିତ୍ରତାଦ୍ୱାରା କ'ଣ ପ୍ରୟୋଜନ ଥିଲା ? ସମଗ୍ର ସଂସାର ଯେଉଁ ଲକ୍ଷ୍ମୀଙ୍କର କୃପା କଟାକ୍ଷ ପାଇଁ ବ୍ୟାକୁଳ, ସେହି ଲକ୍ଷ୍ମୀ ଯାହାଙ୍କର ଚରଣ ସେବିକା ଏବଂ ଯେ, ସେହି

Digitized by srujanika@gmail.com

ଲକ୍ଷ୍ମୀଙ୍କୁ ମଧ୍ୟ ଆଖି ଉଠାଇ ଦେଖନ୍ତି ନାହିଁ, ତାଙ୍କର ମିତ୍ର ହେବାପାଇଁ ମୋଭଳି କ୍ଷୁଦ୍ର ପ୍ରାଣୀ କପରି ଯୋଗ୍ୟ ହେବ ? କିନ୍ତୁ, ସେ ନିଜର ଶରଣାଗତ ବାତ୍ସଲ୍ୟର ପରାକାଷ୍ଠା ଦେଖାଇବାକୁ ଯାଇ ଭକ୍ତର ଅଧୀନ ଭଗବାନ ବୋଲି ପ୍ରମାଣିତ କରି ଦେଲେ । ବୁଭୁକ୍ଷିତ ଭୋଜନ ନିମିତ୍ତ, ତୃଷାର୍ତ୍ତ ଜଳପାଇଁ ଓ କାମୁକ କାମିନୀ ନିମିତ୍ତ ଲାଳାୟିତ ହେଲା ଭଳି ଶ୍ରୀକୃଷ୍ଣ ଭକ୍ତମାନଙ୍କର କୃପାଲାଭ ନିମିତ୍ତ ବ୍ୟାକୁଳ ହୁଅନ୍ତି । ସେ ଏହା କେବଳ କଥାରେ ନୁହେଁ ସାରା ଜୀବନ କାର୍ଯ୍ୟରେ ହିଁ ପରିଣତ କରିଥିଲେ । ଆମର କଲ୍ୟାଣ ପାଇଁ ସେ ସର୍ବଦା ତତ୍ପର ଥିଲେ । ଆମର ହିତ ହେଲା ଭଳି କାର୍ଯ୍ୟ ସେ ଯେ କୌଣସି ଉପାୟରେ ହେଉ ପଛେ କରୁଥିଲେ; କିନ୍ତୁ ଶେଷରେ ମୋତେ ସେ ଦଗା ଦେଲେ । ସ୍ୱଧାମଯାତ୍ରାବେଳେ ମୋଭଳି ପାପୀକୁ ଅଯୋଗ୍ୟ ମନେ କରି ସାଙ୍ଗରେ ନେଲେନାହିଁ । ମୋତେ ଏଠାରେ କେବଳ କାନ୍ଦିବା ପାଇଁ ଛାଡ଼ି ଦେଇଗଲେ ।

## ଛପ୍‌ପୟ

ରାଜନ୍ ! ଅତି କମନୀୟ କୃଷ୍ଣ କୀ ଅକଥ କାହାନୀ ।
ପ୍ରେମାମୃତ ମେଁ ସନୀ ସରସ ସୁଖଦାୟକ ବାନୀ ॥
ଖାଣ୍ଡବକୋ କରି ଦାହ ଅଗ୍ନି ଭରପେଟ ଅଘାୟେ ।
ଦୋଉନି କୂଁ ବର ଦେନ ଦେବପତି ଦୌରେ ଆୟେ ॥
ମୈଂନେ ମାଁଗେ ଅସ୍ତ୍ରବର ମାଁଗେ ହରି ବର ହୃୟ ଭରେ
ଅର୍ଜୁନକେ ସଙ୍ଗ ମିତ୍ରତା ମେରୀ ନିତ ବଢ଼ିବୋ କରେ ॥



Digitized by srujanika@gmail.com

# ଜରାସନ୍ଧ ବଧ ଓ ଶ୍ରୀକୃଷ୍ଣଙ୍କ କୃପା

ଯତ୍ତେଜସା ନୃପଶିରୋଙ୍‌ଘ୍ରି ମହନ୍ମଖାର୍ଥେ
ଆର୍ଯ୍ୟୋଽନୁଜସ୍ତବ ଗଜାୟୁତସତ୍ତ୍ୱବୀର୍ଯ୍ୟଃ ।
ତେନାହୃତାଃ ପ୍ରମଥନାଥମଖାୟ ଭୂପା
ଯନ୍ମୋଚିତାସ୍ତଦନୟନ୍ ବଳିମଧ୍ୱରେ ତ ॥

( ଭାଗବତ ୧ । ୧୫ । ୯ । )

ଛପ୍‌ପୟ

ରାଜସୂୟକେ ସମୟ ସଭି ଭୂପତି ବଶ ଆୟେ ।
ଜରାସନ୍ଧ ନହି ନମ୍ୟୋ ଆପ ଅତିଶୟ ଘବରାୟେ ॥
ମଗଧେଶ୍ୱରକେ ଦମନ କରନକୀ ଯୁକ୍ତି ବତାଈ ।
ଅଭୟ କରତ ବା ସମୟ ଶ୍ୟାମ ସବ କହେ ସୁଖାଈ ॥
ରାଜନ୍ ! ଅର୍ଜୁନ ଭୀମ ମୈଁ ତୀନହୁ ଗିରିବ୍ରଜ ଜାୟେଁଗେ ।
ଜରାସନ୍ଧକୂଁ ଯୁକ୍ତି ତେଁ ମାରି ମଗଧ ତେଁ ଆୟେଁଗେ ॥

ଶୋକବ୍ୟାକୁଳ ହୃଦୟ ଓ ଗଦ୍‌ଗଦ୍ କଣ୍ଠସ୍ୱର ହେତୁ ଅର୍ଜ୍ଜୁନ ଅଧିକ କିଛି କହିବା ପାଇଁ ଅସମର୍ଥ ହୋଇପଡ଼ିବାରୁ ଧର୍ମରାଜ କହିଲେ—'ଭାଇ ଅର୍ଜ୍ଜୁନ ! ଆରେ ତୁମେ ଚୁପ୍ ହୋଇଗଲ କାହିଁକି ? ଏବେ ଆମେ କରିବା କଣ ? ବର୍ତ୍ତମାନ କୃଷ୍ଣ କଥା ହିଁ ଆମର ଏକମାତ୍ର ଭରସା ।' ଶାସ୍ତ୍ରକାରମାନେ କହନ୍ତି — ଶହେ କାମ ଛାଡ଼ି ଭୋଜନ କରିବା ଉଚିତ । ସେହିପରି ହଜାରେ କାମ ଛାଡ଼ି ସ୍ନାନ କରିବା ବିଧେୟ । ଲକ୍ଷେ କାମ ଛାଡ଼ି ଦାନ ଆଉ ସମସ୍ତ ପ୍ରକାର ସାଂସାରିକ ଲାଭ କ୍ଷତିକୁ ଭୁଲି ଶ୍ରୀହରି ସ୍ମରଣ କରିବା ଉଚିତ । ଶ୍ରୀକୃଷ୍ଣଙ୍କ ସହିତ ଆମର ଖାଇବା ପିଇବା କାମ ସରିଗଲା । ଏବେ ଆମେ କୌଣସି ମତେ ରାତି ପ୍ରଭାତ ହେବା ପର୍ଯ୍ୟନ୍ତ ଅପେକ୍ଷା କରିବା । ଏହି କାଳରାତ୍ରି ବ୍ୟତୀତ ହେବାପରେ ହିଁ ଆମେ ଆମର ଭବିଷ୍ୟତ କର୍ମପନ୍ଥା ନିର୍ଣ୍ଣୟ କରିବା । ଶ୍ରୀପତି ପୃଥିବୀ ତ୍ୟାଗ କରି

Digitized by srujanika@gmail.com

ସ୍ୱଧାମ ପ୍ରତ୍ୟାବର୍ତ୍ତନ କଲାଭଳି ଆମ ଆଖିରୁ ନିଦ୍ରା ମଧ୍ୟ ଚାଲିଯାଇଛି । ଇନ୍ଦ୍ରିୟଗଣଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଏହି କର୍ଣ୍ଣ ଶ୍ରୀକୃଷ୍ଣ କଥା ଶ୍ରବଣ ନିମିତ୍ତ ବ୍ୟାକୁଳ ହେଉଛି । ଏଣୁ ତୁମେ ଶ୍ରୀକୃଷ୍ଣଙ୍କ କୃପା ସମ୍ବନ୍ଧୀୟ ଅନ୍ୟ କୌଣସି ପ୍ରସଙ୍ଗ ମନେପକାଇ କୁହ ।

ଧର୍ମରାଜଙ୍କ କଥା ଶୁଣି ଗାଣ୍ଡୀବଧାରୀ ଅର୍ଜୁନ ଆଖିରୁ ଲୁହ ପୋଛି କହିବାକୁ ଲାଗିଲେ—'ରାଜନ୍ ! ଶ୍ୟାମସୁନ୍ଦରଙ୍କ ସମସ୍ତ ପ୍ରସଙ୍ଗ ସୁନ୍ଦର ଓ ମନୋହର, ସେଥିରେ ଅସୁନ୍ଦରତାର ଗନ୍ଧ ନାହିଁ । ମିଶ୍ରିର ଯେଉଁ ପାଖ ଲେହନ କଲେ ବି ତାହା ମଧୁର ଲାଗେ । ସେହିପରି ଶ୍ରୀକୃଷ୍ଣଙ୍କ ସମସ୍ତ ଲୀଳା ଓ କଥା ଏକକୁ ବଳି ଏକ ସୁନ୍ଦର ଓ ସରସ । ସଂସାରର ସମସ୍ତ ସୌନ୍ଦର୍ଯ୍ୟ ସେହି ଶ୍ୟାମସୁନ୍ଦରଙ୍କ-ଠାରୁ ଉତ୍ପନ୍ନ । ତେଣୁ ତାଙ୍କ ସମ୍ବନ୍ଧୀୟ ସମ୍ବନ୍ଧ ଓ ଅସମ୍ବନ୍ଧ ସବୁ କିଛି ସୁନ୍ଦର ସୁଖକର, ଶାନ୍ତିପ୍ରଦ ଓ ହୃଦୟଗ୍ରାହୀ ହୋଇଥାଏ । ବଡ଼ ପରିବାରରେ ଥିବା ବୟୋଜ୍ୟେଷ୍ଠ ବ୍ୟକ୍ତି ଯେପରି ମମତାବଶତଃ ପୁତ୍ରପୌତ୍ରାଦିଙ୍କ ଭରଣପୋଷଣ ଚିନ୍ତାରେ ସର୍ବଦା ମଗ୍ନ ରହନ୍ତି, ସେହିପରି ଅଖିଳ ଭୁବନପତି ଶ୍ରୀକୃଷ୍ଣ ଆମର କଲ୍ୟାଣ ସାଧନରେ କିପରି ଏତେ ଆସକ୍ତ ଥିଲେ, ତାହା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସେ ଏକାନ୍ତରେ ସର୍ବଦା ଆମର ମଙ୍ଗଳ ବିଷୟରେ ଚିନ୍ତା କରୁଥିଲେ । କ'ଣ କଲେ ପାଣ୍ଡବମାନଙ୍କର ମଙ୍ଗଳ ହେବ, ଧର୍ମରାଜ କିପରି ସଂସାରର ସର୍ବଶ୍ରେଷ୍ଠ ଯଶସ୍ୱୀ ସମ୍ରାଟ ହେବେ, ସବୁ ଚିନ୍ତା ମଧ୍ୟରେ ଏ ଦୁଇଟି ପ୍ରାଧାନ୍ୟ ଲାଭ କରୁଥିଲା ।'

ଆପଣ ସବୁ କଥା ଜାଣନ୍ତି । ଆପଣଙ୍କୁ ଖୁସି କରିବା ପାଇଁ ସେ କେତେ ବ୍ୟସ୍ତ ହେଉଥିଲେ, ତାହା ଆପଣ ପ୍ରତ୍ୟକ୍ଷ ଦେଖିଛନ୍ତି । ଆପଣ ଯେତେବେଳେ ସର୍ବଶ୍ରେଷ୍ଠ ରାଜସୂୟ ଯଜ୍ଞ କରିବା ନିମିତ୍ତ ତାଙ୍କ ଆଗରେ ପ୍ରସ୍ତାବ ଉପସ୍ଥାପନ କଲେ, ସେ କେତେ ଆନନ୍ଦିତ ହୋଇଥିଲେ ? ଅତୀବ ପ୍ରସନ୍ନ ହୋଇ ସେ କହିଥିଲେ—ରାଜନ୍ ! ମୋ ଭଳି ସେବକ ଉପସ୍ଥିତ ଥିବାବେଳେ ଆପଣ କାହିଁକି ବ୍ୟସ୍ତ ହେଉଛନ୍ତି ? ରାଜସୂୟ ଯଜ୍ଞ କେବଳ ସେହି ରାଜା କରି ପାରିବେ ଯେ ପୃଥିବୀର ସର୍ବଶ୍ରେଷ୍ଠ ସମ୍ରାଟ ଭାବେ ସମ୍ମାନିତ । ଆପଣଙ୍କ ମନରେ ଜରାସନ୍ଧ ବିଷୟରେ ଦୁଶ୍ଚିନ୍ତା ଥିଲା । ସେ ପୃଥିବୀରେ ପ୍ରବଳ ପରାକ୍ରମଶାଳୀ ଅସୁର ରାଜା ଭାବେ ସୁବିଦିତ ଥିଲା । ରାଜାମାନେ ତା'ର ନାମ ସ୍ମରଣ ମାତ୍ରେ ଥରି ଥରି ହୋଇ କମ୍ପୁଥିଲେ । ମୂର୍ଖତାବଶତଃ ସେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କରିଥିଲା । ଥରେ ଅଧେ ନୁହେଁ ଅଠରବାର ସେ ଶ୍ରୀକୃଷ୍ଣଙ୍କ ଉପରେ ଆକ୍ରମଣ କରିଥିଲା । ତା'ର ସେହି ଅହଙ୍କାରକୁ ବଢ଼ାଇବା ନିମିତ୍ତ ଭଗବାନ୍ ବନ୍ଧୁବାନ୍ଧବଙ୍କ ସହିତ ପଳାଇଯାଇ ଦ୍ୱାରିକା ନଗରୀରେ ବସବାସ କଲେ । ଏହାଦ୍ୱାରା ଜରାସନ୍ଧର

Digitized by srujanika@gmail.com

ଅଭିମାନ ଅତ୍ୟଧିକ ବଢ଼ିଗଲା । ସେ ନିଜକୁ ସଂସାରର ସର୍ବଶ୍ରେଷ୍ଠ ବିଜୟୀ ବୀର ବୋଲି ଭାବିଥିଲା । ତାହାର ଦୁଃସାହସ ଏପରିଭାବେ ବଢ଼ିଯାଇଥିଲା ଯେ, ଭଗବାନ୍ ଭୂତନାଥଙ୍କ ଯଜ୍ଞରେ ବଳି ପଶୁଭାବେ ଉତ୍ସର୍ଗ କରିବା ନିମିତ୍ତ ହଜାରରେ ସଂଖ୍ୟକ ଶ୍ରେଷ୍ଠ ରାଜାଙ୍କୁ ବନ୍ଦୀ କରି ରଖିଥିଲା । ଆପଣଙ୍କ ମନରେ ସେଥିପାଇଁ ବିଶେଷ ଦୁଶ୍ଚିନ୍ତା ଥିଲା । ଆପଣ ଭାବୁଥିଲେ ଏଡ଼େ ବଳଶାଳୀ ରାଜା ଥାଉଁ ଥାଉଁ କିପରି ରାଜସୂୟ ଯଜ୍ଞ ସମ୍ପାଦିତ ହେବ ? ଆପଣଙ୍କ ମନ କଥାକୁ ଅନ୍ତର୍ଯ୍ୟାମୀ ଭଗବାନ୍ ବୁଝିପାରିଥିଲେ । ସାନ୍ତ୍ୱନା ଦେବାକୁ ଯାଇ ସେ ମେଘ-ଗମ୍ଭୀର ବାଣୀରେ ଗର୍ଜନ କରି କହିଥିଲେ—'ରାଜନ୍ ! ଆପଣ ଟିକିଏ ହେଲେ ବି ଚିନ୍ତା କରନ୍ତୁ ନାହିଁ । ମୁଁ ଆପଣଙ୍କ ଶତ୍ରୁ ଜରାସନ୍ଧକୁ ମାରିଦେବି । ଶଲ୍ୟଶାସ୍ତ୍ରବିତ୍ କବିରାଜ ଶରୀରରେ ପ୍ରବେଶ କରିଥିବା କଣ୍ଟକକୁ ବାହାର କରିଦେବା ଭଳି ମୁଁ ଆପଣଙ୍କ ହୃଦୟସ୍ଥ କଣ୍ଟକରୂପୀ ଜରାସନ୍ଧକୁ ଏ ସଂସାରରୁ ବିଦାୟ କରିଦେବି । ଆପଣ ଭୀମ ଓ ଅର୍ଜୁନଙ୍କୁ ମୋ' ସାଙ୍ଗରେ ଯିବା ନିମିତ୍ତ ଅନୁମତି ଦିଅନ୍ତୁ । ତାଙ୍କର ବାତ୍ସଲ୍ୟ ମମତାକୁ ଦେଖି ଆପଣ ସେ ସମୟରେ କେତେ କାନ୍ଦିଥିଲେ ଆଉ ପ୍ରେମାଶ୍ରୁଦ୍ୱାରା ପୀତାମ୍ବରଙ୍କୁ ପୁରାପୁରି ଭିଜେଇ ଦେଇଥିଲେ । ଆପଣ ଆମ ଦୁହିଁଙ୍କୁ ତାଙ୍କୁ ଅର୍ପଣ କରିଦେଲେ । ବାଟରେ ଯାଉଁ ଯାଉଁ ଆମେ ନାନାପ୍ରକାର ଆମୋଦପ୍ରମୋଦ କରିଥିଲୁ ।

ପ୍ରଥମେ ସେ ମୋତେ କହିଲେ—ଭାଇ ଅର୍ଜୁନ ! ଜରାସନ୍ଧ ବଡ଼ ଧନ୍ଧଆର । ତାକୁ ଜୟ କରିବା କିପରି ? ତୁମେ କୁହ, ତୁମେ ତା' ସହିତ ଲଢ଼େଇ କରିପାରିବ ତ ? ମୁଁ କହିଲି—ଆପଣଙ୍କ ଆଦେଶ ହେଲେ ମୁଁ ଯୁଦ୍ଧ କରିବି । ମୁଁ ଯୁଦ୍ଧରେ ତାକୁ ମାରିଦେବି ବା ସେ ମୋତେ ମାରିଦେବ ।' ମୋ କଥାରେ ପିଲାଙ୍କ ଭଳି ଡରିଯାଇ ସେ କହିଲେ—'ନାଁ ନାଁ । ଆରେ ତୁମର ଯଦି କିଛି ଅନିଷ୍ଟ ହୋଇଯିବ ତେବେ ମୁଁ ଧର୍ମରାଜଙ୍କୁ ମୁହଁ ଦେଖାଇବି କିପରି ? ଦେଖ, ସେ ଖୁବ୍ ବଳୁଆ । ମୁଁ ତ ତାରି ଡରରେ ପଳାଇ ଯାଇ ସମୁଦ୍ର ମଝିରେ ରହୁଛି । ତାକୁ ବଳରେ କେହି ପରାସ୍ତ କରିପାରିବ ନାହିଁ । 'ତାହାହେଲେ ଫେରିଯିବା ଚାଲନ୍ତୁ, ତା' ପାଖକୁ ଯିବା କାହିଁକି ? ମୋର ଏପରି କଥା ଶୁଣି ସେ ଅନ୍ୟମନସ୍କଭାବେ କହିଲେ—ଆରେ ଭାଇ, ଏବେ ଆଉ ଫେରିଯିବା କିମିତି ? ଧର୍ମରାଜଙ୍କ ରାଜସୂୟ ଯଜ୍ଞ ହୋଇପାରିବ ନାହିଁ । ଆଶା ତାଙ୍କର ଚୁରମାର ହୋଇଯିବ । ସେ ଅତ୍ୟନ୍ତ ଦୁଃଖ କରିବେ । ଧର୍ମରାଜଙ୍କୁ ଚିନ୍ତିତ ବା ଦୁଃଖିତ ଦେଖିଲେ ମୋ ଜୀବନ ବ୍ୟର୍ଥ ହୋଇଯିବ । ମୋର ସମସ୍ତ ଯତ୍ନ ତାଙ୍କର ପ୍ରସନ୍ନତା ରକ୍ଷା ନିମିତ୍ତ ।

ଶ୍ରୀକୃଷ୍ଣଙ୍କ କଥା ଶୁଣି ମୁଁ କହିଲି—ଆପଣ କ'ଣ ଯେ କହୁଛନ୍ତି, ମୋତେ ଯୁଦ୍ଧ କରିବାକୁ ଆଦେଶ ନ ଦେଇ ତା' ସାମର୍ଥ୍ୟର ଭୂରି ଭୂରି ପ୍ରଶଂସା କରୁଛନ୍ତି ।

Digitized by srujanika@gmail.com

ଆପଣ ନିଜଠାରୁ ତାକୁ ଅଧିକ ବଳବାନ ବୋଲି ମନେ କରୁଛନ୍ତି । ପୁଣି ଫେରିଯିବା ପାଇଁ ମଧ୍ୟ ଇଚ୍ଛା କରୁନାହାନ୍ତି, ଆପଣ କ'ଣ କରିବା ପାଇଁ ଚାହୁଁଛନ୍ତି ଜଣାପଡ଼ୁନାହିଁ । ସେ ପୁଣି ଆମ ଦୁହିଁଙ୍କୁ ଲକ୍ଷ୍ୟ କରି କହିଲେ —ଜରାସନ୍ଧକୁ ପରାଜିତ ନ କଲେ ରାଜସୂୟ ଯଜ୍ଞ ହୋଇପାରିବ ନାହିଁ । ଭୀମସେନ ତାକୁ ମାରିଦେଇ ପାରିବେ; କିନ୍ତୁ ଭୀମଙ୍କଠାରୁ ତା'ର ଅସ୍ତ୍ରଚାଳନା କୌଶଳ ଅଧିକ । ପୁଣି ଭାଇ ଭୀମସେନଙ୍କ ଆଡ଼କୁ ଚାହିଁ କହିଲେ—ଭୀମ ! ଆଜି ତୁମର ପରୀକ୍ଷା । ତୁମେ ଜରାସନ୍ଧକୁ ମାରି ନ ପାରିଲେ, ସମସ୍ତେ ତୁମକୁ ପେଟୁ ବୋଲି କହିବେ । ଲୋକେ କହିବେ ଖାଇବାବେଳକୁ ବାଘ ଆଉ ଲଢ଼େଇବେଳକୁ ବିଲେଇ । ଭାଇ ! ଆମେ ଦୁହେଁ ତୁମ ଆଗରେ ପିଲା । ଆମ ତିନିଜଣଙ୍କ ମଧ୍ୟରେ ତୁମେ ବଡ଼ । ତୁମେ ହିଁ ଜରାସନ୍ଧ ସହିତ ଯୁଦ୍ଧ କରିବ ।'

ଭୀମସେନ ଅଭିମାନପୂର୍ଣ୍ଣ ସ୍ୱରରେ କହିଲେ—'ଠିକ୍ ଅଛି । ତୁମେ ଦୁହେଁ ଚୁପ୍‌ଚାପ୍ ବସିବ । ମୁଁ ତାକୁ ଦେଖିବି, ସେ କେଡ଼େ ବଳୁଆ ।' ଏତକ ଶୁଣିବା ମାତ୍ରେ ଶ୍ରୀକୃଷ୍ଣ ଖିଲ୍ ଖିଲ୍ ହୋଇ ହସି ଉଠିଲେ । କେତେ ମଧୁର ସେ ହସ ! ଖିଆଲିଆ କଥାବାର୍ତ୍ତାବେଳେ ଯେବେ ସେ ହସି ଉଠନ୍ତି ସେତେବେଳେ ମୁହଁରୁ ମୁକ୍ତା ଝରିପଡ଼ିଲା ଭଳି ଲାଗେ । ହସି ହସି ସେ ମାଟିରେ ଗଡ଼ିଯାଆନ୍ତି, ଆଉ ସମସ୍ତଙ୍କୁ ହସାଇ ଦିଅନ୍ତି । ବହୁ ସମୟପରେ ହସି ହସି କହିଲେ—'ଭାଇ ! ଆମେ ଦୁହେଁ ଦୂରରେ ଠିଆହୋଇ ତୁମର ଲଢ଼େଇ ଦେଖିବୁ । ଯେତେବେଳେ ଦେଖିବୁ ତା'ର ଜିତିବା ଅବସ୍ଥା ଆସିଲା, ସେତେବେଳେ ଆମେ ଦୁହେଁ କଣ୍ଟୁ ଭିଡ଼ି ଚମ୍ପଟ । ସେଭଳି ପରାକ୍ରମୀ ବୀର ସହିତ ଯୁଦ୍ଧକରିବା ପାଇଁ ଆମର ସାମର୍ଥ୍ୟ କାହିଁ ?'

ଭୀମସେନ ଭାଇ ମଧ୍ୟ କହିଲେ—'ମୁଁ ଜାଣେ, ତୁମେ ଦୁହେଁ କେବଳ ଖସି ପଳେଇବା ଜାଣିଛ । କେବେ ତୁମେ ଲଢ଼େଇ କରିବା ଜାଣିଲ ? ଏ ସଂସାରରେ ତୁମଭଳି ଡରୁଆ ଆଉ ଛେରୁଆ କେହି ନ ଥିବେ ? ମୁଁ ସେ ଜରାସନ୍ଧକୁ ମଝିରୁ ଦୁଇଫାଳ କରି ଚିରିଦେବି । ତୁମେ ଦୁହେଁ ମୋତେ କ'ଣ ଭାବିଛ କି ?' ଏହା ଶୁଣି ଶ୍ରୀକୃଷ୍ଣ ବଡ଼ ଖୁସି ହେଲେ । ଭୀମସେନଙ୍କୁ ନିଜ ଛାତିରେ ଭିଡ଼ି ଧରି ସେ କହିଲେ—ଭୀମସେନ ! ତୁମେ ନିଶ୍ଚୟ ତାକୁ ମାରିଦେଇ ପାରିବ । ତୁମରି ବଳ ଉପରେ ଭରସା ରଖି ତ ଆମେ ଆସିଛୁ ।

ରାଜନ୍ ! କାହାର ବଳ ଉପରେ ତାଙ୍କର ଭରସା ଥିଲା । କରିବା କରାଇବା ଲୋକ ତ ସେହି ଜଣେ । ପ୍ରତ୍ୟେକ କାର୍ଯ୍ୟରେ କାହାର ଜଣକୁ ନିମିତ୍ତ ରଖିଥାନ୍ତି । ଭୀମସେନଙ୍କୁ ନିମିତ୍ତ କରି ସେ ଦଶହଜାର ହାତୀବଳରେ ବଳିଆର ଦୈତ୍ୟରାଜ ଜରାସନ୍ଧକୁ ହତ୍ୟା କରିବା ପରେ ବନ୍ଦଶାଳାରେ ପଡ଼ି ସଡ଼ୁଥିବା ହଜାର ହଜାର

Digitized by srujanika@gmail.com

ରାଜାଙ୍କୁ ବନ୍ଧନମୁକ୍ତ କରିଥିଲେ । ଦୀର୍ଘକାଳ ଧରି କାରାବାସ ଦଣ୍ଡ ଭୋଗୁଥିବାରୁ ସେହି ରାଜାମାନେ ନିଜ ନିଜର ଜୀବନ ଆଶା ହରାଇ ବସିଥିଲେ । ଭକ୍ତଭୟହାରୀ ଜୀବନର ପ୍ରଭୁ ଶ୍ରୀକୃଷ୍ଣ ସେହି ସେବକମାନଙ୍କୁ ଜୀବନଦାନ ଦେଇ ଯଥୋଚିତ ସତ୍କାର କରିଥିଲେ । ବିଚିତ୍ର ଯାନ ବାହନରେ ସେମାନଙ୍କୁ ନିଜ ରାଜ୍ୟକୁ ବିଦାୟ ଦେବାବେଳେ ବାରମ୍ବାର ବୁଝାଇ ସୁଝାଇ କହୁଥିଲେ—'ଦେଖ, ତୁମେ ସମସ୍ତେ ଧର୍ମରାଜଙ୍କ ରାଜସୂୟ ଯଜ୍ଞରେ ଉତ୍ତମ ଉପହାର ସହିତ ଆସି ଯୋଗଦେବ । କାହାକୁ କହିଲେ ତୁମର ତ ସେଠି ସୁନାଖଣି ଅଛି । ଅଧିକ ପରିମାଣରେ ଭଲ କିସମର ସୁନା ଧରି ଆସି ପହଞ୍ଚିବ । ଅନ୍ୟ କାହାକୁ କହିଲେ ଦଶହଜାର ହାତୀ, କୋଡ଼ିଏ ହଜାର ଭଲ ଘୋଡ଼ା, କମ୍ବଳ, ମୃଗଚର୍ମ ପ୍ରଭୃତି ଆଣିବ । ଲୋଭୀ ରାଜା ନିଜ ପ୍ରଜାମାନଙ୍କ ଉପରେ ନାନାପ୍ରକାର କର ଭାର ଲଦି ଦେଇ ବିବିଧ ଭୋଗ୍ୟବସ୍ତୁ ସଂଗ୍ରହ କଲାଭଳି ସେ ସମୟରେ ଶ୍ରୀକୃଷ୍ଣ ମୁକ୍ତି ଲାଭ କରିଥିବା ରାଜାମାନଙ୍କୁ ଏହିପରି ଆଦେଶ ଦେଉଥିଲେ । ରାଜାମାନେ ତାଙ୍କର ଆଦେଶକୁ ଶିରୋଧାର୍ଯ୍ୟ କରି ଆପଣଙ୍କ ରାଜସୂୟ ଯଜ୍ଞରେ ନାନାବିଧ ଉପହାର ସହିତ ଉପସ୍ଥିତ ହୋଇଥିଲେ । ସମସ୍ତେ ନିଜ ନିଜର ମୁକୁଟ ମଣିଦ୍ୱାରା ଆପଣଙ୍କ ଚରଣକୁ ଚମତ୍କୃତ କରିଥିଲେ । ସେହି ଶ୍ୟାମସୁନ୍ଦର ଆଜି ଆମ୍ଭମାନଙ୍କୁ ଛାଡ଼ି ଚାଲିଗଲେ । ଏ ପୃଥିବୀ ଆଜି ବିଧବା ହୋଇଯାଇଛି । ଏ ସଂସାର ମୋତେ ଶୂନ୍ୟ ଲାଗୁଛି । କ'ଣ କରିବି, କୁଆଡ଼େ ଯିବି, କିପରି ତାଙ୍କୁ ଫେରି ପାଇବି ? ଏହା କହି ଅର୍ଜୁନ ଲୁଗାରେ ମୁହଁ ଘୋଡ଼ାଇ କାନ୍ଦିବାକୁ ଲାଗିଲେ ।

## ଛପ୍ପୟ

ଆଜ୍ଞା ଲୈକେ ଚଲେ ସାଥ ହମ ଦୋଉ ଲୀନ୍ହେ ।
କ୍ଷର୍ତ୍ରୀ ବାନାଂ ବଦଲି ବେଷ ବିପ୍ରନ କେ କୀନ୍ହେ ॥
ଜେୟଷ୍ଠ ବନ୍ଧୁ ତୈଁ ଭିଡ଼ା ଦୁଷ୍ଟ ମରବାୟୋ ଛିନତେଂ ।
ବନ୍ଦୀ ଭୂପତି ମୁକ୍ତ କରେ ବେ ଲେ ହରି ଉନତେଁ ॥
ଧର୍ମରାଜ କେ ଯଜ୍ଞ ମେଁ ବହୁତ ଭେଁଟ ଲେ ଆଉ ସବ ।
ତେଉ ହୀ ହମରେ ହୃଦୟଧନ, ଶ୍ୟାମ ସିଧାରେ ଧାମ ଅବ ॥



Digitized by srujanika@gmail.com

# ଦ୍ରୌପଦୀଙ୍କ ବସ୍ତ୍ରହରଣ
# ଓ ଶ୍ରୀକୃଷ୍ଣଙ୍କ କୃପା

ପତ୍ନ୍ୟାସ୍ତବାଧ୍ୱମଖକ୍ଳୃପ୍ତମହାଭିଷେକ—
ଶ୍ଳାଘିଷ୍ଠଚାରୁକବରଂ କିତବୈଃ ସଭାୟାମ୍ ।
ସ୍ପୃଷ୍ଟଂ ବିକୀର୍ୟ ପଦୟୋଃ ପତିତାଶ୍ରୁମୁଖ୍ୟା
ଯସ୍ତ ସ୍ତ୍ରିୟୋଽକୃତ ହତେଶ ବିମୁକ୍ତକେଶାଃ ॥

( ଭାଗବତ ୧ । ୧୫ । ୧୦ )

### ଛପ୍‌ପୟ

ରାଜନ୍ ! କହଁ କହଁ କହଁ କରୀ ହମରୀ ରଖବାରୀ ।
ଦୁଷ୍ଟ ଫନ୍ଦମେ ଫସୀ ଦ୍ରୌପଦୀ ପ୍ରିୟା ହମାରୀ ॥
ଜିନମେଁ ଛିଁଟା ରାଜସୂୟ ପୟକେ ଶୁଭଲାଗେ ।
ଖୋଲେ ଖୀଂଚେ କେଶ ଖଲନି ନେ ସବକେ ଆଗେ ॥
ରୋଇ ଅତିହି ଦୀନ ହ୍ୱୈ ରକ୍ଷା ନହିଁ କାହୂ କରୀ ।
କୃଷ୍ଣ ପୁକାରେ କରୁଣ ସ୍ୱର କାନ ଭନକ ଉନକେ ପରୀ ॥

ଭଗବତ୍ ସ୍ମରଣ ଯେଉଁ ଦୁଃଖରେ ହୁଏ, ସେଭଳି ଦୁଃଖ ସର୍ବଦା ସମସ୍ତଙ୍କୁ ମିଳୁ । ଭଗବାନ୍‌ଙ୍କ ସମ୍ବନ୍ଧରେ ଯେଉଁ ଦୁଃଖ ହୁଏ, ତାହା ହିଁ ପରମ ସୁଖ । ବୃନ୍ଦାବନବାସୀ ଶ୍ରୀକୃଷ୍ଣଙ୍କ ବିରହ ବ୍ୟଥା ବିରହ ନୁହେଁ, ତାହା ହିଁ ମାନସିକ ସଂଯୋଗର ସରଣୀ । ଯେ ଅବିନାଶୀ ତା'ର ବିନାଶ ନାହିଁ, ବରଂ ପରୋକ୍ଷ ବା ଚର୍ମ ଚକ୍ଷୁରେ ଅଦୃଶ୍ୟ ଅବସ୍ଥା ଜାତ ହୁଏ । ବାହ୍ୟ ଦୃଷ୍ଟିରେ ଦେଖିବାକୁ ଅସମର୍ଥ ହେଲେ ଅନ୍ତର୍ଦୃଷ୍ଟିରେ ତାଙ୍କୁ ଦେଖିବା ପାଇଁ ଚେଷ୍ଟା କରାଯାଏ । ଏହା ହିଁ ମୋକ୍ଷ ଓ ପରମାନନ୍ଦ ସୁଖ । ତେଣୁ ଶ୍ରୀକୃଷ୍ଣଙ୍କ ପ୍ରସଙ୍ଗରେ ବେଦନ ହିଁ ମୋକ୍ଷମାର୍ଗର ସୋପାନ ସ୍ୱରୂପ ।

ଜରାସନ୍ଧ ବଧ ସମ୍ବନ୍ଧରେ ଶ୍ରୀକୃଷ୍ଣଙ୍କ କୃପା ପ୍ରସଙ୍ଗ ଶୁଣିବା ପରେ ଧର୍ମରାଜ କାନ୍ଦି କାନ୍ଦି ଗଦ୍‌ଗଦ୍ କଣ୍ଠରେ କହିଲେ—'ଅର୍ଜୁନ ! ତୁମେ ତାଙ୍କର କଥା କହି

Digitized by srujanika@gmail.com

ମୋତେ ମୃତ୍ୟୁଠାରୁ ବାରମ୍ବାର ଦୂରେଇ ନେଉଛ । ଯେ ପର୍ଯ୍ୟନ୍ତ ତୁମେ ଶ୍ରୀକୃଷ୍ଣ ପ୍ରସଙ୍ଗ ରୂପକ ଅମୃତ ସଞ୍ଜୀବନୀରସ ମୋର ଶ୍ରୋତ୍ର ଗହ୍ୱରରେ ପୂର୍ଣ୍ଣ କରୁଥିବ ସେ ପର୍ଯ୍ୟନ୍ତ ହୃଦୟ ମୋର ଫାଟିବ ନାହିଁ କି ଚେତନା ବିଲୁପ୍ତ ହେବ ନାହିଁ । କୁହ ଅର୍ଜ୍ଜୁନ । ଆହୁରି କୁହ । ମୋତେ ଜୀବିତ ରଖିବାକୁ ଚାହୁଁଥିଲେ କଥାର ସୂତ୍ର ଛିନ୍ନ କର ନାହିଁ । ଧର୍ମରାଜଙ୍କ ଆକୁଳ ବଚନ ପୁଣି ଏବଂ ସଭାସଦ୍‌ମାନଙ୍କ ବ୍ୟଗ୍ରତା ହୃଦୟଙ୍ଗମ କରି ଆଖି ପୋଛି ଅର୍ଜ୍ଜୁନ କହିବାକୁ ଲାଗିଲେ—ଶ୍ରୀକୃଷ୍ଣଙ୍କ କୃପା ଅନନ୍ତ ତାହାର ଅନ୍ତ କଳନା ଅସମ୍ଭବ । ଜଣେ ସାଧାରଣ ସେବକ ଓ ସ୍ୱାମୀଭକ୍ତ ଭୃତ୍ୟ ପରି ସେ ସର୍ବଦା ଆମର, ଆମ ପରିବାରର ତଥା ଆମର ପଦ, ପ୍ରତିଷ୍ଠା ଓ ରାଜ୍ୟର ସୁରକ୍ଷା କରି ଆସୁଥିଲେ । ସ୍ମରଣ କରିବା ମାତ୍ରେ ସେ ଉପସ୍ଥିତ ହେଉଥିଲେ । ତାଙ୍କର ବାହ୍ୟ ଉପସ୍ଥିତି ଉପଚାର ମାତ୍ର । ସେ ତ ସର୍ବାନ୍ତର୍ଯ୍ୟାମୀ, ପ୍ରତ୍ୟେକ ଘଟରେ ସେ ବିଦ୍ୟମାନ । ତେଣୁ ସେ କୁଆଡ଼େ ଯାଆନ୍ତି ନାହିଁ କି ଆସନ୍ତି ନାହିଁ । ଭକ୍ତ ଯେଉଁଠି ପ୍ରେମରେ ଡାକିଲା ସେ ତତ୍‌କ୍ଷଣାତ୍ ସେଠାରେ ଉପସ୍ଥିତ ହୋଇଗଲେ; କିନ୍ତୁ ଆମ ହୃଦୟରେ ପ୍ରେମ ନ ଥିଲା । ତଥାପି ଆମ ପ୍ରତି ତାଙ୍କର ଅହେତୁକ କୃପାଥିବାରୁ ସ୍ମରଣ ମାତ୍ରେ ଆସି ଉପସ୍ଥିତ ହୋଇଯାଉଥିଲେ ।

ଆପଣଙ୍କ ରାଜସୂୟ ଯଜ୍ଞରେ ଅତୁଳ ବୈଭବ ଦେଖି ଦୁଷ୍ଟ ଦୁର୍ଯ୍ୟୋଧନ ମନରେ ଅପାର ଈର୍ଷା ଜାତ ହେଲା । ଜଳରେ ସ୍ଥଳ ଓ ସ୍ଥଳରେ ଜଳର ଭ୍ରମ ଜାତ ହେବାରୁ ଦୁର୍ଯ୍ୟୋଧନ ବିଶେଷ ଅପମାନିତ ହୋଇଥିଲା । ଆପଣଙ୍କ ଐଶ୍ୱର୍ଯ୍ୟର ଈର୍ଷାରେ ସେ ଦୁଃଖିତ ଓ ଅନ୍ଧ ହୋଇଯାଇଥିଲା । ତେଣୁ ଦୁଷ୍ଟମାନେ ମିଶି ଦ୍ୟୁତସଭା ରଚନା କରିଥିଲେ । ଧୃତରାଷ୍ଟ୍ରଙ୍କୁ ବୁଝାଇ ସେମାନେ ନିଜ ପକ୍ଷକୁ ନେଇ ଯାଇଥିଲେ । ଭାଇମାନଙ୍କ ସହିତ ଆପଣଙ୍କୁ ଜୁଆଖେଳ ନିମିତ୍ତ ନିମନ୍ତ୍ରଣ କରାଗଲା । ଧର୍ମାନୁସାରେ ନିମନ୍ତ୍ରଣ ସ୍ୱୀକାର କରି ଆପଣ ଆମ୍ଭମାନଙ୍କୁ ନେଇ ଇନ୍ଦ୍ରପ୍ରସ୍ଥରୁ ହସ୍ତିନାପୁର ଗଲେ । ଜୁଆଖେଳରେ ନିଜର ସର୍ବସ୍ୱ ସହିତ ଦ୍ରୌପଦୀଙ୍କୁ ମଧ୍ୟ ହରାଇଲେ । ଦୁର୍ଯ୍ୟୋଧନଙ୍କ ମାମୁଁ ଶକୁନି, ଭାଇ ଦୁଃଶାସନ ଓ କର୍ଣ୍ଣ ସେହି ସଭାରେ ନାନାବିଧ ଛଳବଳ କୌଶଳରେ ଆପଣଙ୍କୁ ପରାଜିତ କଲେ । ପଣ ରଖି ଆପଣ ଦ୍ରୌପଦୀଙ୍କ ସହିତ ଆମ୍ଭମାନଙ୍କୁ ମଧ୍ୟ ହରାଇ ବସିଲେ । ନିୟମ ଅନୁସାରେ ଦ୍ରୌପଦୀ ତାଙ୍କର ଦାସୀ ପାଲଟିଲେ । ଏବେ ତାଙ୍କର ଈର୍ଷାଗ୍ନି ନିର୍ବାପନ ନିମିତ୍ତ ପ୍ରକୃଷ୍ଟ ଅବସର ମିଳିଗଲା । ଆପଣଙ୍କୁ ଅପମାନିତ କରିବା ନିମିତ୍ତ ଘୃଣ୍ୟରୁ ଘୃଣ୍ୟତର କାର୍ଯ୍ୟ କରିବା ଆରମ୍ଭ କରିଦେଲେ । ସଂସାରରେ ସେଭଳି ବଡ଼ ପାପ ଆଉ କେହି କରିପାରିବେ ନାହିଁ । ଶାସ୍ତ୍ରରେ ସ୍ତ୍ରୀଲୋକ ଅବଧ୍ୟ ବୋଲି କୁହାଯାଇଛି । ଯେ କୌଣସି ଜାତିର ସ୍ତ୍ରୀ ହେଲେ ମଧ୍ୟ, ତା'ର ସୁରକ୍ଷା ନିମିତ୍ତ ଆବଶ୍ୟକ ହେଲେ ଜୀବନ ଉତ୍ସର୍ଗ କରିବା ଉଚିତ । ସମସ୍ତଙ୍କ ସମ୍ମୁଖରେ କୌଣସି ସ୍ତ୍ରୀ ଲୋକକୁ

Digitized by srujanika@gmail.com

ଅପମାନିତ କରିବା ମହା ଅପରାଧ । ଯେ କୌଣସି ବର୍ଣ୍ଣର ସ୍ତ୍ରୀ ଲୋକକୁ ଦୁଃଖ ବିପଦରେ ପଡ଼ିଥିଲେ ଉଦ୍ଧାର କରିବା ଉଚିତ । ଶାସ୍ତ୍ରକାରମାନେ ଏ ସମସ୍ତ ବାରମ୍ବାର କହିଛନ୍ତି ।

ରାଜା ହୋଇ ନିଜ ଘରର, ନିଜ ଜ୍ୟେଷ୍ଠ ଭାଇର ପତ୍ନୀ ତଥା ମହାରାଣୀଙ୍କୁ ଅପମାନିତ କରିବା ଘଟଣା କେହି ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରିବ ନାହିଁ । ରାଜସୂୟ ଯଜ୍ଞରେ ଦୀକ୍ଷା ନେଇଥିବା, କଠିନ ବିଧିବିଧାନ ଅନୁବର୍ତ୍ତିନୀ ଦେବବନ୍ଦିତା ରାଜମହିଷୀଙ୍କ ଲଜ୍ଜାକୁ ସମସ୍ତଙ୍କ ଆଗରେ ପରିପୂର୍ଣ୍ଣ ସଭାରେ ଅପହରଣ କରିବା ଭଳି କ୍ରୂରତମ କର୍ମ ରାକ୍ଷସଦ୍ୱାରା ମଧ୍ୟ ସମ୍ଭବ ନୁହେଁ । ଦୈତ୍ୟ, ଦାନବାଦି ମଧ୍ୟ ନିଜର କୁଳାଙ୍ଗନାମାନଙ୍କୁ ଆଦର ଓ ସମ୍ମାନ କରନ୍ତି । ସେମାନଙ୍କ ଲଜ୍ଜା ରକ୍ଷା ନିମିତ୍ତ ପ୍ରାଣ ବିସର୍ଜନ କରନ୍ତି; କିନ୍ତୁ ସେହି ଦ୍ୟୂତସଭାରେ ସମସ୍ତେ ଏଭଳି ଘୋର ମହାପାପ କାର୍ଯ୍ୟ କଲେ ଯାହା ସ୍ମରଣ ମାତ୍ରେ ଦେହ ରୋମାଞ୍ଚିତ ହୋଇ-ଉଠୁଛି । ସେ ସମୟରେ ସମସ୍ତେ ବୁଦ୍ଧିଭ୍ରଷ୍ଟ ହୋଇଗଲେ, କୁଳକ୍ରମାଗତ ଧର୍ମକୁ ଭୁଲିଗଲେ ଏବଂ ସଦାଚାରକୁ ନଷ୍ଟଭ୍ରଷ୍ଟ କରିଦେଲେ । ଦୁଷ୍ଟ ଦୁର୍ଯ୍ୟୋଧନ ଦ୍ରୌପଦୀଙ୍କୁ ସଭାକୁ ନେଇ ଆସିବା ନିମିତ୍ତ ଅନୁଜ ଦୁଃଶାସନକୁ ଆଦେଶ ଦେଲେ ।

ଦୁର୍ଯ୍ୟୋଧନର ଆଦେଶ ଶୁଣି ଆମ୍ଭେମାନେ ସ୍ତବ୍ଧ ହୋଇଗଲୁ । ଆମେ ନିଜର କର୍ତ୍ତବ୍ୟ ପାଳନ କରିପାରିଲୁ ନାହିଁ । ଆପଣ ଧର୍ମପାଶରେ ଆବଦ୍ଧ ହୋଇ ନିଶ୍ଚେଷ୍ଟ ଭାବେ ବସି ରହିଥିଲେ । କ୍ରୂରକର୍ମା ଦୁଃଶାସନ ରାଣୀହଂସପୁରକୁ ଯାଇ ଯେଉଁ କେଶପାଶକୁ ଅଶ୍ୱମେଧ ମହାଯଜ୍ଞରେ ମନ୍ତ୍ରପୂତ ଜଳଦ୍ୱାରା ଅଭିଷେକ କରାଯାଇଥିଲା; ସେହି କୃଷ୍ଣ କୁଞ୍ଚିତ କେଶ ଆକର୍ଷଣ କରି ମହାସତୀ ଅସୂର୍ଯ୍ୟଂପଶ୍ୟା ଦ୍ରୌପଦୀଙ୍କୁ ସଭାସ୍ଥଳକୁ ନେଇ ଆସିଲା । ବ୍ୟାଧପାଶ ଆବଦ୍ଧ ହରିଣୀ ଭଳି ଆପଣଙ୍କ ପ୍ରିୟତମା ପତ୍ନୀ ବହୁକାଳ କରୁଣ ବିଳାପ କରିଥିଲେ । ଅତି ଦୀନହୀନ ଭାବେ ସେ ଦୁଷ୍ଟ ଦୁର୍ଯ୍ୟୋଧନ ଓ ଦୁଃଶାସନର ଦୟା ଭିକ୍ଷା ମଧ୍ୟ କରିଥିଲେ । ପାଦତଳେ ପଡ଼ି ଦ୍ରୌପଦୀ କାନ୍ଦି କାନ୍ଦି କହିଥିଲେ ହେ ଦେବର ! ଏଭଳି ପାପ କାର୍ଯ୍ୟ କର-ନାହିଁ । ମୁଁ ବର୍ତ୍ତମାନ ଏକବସ୍ତ୍ରା ମୁଁ ରଜସ୍ୱଳା । ସମସ୍ତଙ୍କ ଆଗକୁ ଯିବାପାଇଁ ଯୋଗ୍ୟ ନୁହେଁ । ମୋତେ ଅପମାନିତ କରନାହିଁ । ମୋର ମାନ ରକ୍ଷା କର । ମୋତେ ବାରାଙ୍ଗନାଙ୍କ ଭଳି ବ୍ୟବହାର କରନାହିଁ । ମୁଁ ହାତ ଯୋଡ଼ୁଛି । ପାଦ ଧରୁଛି, ମୋତେ ଛାଡ଼ିଦିଅ । ମୁଁ ଅନ୍ୟ କେହି ନୁହେଁ, ତୁମର ବଡ଼ଭାଇଙ୍କ ପତ୍ନୀ; କିନ୍ତୁ, ଦୁଷ୍ଟ ଦୁଃଶାସନ କିଛି ଶୁଣିଲା ନାହିଁ । ଦ୍ରୌପଦୀଙ୍କ ଚୁଟି ଧରି ଘୋଷାରି ଘୋଷାରି ସଭାକୁ ନେଇ ଆସିଲା ।

Digitized by srujanika@gmail.com

ସଭାରେ ଉପବିଷ୍ଟ ସମସ୍ତେ ସ୍ତବ୍ଧ ହୋଇ ବସିଥିଲେ । କାହାର ମୁହଁରୁ ପଦଟିଏ କଥା ମଧ୍ୟ ବାହାରିଲା ନାହିଁ । ଭୀଷ୍ମ, ଦ୍ରୋଣ, ଧୃତରାଷ୍ଟ୍ର ଗୁରୁଜନମାନେ ମୌନ ଥାନ୍ତି । ଦ୍ରୌପଦୀ ବାରମ୍ବାର କାତର ଦୃଷ୍ଟିରେ ହରିଣୀ ଭଳି ଆପଣଙ୍କ ଆଡ଼କୁ ଚାହୁଁଥିଲେ; କିନ୍ତୁ, ଆପଣ ତାଙ୍କ ଆଡ଼କୁ ଆଦୌ ଚାହୁଁ ନ ଥିଲେ । ସଭାସଦ୍‌ଗଣ ସମସ୍ତେ ଆଖି ତଳକୁ କରି ବସିଥାନ୍ତି । ଦ୍ରୌପଦୀଙ୍କ ଆଖିରୁ ଦୁଃଖ, ଅପମାନ ଓ କ୍ରୋଧଜନିତ ଅଗ୍ନିକଣା ବିଚ୍ଛୁରି ପଡ଼ୁଥିଲା; କିନ୍ତୁ ଆପଣଙ୍କର ଶାନ୍ତଶୀତଳ ମୁଖ ଅବଲୋକନ କରି ସେ ମଧ୍ୟ ଶାନ୍ତ ହୋଇଯାଉଥିଲେ । ସେ ସେହି ଅଧର୍ମ ସଭାକୁ ଭସ୍ମୀଭୂତ ନ କରି ଆପଣଙ୍କ ଆଡ଼କୁ ଚାହୁଁଥାନ୍ତି । ଆମ୍ଭେମାନେ ମଧ୍ୟ ଆପଣଙ୍କ ମୁହଁକୁ ଚାହିଁଥାଉଁ; କିନ୍ତୁ, ଆପଣ ଧର୍ମକୁ ହିଁ ଅଣ୍ଡାଳୁ-ଥିଲେ । ଅଧର୍ମ ଆଗରେ ଚରିତବତୀ, ଧର୍ମଶୀଳା ଦ୍ରୌପଦୀଙ୍କୁ ରକ୍ଷା କରିବାରେ ଅସମର୍ଥ ବୋଲି ପ୍ରତୀତ ହେଉଥିଲେ ।

ସଭାରେ ଉପସ୍ଥିତ ସମସ୍ତଙ୍କୁ କରୁଣ ଭାବେ ପ୍ରାର୍ଥନା କରି ମଧ୍ୟ ଆତ୍ମରକ୍ଷାର କୌଣସି ଉପାୟ ନ ପାଇ ଆକୁଳଭାବେ ଦ୍ରୌପଦୀ ଅଶରଣ ଶରଣ ଦୀନବନ୍ଧୁଙ୍କୁ ସ୍ମରଣ କରିଥିଲେ । କାନ୍ଦି କାନ୍ଦି ଅଶ୍ରୁଳ ନୟନରେ ଦୀନତାର ସହିତ ସେ ପ୍ରାର୍ଥନା କଲେ—'ହେ ଶ୍ୟାମସୁନ୍ଦର ! ତୁମେ କୁଆଡ଼େ ଗଲ, ହେ ନାଥ ! ହେ ପ୍ରଭୋ ! ମୋତେ ରକ୍ଷା କର । ଦୁଷ୍ଟ ମୋର ଲଜ୍ଜା ଅପହରଣ କରୁଛି । ହେ ଭକ୍ତ ଭୟ-ଭଞ୍ଜନ ! ଭଗବାନ୍ ! ମୋର ଭୟ ଦୂର କର । ହେ ପ୍ରଭୋ ! ତୁମରି ଦାସୀ ହୋଇ ମଧ୍ୟ ମୋର ଲଜ୍ଜା ନ ରହିଲେ ଲୋକେ ମୋତେ ନୁହେଁ ତୁମକୁ ହିଁ ହସିବେ । ହେ ଅଶରଣ ଶରଣ ! ମୁଁ ହତାଶ ହୋଇ ତୁମରି ଶରଣ ପ୍ରାର୍ଥନା କରୁଛି ।'

ରାଜନ୍ ! ସ୍ମରଣମାତ୍ରେ ହିଁ ଭଗବାନ୍ ସେଠାକୁ ଦୌଡ଼ି ଆସିଥିଲେ । ସମସ୍ତେ ତାଙ୍କୁ ଦେଖିପାରି ନାହାନ୍ତି । ସେଠାରେ ସେ ନିଜର ଏକ ଅଦ୍‌ଭୁତ ଅବତାର ପ୍ରକଟ କରିଥିଲେ । ସେ ସମୟରେ ନୀଳବର୍ଣ୍ଣ ତ୍ୟାଗ କରି ବିବିଧ ବର୍ଣ୍ଣ ଧାରଣ କରିଥିଲେ । ସେତେବେଳେ ଅଣ୍ଡଜ, ପିଣ୍ଡଜ, ଉଦ୍‌ଭିଜ୍ଜ ଓ ସ୍ୱେଦଜ ଆଦି ଶରୀର ତ୍ୟାଗ କରି ସେ ବସନ ରୂପ ଧାରଣ କରିଥିଲେ । ସେ ଜଡ଼କୁ ଚେତନ, ଶାନ୍ତକୁ ଅନନ୍ତ ରୂପରେ ପ୍ରତିପାଦନ କରିଥିଲେ । ଦୁଃଶାସନ ଦ୍ରୌପଦୀଙ୍କ ଦେହରୁ ଯେତେ ଶାଢ଼ୀ ଟାଣି ଟାଣି ବାହାର କରୁଥାଏ, ତାହା ସେତିକି ବଢ଼ି ଯାଉଥାଏ । ଏକ ମୁହୂର୍ତ୍ତରେ ରଙ୍ଗତ ଚିତ୍ର ବିଚିତ୍ର ନାନାରଙ୍ଗର ଶାଢ଼ୀ ବାହାରି ଆସୁଥାଏ । ସେ ଦୁଷ୍ଟ ଦ୍ରୌପଦୀଙ୍କୁ ବିବସ୍ତ୍ରା କରିବାକୁ ଚେଷ୍ଟା କରୁଥିଲା । ଶାଢ଼ୀ ଖୋଲି ମହାରାଜ ପାଣ୍ଡୁଙ୍କ ପୁତ୍ରବଧୂ, ଆମର ପ୍ରିୟତମା ପତ୍ନୀ ଓ ଦ୍ରୌପଦଙ୍କ ଆଦରିଣୀ କନ୍ୟାକୁ ନଗ୍ନ କରିବା ନିମିତ୍ତ ପାଗଳ ହୋଇଯାଇଥିଲା ଦୁଃଶାସନ; କିନ୍ତୁ

Digitized by srujanika@gmail.com

ଏ ପ୍ରକାର ଆଶ୍ଚର୍ଯ୍ୟଜନକ ଅବସ୍ଥାରେ ତା'ର ଅହଙ୍କାର ଚୂରମାର ହୋଇଗଲା । ସେ ଅତ୍ୟଧିକ କ୍ଳାନ୍ତ ଓ ଲଜ୍ଜିତ ହୋଇ ତଳେ ବସି ପଡ଼ିଲା । ସଭାରେ ସମସ୍ତେ ସ୍ତବ୍ଧ ହୋଇଗଲେ । ସଭା ଅଳିନ୍ଦରେ ସେହି ବିଚିତ୍ର ବସ୍ତ୍ର ଇନ୍ଦ୍ରଧନୁର ଶୋଭା ଧାରଣ କରିଥିଲା । ତନ୍ମଧ୍ୟରେ ରୋଦନରତା କୃଷ୍ଣା କୃଷ୍ଣଙ୍କ ପ୍ରତ୍ୟକ୍ଷ ଅନୁଭବ କରିଥିଲେ । ସଭାରେ ସମସ୍ତଙ୍କ ଅଲକ୍ଷ୍ୟରେ କୃଷ୍ଣ ଆସି ଉପସ୍ଥିତ ହେଲେ । ସେ ଅବସ୍ଥାରେ ପାଦ ପ୍ରକ୍ଷାଳନ ନିମିତ୍ତ ପାଦ୍ୟଜଳ କେଉଁଠୁ ମିଳିବ ? ତେଣୁ କୃଷ୍ଣା ଅଞ୍ଜନ ମିଶ୍ରିତ ନୟନାଶ୍ରୁ ଦ୍ୱାରା ତାଙ୍କର ପାଦପଦ୍ମ ପ୍ରକ୍ଷାଳନ କରିଥିଲେ । ସେତେବେଳେ ଶ୍ରୀକୃଷ୍ଣ ସାନ୍ତ୍ୱନା ଦେଇ ନିଜ ସଖୀ କୃଷ୍ଣାକୁ କହିଥିଲେ— 'ଦେବି ! ଏବେ ତୁମେ ମୁକ୍ତ କେଶପାଶକୁ ବାନ୍ଧି ଦିଅ । ଏବେ ଆଉ ଭୟ କରିବାର କୌଣସି କାରଣ ନାହିଁ । ମୁଁ ତ ଆସିଗଲି । ଆଉ କଣ ?'

କୃଷ୍ଣା କାନ୍ଦି କାନ୍ଦି କହିଲେ—ଶ୍ୟାମସୁନ୍ଦର ! ଏବେ ମୋର ଏ କେଶ ପାଶ ଖୋଲିଯାଇଛି, ଯାଉ । ହାତୀର ଦାନ୍ତ ଥରେ, ବାହାରି ଆସେ । କୁଳୀନ କନ୍ୟା ଥରେ ମାନ ଦାନ କରାଯାଇଥାଏ । ଦୁଧ ଥରେ ଛିଡ଼ିଯାଏ, ମୋତି ଥରେ ଭାଙ୍ଗିଯାଏ ଏବଂ ବସ୍ତ୍ର ଏକବାର ଛିଡ଼ିଯାଏ । ଏଗୁଡ଼ିକ ଯେତେ ଚେଷ୍ଟା କଲେ ବି ପୂର୍ବରୂପ ଧାରଣ କରନ୍ତିନାହିଁ । ସେହିପରି ଯେଉଁ କେଶପାଶକୁ ଦୁଷ୍ଟମାନଙ୍କ କଳୁଷିତ କର ସ୍ପର୍ଶ କରିଛି ତାହାକୁ ସୌଭାଗ୍ୟର ଚିହ୍ନ ସ୍ୱରୂପ ବେଣୀରୂପରେ ସଜ୍ଜିତ କରାଯାଇ ନ ପାରେ ।' 'ହେ ରାଜନ ! ଆପଣଙ୍କ ପତ୍ନୀଙ୍କ ଏତାଦୃଶ ଦୃଢ଼ପ୍ରତିଜ୍ଞା ଶୁଣି ଶ୍ୟାମସୁନ୍ଦର ମୁରୁକି ମୁରୁକି ହସି କହିଲେ—'ଦେବି ! କେଉଁ ଉପାୟରେ ଏ କେଶ ପୁନର୍ବାର ପୂର୍ବପରି ବନ୍ଧାଯାଇ ପାରିବ ? ତୁମର ଆଲୁଲାୟିତ କେଶ ମୋତେ ଭଲ ଲାଗୁନି । ଏହାକୁ ବେଣୀରୂପେ ଦେଖିବା ମୋର ଇଚ୍ଛା । ସେଥିପାଇଁ ମୁଁ ବେଣୀମାଧବ ଭାବେ ସୁବିଦିତ । ଏହି ମୁକ୍ତ କେଶରାଶିକୁ କେଉଁ ଉପାୟରେ ବେଣୀ କରାଯାଇ ପାରିବ ତାହା ପ୍ରକାଶ କର ।'

ଦ୍ରୌପଦୀ କହିଲେ —ଯେଉଁ ଦିନ ଏହି କେଶପାଶକୁ ଆକର୍ଷଣ କରିଥିବା ବ୍ୟକ୍ତିମାନଙ୍କର ପତ୍ନୀ ବିଧବା ହୋଇ ମୋ ଭଳି କେଶ ମୁକୁଳା କରି କାନ୍ଦିବେ, ସେହିଦିନ ମୋର କେଶପାଶ ବେଣୀରୂପ ଧାରଣ କରିବ । ଯେଉଁ ହାତ ଏହାକୁ ଓଟାରିଛି ସେହି ହାତ ବନ୍ଧୁବାନ୍ଧବଙ୍କ ହାତ ସହିତ ଛିନ୍ନ ହୋଇ ଭୂପୃଷ୍ଠରେ ଲୋଟିବା ଦିନ ହିଁ ମୋର ବେଣୀ ବନ୍ଧନ ହେବ । ଯେଉଁଦିନ ଏହି ଦୁଷ୍ଟମାନଙ୍କର ଶବକୁ ଶ୍ୱାନ, ଶୃଗାଳ, ଗୃଧ୍ରାଦି ଛିନ୍ନ ଭିନ୍ନ କରି ଖାଇବେ, ସେହି ଦିନ ମୋର ଏ କେଶପାଶ ବନ୍ଧନ କରାଯାଇ ପାରିବ ।'

କୃଷ୍ଣା କୃଷ୍ଣାଙ୍କର ଏଭଳି କଠୋର ଓ ଦୃଢ଼ ବଚନ ଶୁଣି ଶ୍ୟାମସୁନ୍ଦର ତାଙ୍କୁ ସାନ୍ତ୍ୱନା ଦେଇ କହିଲେ—'ହେ ଦ୍ରୁପଦକୁମାରି ! ତୁମେ ଆଦୌ

Digitized by srujanika@gmail.com

ବ୍ୟସ୍ତ ହୁଅନାହିଁ । ତୁମର ଅଭିଳାଷ ନିଶ୍ଚୟ ପୂରଣ ହେବ । ମୁଁ ତୁମର ଶତ୍ରୁଙ୍କୁ ସଂହାର କରିବ । ସେମାନଙ୍କ ବଂଶକୁ ନିପାତପୂର୍ବକ ଶତ୍ରୁପତ୍ନୀମାନଙ୍କ କେଶ ଉନ୍ମୁକ୍ତ କରିଦେବ । ତୁମର ବେଣୀକୁ ପୁଣି ବାନ୍ଧିଦେବ, ଦେବ ! ଅଦ୍ୟାବଧି ମୁଁ ମିଥ୍ୟା କହିନାହିଁ କି ଭବିଷ୍ୟତରେ କହିବି ନାହିଁ ।' ମହାରାଜ ! ସେହି ସମୟରୁ ହିଁ କୌରବମାନଙ୍କ ଗୌରବ ରବି ଅସ୍ତମିତ ହୋଇଯାଇ ଥିଲେ । ସେମାନେ ଶ୍ରୀହୀନ ଓ ମୃତତୁଲ୍ୟ ହୋଇଥିଲେ । ସେହି ସମୟଠାରୁ ଆମର ଧର୍ମବୃଦ୍ଧି, ପବିତ୍ରତା ଓ ପ୍ରସିଦ୍ଧି ପ୍ରତିଷ୍ଠା ନିମିତ୍ତ ଶ୍ୟାମସୁନ୍ଦର କେବଳ କୌରବ-ମାନଙ୍କୁ ନୁହେଁ, ଆବଶ୍ୟକ ହୋଇଥିଲେ ସମଗ୍ର ବ୍ରହ୍ମାଣ୍ଡକୁ ମଧ୍ୟ ଭସ୍ମ କରି-ଦେଇଥାନ୍ତେ; କିନ୍ତୁ ସେ ଧର୍ମସ୍ଥାପନ ନିମିତ୍ତ ଆମରି ହାତରେ ସମସ୍ତଙ୍କୁ ସଂହାର କରିବାର ଇଚ୍ଛା ରଖିଥିଲେ ଏବଂ ଶେଷରେ ତାହା ହିଁ କରିଥିଲେ । ଦ୍ରୌପଦୀଙ୍କ ପ୍ରତିଜ୍ଞା ଅକ୍ଷରେ ଅକ୍ଷରେ ପାଳନ କରାଇଥିଲେ । ସେ ଯାହା କହିଥିଲେ ତାହା କାର୍ଯ୍ୟରେ ପରିଣତ କରିଥିଲେ । କୌରବ ପତ୍ନୀମାନେ ବିଧବା ହେଲେ । ଶ୍ୟାମସୁନ୍ଦର ନିଜ ସମ୍ମୁଖରେ ହିଁ ଦ୍ରୌପଦୀଙ୍କ କେଶପାଶ ବନ୍ଧନ କରାଇଥିଲେ ।

ମହାମାନବ ଶ୍ୟାମସୁନ୍ଦରଙ୍କ କୃପା କିଭଳି ପ୍ରଶଂସା କରିପାରିବ ? ତାଙ୍କର ଅପାରକରୁଣା ବର୍ଣ୍ଣନା କରିବାକୁ ମୋର ଭାଷା ନାହିଁ । ମୁଁ ନିଶ୍ଚିନ୍ତ ଥିଲି, କାରଣ ଶ୍ୟାମସୁନ୍ଦରଙ୍କ ହାତ ମୋ ଶିରୋଭାଗରେ ସର୍ବଦା ରହିଥିଲା । ଘନଶ୍ୟାମଙ୍କର ସେହି ଶୀତଳ ଛତ୍ରଚ୍ଛାୟା ଆଜି କାହିଁ ? ଆଉ ସେ ଶ୍ୟାମଳ କୋମଳ କମଳକର କାହିଁ ? ମୁଁ ଏବେ ଅସହାୟ ହୋଇଯାଇଛି । ହେ ରାଜନ୍ ! ଦ୍ରୌପଦୀ ଲଜ୍ଜା ରକ୍ଷାକାରୀ ବାସୁଦେବ କୁଆଡ଼େ ବିଲୀନ ହୋଇଗଲେ ? ମୁଁ କେବେ ତାଙ୍କ ପାଦପଦ୍ମରେ ମସ୍ତକ ସ୍ଥାପନ କରିବି ? ଏହା କହୁଁ କହୁଁ ଅର୍ଜୁନ ପୁଣି କାନ୍ଦିବାକୁ ଲାଗିଲେ ।

## ଛପ୍‌ପୟ

ଭରୀ ସଭାମେଁ ଆଇ ଚୀର କୁଁ ଅକ୍ଷୟ କୀହ୍ନୋ ।
ଦୁଃଖିତ ଦୟାନିଧି ଭୟେ, ଦଣ୍ଡ ଦୁଷ୍ଟ କୁଁ ଦୀହ୍ନେ ॥
ଜିନ କଚ ଖୀଂଚେ ବଧୂ ବନୀଂ ବିଧବା ଉନ ସବାକୀ ।
ଖୋଲେ ବଢାଲେ କେଶ, ପ୍ରତିଜ୍ଞା ପୁରୀ ତବକୀ ॥
ସଦା ଦୁଃଖୀ ଦୁଃଖମେ ରହେ ସୁଖୀ ସଦନ ସୁଖଦେ ଭୟେ ।
କିନ୍ତୁ ଅକେଲେ ଅନ୍ତଃମେଁ ତନୁ ତଜି ନିଜପୁର ଚଲିଗୟେ ॥



Digitized by srujanika@gmail.com

# ଦୁର୍ବାସାଙ୍କ ଅଭିଶାପ ଓ
# ଶ୍ରୀକୃଷ୍ଣଙ୍କ କୃପା

ଯୋ ନୋ ଜୁଗୋପବନ ଏତ୍ୟ ଦୁରନ୍ତ କୃଚ୍ଛ୍ରାଦ୍ ।
ଦୁର୍ବାସସୋଽରିରଚିତାଦୟୁତାଗ୍ରଭୁଗ୍ ଯଃ ।
ଶାକାନ୍ନଶିଷ୍ଟ ମୁପଯୁଜ୍ୟ ଯତସ୍ତ୍ରିଲୋକୀଂ
ତୃପ୍ତାମମଂସ୍ତ ସଲିଲେ ବିନିମଗ୍ନସଙ୍ଘଃ ॥

( ଭାଗବତ-୧୬. ୧୧.୧୧ )

ଛପ୍‌ପୟ

ମୂର୍ତ୍ତିମାନ ଯୋ କୋପ ତପସ୍ୱୀ ଦୁର୍ବାସା ମୁନି ॥
ଶାପ ଦାବାନଲ ଶିଷ୍ୟ ପଠାୟେ ବନବୈଭବ ସୁନି ॥
ଅକ୍ଷୟ ରବି କେ ପାତ୍ର ଖାଇ ଭଲି କୃଷ୍ଣା ନିବର୍ତ୍ତି ।
ଅତଥି ଭୟେ ଲେ ଶିଷ୍ୟ ସବନିଚିତ ଚିନ୍ତା ରପଟୀ ॥
ଦୁଃଖ ମେଁ ସୁଖ ମେଁ ଶୋକ ମେଁ ହୈ ଜାକୀ
ଗୋବିନ୍ଦ ଗତି ।
ଶ୍ୟାମ ପୁକାରେ କରୁଣସ୍ୱର ଭରି ଦ୍ରୌପଦୀ ଦୁଃଖିତ ଅତି ।

ପରୋକ୍ଷ ପ୍ରେମର ପ୍ରଭାବ ନିକଟବର୍ତ୍ତୀ ପ୍ରେମ ଅପେକ୍ଷା ଅଧିକ ପ୍ରଭାବଶାଳୀ । ଗୁଣାଗୁଣରେ ପରିସ୍ଥିତି ଅନୁସାରେ ମାନବଙ୍କ ପ୍ରେମର ପରିପ୍ରକାଶ ଘଟିଥାଏ । ଧର୍ମରାଜଙ୍କ ରାଜସୂୟ ଯଜ୍ଞ ଭଳି ଦୁଷ୍କର କାର୍ଯ୍ୟ ମଧ୍ୟ ଶ୍ରୀକୃଷ୍ଣଙ୍କ ଦୟାରୁ ସମ୍ପନ୍ନ ହୋଇଥିଲା । ଦୁଷ୍ଟମାନେ ରାଜ୍ୟ ଅପହରଣ କରିନେଲେ, ଦ୍ରୌପଦୀଙ୍କୁ ଦାସୀ କରିନେଲେ । ପରିପୂର୍ଣ୍ଣ ସଭାରେ ତାଙ୍କୁ ବିବସ୍ତ୍ରା କରିବାର ପ୍ରଚେଷ୍ଟା କଲେ; କିନ୍ତୁ କୃଷ୍ଣ ହିଁ ସବୁ ଜାଗାରେ ସମ୍ମାନ ଓ ଗୌରବ ରକ୍ଷା କରିଥିଲେ । ଏ ସମସ୍ତ କଥା ସହିତ ବନବାସକାଳୀନ ଅବସ୍ଥା ପ୍ରସଙ୍ଗ ସ୍ମରଣ କରି ଧର୍ମରାଜ କହିଲେ—'ଅର୍ଜୁନ !

Digitized by srujanika@gmail.com

ଶ୍ରୀକୃଷ୍ଣ ଆମ୍ଭମାନଙ୍କୁ ସବୁଠି ରକ୍ଷା କରିଅଛନ୍ତି । ବନବାସ କାଳରେ ସମସ୍ତେ ଆମକୁ ପରିତ୍ୟାଗ କଲେ ମଧ୍ୟ ଏକମାତ୍ର କୃଷ୍ଣ ହିଁ ଆମକୁ ଧର୍ମୋପଦେଶ, ତୀର୍ଥବ୍ରତ ଓ ଧର୍ମର ସୂକ୍ଷ୍ମଗତ ବିଷୟରେ ନାନା ଉପଦେଶ ଦେଉଥିଲେ । ପୁନର୍ବାର ରାଜ୍ୟପ୍ରାପ୍ତି ନିମିତ୍ତ ବିଶ୍ୱାସ ଜନ୍ମାଇଥିଲେ । ବିପଦବେଳେ ସ୍ମରଣ ମାତ୍ରେ ସେ ଦୌଡ଼ି ଆସୁଥିଲେ । ସେହି ବନବାସକାଳୀନ କୌଣସି ପ୍ରସଙ୍ଗ କୁହ, ଯାହା ଶୁଣିଲେ ଚିତ୍ତରେ ମୋର ଧୈର୍ଯ୍ୟ ଆସିବ ।

ବନବାସ ପ୍ରସଙ୍ଗ ମନେ ପକାଇବା ମାତ୍ରେ ଅର୍ଜୁନଙ୍କ ନୟନଯୁଗଳ ସଜଳ ହୋଇଉଠିଲା । ନୟନାଶ୍ରୁ ପୋଛୁଁ ପୋଛୁଁ ଅର୍ଜୁନ କହିବାକୁ ଲାଗିଲେ—'ରାଜନ୍ ! ବନବାସ ସମୟରେ ପ୍ରତ୍ୟେକ ପଦକ୍ଷେପରେ ସେହି ପ୍ରଭୁଙ୍କର କୃପା ଅନୁଭୂତ ହେଉଥିଲା । ଯଦ୍ୟପି ସେ ଶରୀରତଃ ଦ୍ୱାରିକାରେ ଥିଲେ; କିନ୍ତୁ ମନ ତାଙ୍କର ଆମ ନିକଟରେ ରହିଥିଲା । ବିପଦକାଳରେ ସେ ସଶରୀର ପ୍ରକଟ ହୋଇଯାଉଥିଲେ । ଆମ୍ଭମାନଙ୍କୁ ବଡ଼ରୁ ବଡ଼ ବିପଦରୁ ଅବଲୀଳା କ୍ରମେ ରକ୍ଷା କରୁଥିଲେ । ଦୁର୍ଯ୍ୟୋଧନ ଯେତେବେଳେ ଦେଖିଲେ ପିତା ଧୃତରାଷ୍ଟ୍ର ବିଜିତ ରାଜ୍ୟ ଓ ଧନସମ୍ପଦ ଆମ୍ଭମାନଙ୍କୁ ଫେରାଇଦେଲେ, ସେତେବେଳେ ଏକ କୁଟିଳ ଉପାୟ ପ୍ରୟୋଗ କଲେ । ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ ରୂପକ ବାଜି ଉପରେ ପୁଣି ଜୁଆଖେଳ ଆରମ୍ଭ ହେଲା । ଅଜ୍ଞାତବାସ ସମୟରେ ଜଣାପଡ଼ିଗଲେ ପୁଣି ବାର ବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସର ବ୍ୟବସ୍ଥା ଥିଲା । ଆମ୍ଭମାନଙ୍କୁ ସର୍ବଦା ବନବାସୀ କରି ରଖିବା ଥିଲା ଏପ୍ରକାର ବାଜି ଲଗାଇବାର ମୂଳ ଲକ୍ଷ୍ୟ । ଆପଣ ସେ ବାଜିକୁ ସ୍ୱୀକାର କରି ଶେଷରେ ହାରିଲେ । ଦୁର୍ଯ୍ୟୋଧନ ଆମ୍ଭମାନଙ୍କୁ ଦ୍ରୌପଦୀଙ୍କ ସହିତ ଏକ ବସ୍ତ୍ରରେ ରାଜ୍ୟରୁ ବାହାର କରିଦେଲା । ସେହି ସମୟରେ ସହସ୍ର ସହସ୍ର ବେଦପାଠୀ ବ୍ରାହ୍ମଣ ଆପଣଙ୍କୁ ଅନୁଗମନ କଲେ ।' ଆପଣ ହାତଯୋଡ଼ି ସେମାନଙ୍କୁ କହିଲେ—'ହେ ଭୂଦେବ ! ମୁଁ ଯେତେବେଳେ ସମର୍ଥ ଥିଲି ସେତେବେଳେ ଯଥାଶକ୍ତି ଆପଣମାନଙ୍କର ସ୍ୱାଗତ ସତ୍କାର କରୁଥିଲି । ଏବେ ମୁଁ ରାଜ୍ୟଭ୍ରଷ୍ଟ ହୋଇଯାଇଛି, ବର୍ତ୍ତମାନ ମୋତେ ନିଜ ଆହାର ବିଷୟରେ ଚିନ୍ତା କରିବାକୁ ପଡ଼ିବ । ଏଣୁ ଆପଣମାନେ ଫେରିଯାଆନ୍ତୁ ଏବଂ ଦୁର୍ଯ୍ୟୋଧନଙ୍କ ଆଶ୍ରୟ ଗ୍ରହଣ କରନ୍ତୁ । ସେ ନିଶ୍ଚୟ ଆପଣମାନଙ୍କ ଜୀବିକାର ବ୍ୟବସ୍ଥା କରିବେ । ମୋର ଭଳି ଆପଣଙ୍କୁ ସେବା ଶୁଶ୍ରୂଷା କରିବେ !' ଆପଣଙ୍କର ଏଭଳି କଥା ଶୁଣି ବ୍ରାହ୍ମଣମାନେ ବିନୀତ ଭାବେ କହିଲେ—'ରାଜନ୍ ! ଆମ୍ଭେମାନେ ସେହି ଦୁଷ୍ଟ ଦୁର୍ଯ୍ୟୋଧନଙ୍କ ଆଶ୍ରୟରେ କେବେହେଲେ ରହିବୁ ନାହିଁ । ଜୀବିକା ବିଷୟରେ ଆମର ଆଦୌ ଭାବନା ନାହିଁ । ଆମ୍ଭେମାନେ ନିଜେ ନିଜେ ବଣର ଫଳମୂଳ ସଂଗ୍ରହକରି,

Digitized by srujanika@gmail.com

ଭିକ୍ଷାକରି ନିଜ ନିଜର ଜୀବିକାନିର୍ବାହ କରିପାରିବୁ । ଆମ ଆହାର ବିଷୟରେ ଆପଣଙ୍କୁ ଚିନ୍ତା କରିବାକୁ ପଡ଼ିବ ନାହିଁ । ଆମେ ଆପଣଙ୍କ ଧାର୍ମିକ ବ୍ୟବହାରରେ ସନ୍ତୁଷ୍ଟ । ଆପଣଙ୍କ ଧର୍ମପ୍ରେମରେ ବଶୀଭୂତ ହୋଇ ଆମ୍ଭେମାନେ ଆପଣଙ୍କୁ ଛାଡ଼ିବାକୁ ଇଚ୍ଛା କରୁନାହୁଁ । ଆପଣଙ୍କର ଯାହା ହେବ ଆମର ମଧ୍ୟ ତାହା ହେବ, ଆପଣ ଆମ୍ଭମାନଙ୍କୁ ପରିତ୍ୟାଗ କରି ଯାଆନ୍ତୁ ନାହିଁ ।'

ଆପଣ ତା'ପରେ କହିଥିଲେ—ହେ ବିପ୍ରଗଣ ! ମୁଁ ସ୍ୱେଚ୍ଛାରେ ଆପଣମାନଙ୍କୁ ତ୍ୟାଗ କରୁନାହିଁ । ଭରଣପୋଷଣ ପାଇଁ ଅସମର୍ଥ ହୋଇଥିବାରୁ ମୁଁ ଏଭଳି ପ୍ରାର୍ଥନା କରିଛି । ମୁଁ ଥାଉଁ ଥାଉଁ ଆପଣମାନେ ଭିକ୍ଷା କରିବାକୁ ଯିବେ । ଫଳ, କନ୍ଦମୂଳ, ବିଷୟ ଚିନ୍ତା କରିବେ, ତା'ହେଲେ ମୋର ଜୀବନ ଧାରଣ କରିବା ବ୍ୟର୍ଥ ହୋଇଯିବ । ମୋର କ୍ଷତ୍ରିୟପଣିଆକୁ ଧିକ, ଆଚ୍ଛା ଠିକ୍ ଅଛି, ଅନ୍ୟ କୌଣସି ଉପାୟ ଭାବି ଦେଖେ । ଏହା କହି ଆପଣ ସେମାନଙ୍କୁ ସାନ୍ତ୍ୱନା ଦେଲେ । ଭଗବାନ୍ ଭୁବନଭାସ୍କରଙ୍କ ଆରାଧନା ଓ ଶ୍ରୀକୃଷ୍ଣଙ୍କ କୃପାରୁ ଏଭଳି ଏକ ଅକ୍ଷୟ ପାତ୍ର ଲାଭ କଲେ ଯେ, ଦ୍ରୌପଦୀଙ୍କ ଭୋଜନ ନ କରିବା ପର୍ଯ୍ୟନ୍ତ, ସେଥିରୁ ଇଚ୍ଛାନୁସାରେ ଭୋଜ୍ୟ ପଦାର୍ଥ ବାହାରୁ ଥିଲା । ଯେତେ ଇଚ୍ଛା ସେତେ ଲୋକଙ୍କୁ ଭୋଜନ ଦିଆଯାଇ ପାରୁଥିଲା । କେବେହେଲେ କିଛି କମ୍ ପଡ଼ୁନ ଥିଲା । ସେହି ପାତ୍ରଟି ପାଇ ଆପଣ ବିଶେଷ ଖୁସି ହୋଇଥିଲେ । ତାହାରି ସାହାଯ୍ୟରେ ଆପଣ ଦେବ, ଋଷି, ପିତୃଗଣଙ୍କ କାର୍ଯ୍ୟ କରୁଥିଲେ ଏବଂ ହଜାର ହଜାର ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରୁଥିଲେ । ବନରେ ଥାଇ ମଧ୍ୟ ଆପଣ ଇନ୍ଦ୍ରପ୍ରସ୍ଥରେ ରହିବା ଭଳି ରହିଥିଲେ । ଚାରିଆଡ଼େ ଆପଣଙ୍କ ଆତିଥ୍ୟର ଖ୍ୟାତି ପ୍ରସାରିତ ହୋଇଯାଇଥିଲା । ସମସ୍ତେ ଆପଣଙ୍କ ଗୁଣଗାନ କରୁଥିଲେ । ଶ୍ରୀକୃଷ୍ଣଙ୍କ ଦୟାରୁ ରାଜ୍ୟଠାରୁ ଅଧିକ ପ୍ରତିଷ୍ଠା ବନରେ ଥାଇ ମଧ୍ୟ ସମ୍ଭବ ହୋଇଥିଲା । ଏହାଦ୍ୱାରା ଶତ୍ରୁମାନେ ଅସନ୍ତୁଷ୍ଟ ହୋଇପଡ଼ିଲେ । ବନରେ ଆପଣଙ୍କ ବୈଭବ ଦେଖି ବ୍ୟାକୁଳ ହୋଇଉଠିଲେ; କିନ୍ତୁ କଣ ବା କରିପାରିବେ ? ଆମ ସହିତ ଲଢ଼ିବାକୁ ସେମାନଙ୍କର ସାହସ ନଥିଲା । ଆଉ ଏବେ ଜୁଆ ଖେଳିବା ମଧ୍ୟ ସମ୍ଭବ ନ ଥିଲା । ଆମର ଉତ୍କର୍ଷତାରେ ସେମାନେ ଈର୍ଷାରେ ଜଳିବାକୁ ଲାଗିଲେ । ସେମାନେ କିପରି ଆମକୁ ବିନାଶ କରିବେ ସେହି ଚିନ୍ତାରେ ବ୍ୟାପୃତ ହେଲେ । ଏହି ସମୟରେ କ୍ରୋଧର ଅବତାର, ଅଭିଶାପର ଗନ୍ତାଘର, ପରମ ତେଜସ୍ୱୀ ମହାମୁନି ଦୁର୍ବାସା ହସ୍ତିନାପୁରରେ ଆସି ପହଞ୍ଚିଲେ । ତାଙ୍କ ଆସିବା ଦ୍ୱାରା ଶତ୍ରୁମାନଙ୍କ ମନରେ ପ୍ରସନ୍ନତା ଆସିଲା । ତାଙ୍କ ଅଭିଳାଷ ସିଦ୍ଧିପାଇଁ ସେହି ଦୁର୍ବାସାଙ୍କୁ ସେମାନେ ଆୟୁଧ ଭାବେ ବ୍ୟବହାର କରିବାକୁ ସିଦ୍ଧାନ୍ତ କଲେ ।

Digitized by srujanika@gmail.com

ମହାମୁନି ଦୁର୍ବାସା ନିଜର ହଜାରେ ଶିଷ୍ୟଙ୍କ ସହିତ ହସ୍ତିନାପୁରରେ ଚତୁର୍ମାସ୍ୟବ୍ରତ ଆରମ୍ଭ କରିଦେଲେ । ସେ ଦୁର୍ଯ୍ୟୋଧନଙ୍କୁ ପରୀକ୍ଷା କରିବାକୁ ଲାଗିଲେ । ତାଙ୍କୁ ଗାଳିଗୁଲଜ କଲେ । ଅସମୟରେ ଭୋଜନ ମାଗି ବସିଲେ । ସୁନ୍ଦର ସ୍ୱାଦିଷ୍ଟ ଭୋଜନକୁ ଅଖାଦ୍ୟ କହି ପରିତ୍ୟାଗ କଲେ । ସେବକମାନଙ୍କୁ ଗାଳିଦେଲେ । ଯେ କୌଣସି ପ୍ରକାର ସାମାନ୍ୟତମ ବିପରୀତ ଦେଖିବା ମାତ୍ରେ ପ୍ରଚଣ୍ଡ କ୍ରୋଧରେ କମ୍ପି ଯାଉଥିଲେ । କୌରବମାନଙ୍କୁ କୁପିତ କରିବାପାଇଁ ତାଙ୍କୁ ଯାହା ଆସୁଥିଲା ତାହା କରୁଥିଲେ; କିନ୍ତୁ ଦୁର୍ଯ୍ୟୋଧନ ଖୁବ୍ ସାବଧାନ ରହି କାୟମନୋବାକ୍ୟରେ ସମସ୍ତ ଶକ୍ତି ଲଗାଇ ମୁନି ଦୁର୍ବାସାଙ୍କ ସେବାରେ ଲାଗିଯାଇଥିଲେ । ତାଙ୍କୁ ପ୍ରସନ୍ନ ରଖିବା ନିମିତ୍ତ ଦୁର୍ଯ୍ୟୋଧନ ସମସ୍ତ ସୁବ୍ୟବସ୍ଥା କରିଥିଲେ । ମୁନି ମଧ୍ୟ ଉଚିତ, ଅନୁଚିତ, ଅନୁକୂଳ, ପ୍ରତିକୂଳ ସାମୟିକ ଅସାମୟିକ ଉପଦେଶ ଦେଉଥିଲେ ବି ଦୁର୍ଯ୍ୟୋଧନ ସେ ସମସ୍ତ ଯଥାଶୀଘ୍ର ପୂରଣ କରୁଥିଲେ । ସେ ଯାହା ଆଦେଶ ଦେଲେ ବି ଦୁର୍ଯ୍ୟୋଧନ ସ୍ୱୀକାର କରି ଯାଉଥିଲେ । ଏହିପରି ଅଲୌକିକ ସହିଷ୍ଣୁତା ପ୍ରଦର୍ଶନଦ୍ୱାରା ଦୁର୍ଯ୍ୟୋଧନ ସର୍ବଦା ଅସନ୍ତୁଷ୍ଟ ଋଷି ଦୁର୍ବାସାଙ୍କୁ ସନ୍ତୁଷ୍ଟ କରିପାରିଥିଲେ । ଦୁର୍ବାସା ଋଷି ପ୍ରସନ୍ନ ହୋଇ କହିଲେ—'ରାଜନ୍ ! ଆପଣ ମୋର ଇଚ୍ଛାର ବିପରୀତ କିଛି କରି ନାହାନ୍ତି । ଅନୁଚିତ ଓ ପ୍ରତିକୂଳ ଆଦେଶ ଉପରେ ମଧ୍ୟ କ୍ରୋଧ ପ୍ରକାଶ କରିନାହାନ୍ତି । ତେଣୁ ମୁଁ ଆପଣଙ୍କ ଉପରେ ସନ୍ତୁଷ୍ଟ । ଆପଣ ମୋତେ ଯେ କୌଣସି ବର ପ୍ରାର୍ଥନା କରନ୍ତୁ, ମୁଁ ତାହା ପୂରଣ କରିବି । ଆପଣଙ୍କ ସନ୍ତୋଷବିଧାନ ନିମିତ୍ତ ମୁଁ ଯେ କୌଣସି କାର୍ଯ୍ୟ କରିପାରିବି ।'

ଦୁର୍ଯ୍ୟୋଧନଙ୍କର ଧନ ଐଶ୍ୱର୍ଯ୍ୟରେ ଆଦୌ ଅଭିଳାଷ ନ ଥିଲା । ତାଙ୍କ ମନରେ ପାଣ୍ଡବ ପାଞ୍ଚ ଭାଇ କଣ୍ଟକ ଭଳି ଦୁଃଖଦାୟକ ହୋଇଥିଲେ । ଆମର ବିନାଶଦ୍ୱାରା ସେ ଯେତେ ଆନନ୍ଦିତ ହେବେ, ତ୍ରିଭୁବନର ରାଜତ୍ୱ ପାଇଲେ ମଧ୍ୟ ସେପରି ସୁଖୀ ହୋଇପାରିବେ ନାହିଁ । ପରର ସୁଖ ଅପହରଣଦ୍ୱାରା ଦୁଷ୍ଟ ଲୋକେ ଆନନ୍ଦିତ ହୁଅନ୍ତି । ଦୁର୍ଯ୍ୟୋଧନ ବିନୀତ ଭାବେ ମୁନିଙ୍କ ଚରଣତଳେ ପ୍ରଣାମ କରି କପଟପୂର୍ଣ୍ଣ ଭାଷାରେ କହିଲେ—ଆପଣଙ୍କ ପ୍ରସନ୍ନତା ହିଁ ମୋ ପକ୍ଷରେ ଲକ୍ଷେ ବରଦାନଠାରୁ ଅଧିକ । ମୋ ସେବାରେ ଆପଣ ସନ୍ତୁଷ୍ଟ ହେଲେ ତାହା ହିଁ ଯଥେଷ୍ଟ । ତଥାପି ବରଦାନ ନିମିତ୍ତ ଆଗ୍ରହ ପ୍ରକାଶ କରିଥିବାରୁ ମୁଁ ଏହି ବର ପ୍ରାର୍ଥନା କରୁଛି ଯେ, ଆପଣ ଶିଷ୍ୟମାନଙ୍କ ସହିତ ଯେପରି ମୋ ଉପରେ କୃପା କରିଛନ୍ତି, ସେହିପରି ସଶିଷ୍ୟ ଆପଣ ମୋର ଜ୍ୟେଷ୍ଠ ଭାଇ ଯୁଧିଷ୍ଠିରଙ୍କ ପ୍ରତି ଦୟା ପ୍ରଦର୍ଶନ କରନ୍ତୁ । ସେ ଆମ ବଂଶରେ ସବୁଠାରୁ ଶ୍ରେଷ୍ଠ ଓ ଜ୍ୟେଷ୍ଠ ଅଟନ୍ତି । ଅତିବ ଧାର୍ମିକ, ଧର୍ମ ପାଶରେ ଆବଦ୍ଧ ଥାଇ ଏବେ

Digitized by srujanika@gmail.com

ସେ ବନବାସ କରୁଛନ୍ତି । ସେଠାରେ ମଧ୍ୟ ଅସଂଖ୍ୟ ଲୋକଙ୍କୁ ଭୋଜନ ଦେଇ ସନ୍ତୁଷ୍ଟ କରୁଛନ୍ତି । ଆପଣ ଯାଇ ତାଙ୍କର ଅତିଥି ହୁଅନ୍ତୁ । ମୋତେ ଆପଣ ଯେପରି ପରୀକ୍ଷା କରିଛନ୍ତି, ସେହିପରି ସେମାନଙ୍କୁ ମଧ୍ୟ ପରୀକ୍ଷା କରନ୍ତୁ ।'

ମହର୍ଷି ଦୁର୍ବାସା ଖୁସି ହୋଇ କହିଲେ—ଠିକ୍ ଅଛି । ଆମ୍ଭେମାନେ ଏହିକ୍ଷଣି ସେଠାକୁ ଯାଉଛୁ । ଆମ୍ଭେ ଧର୍ମରାଜଙ୍କ ଆତିଥ୍ୟ ନିଶ୍ଚୟ ଗ୍ରହଣ କରିବୁ । ଏହା ଶୁଣି ଦୁର୍ଯୋଧନ ମନେ ମନେ ଆନନ୍ଦିତ ହେଲେ । ତାଙ୍କ ହୃଦୟରେ କ୍ରୋଧ ପୂରି ରହିଥିଲା । ମନ୍ଦ ଉଦ୍ଦେଶ୍ୟ ସାଧନ ନିମିତ୍ତ ସେ ମୁନିଙ୍କୁ ପଠାଉଥିଲେ । ମୁନିଙ୍କ ଅଭିଶାପରେ ପାଣ୍ଡବମାନେ ଭସ୍ମ ହୋଇ ଯାଆନ୍ତୁ, ଏହା ହିଁ ଥିଲା ତାଙ୍କର ଭିତିରି ଉଦ୍ଦେଶ୍ୟ ।' ତେଣୁ ସେ କହିଲେ—'ଭଗବନ୍ ! ଏଭଳି ହଠାତ୍ ନୁହେଁ । ଦ୍ରୌପଦୀ ଭୋଜନ କରିସାରିବା ପରେ ହିଁ ଆପଣ ସେଠାରେ ପହଞ୍ଚିବେ ଏବଂ ସଙ୍ଗେ ସଙ୍ଗେ ଖାଇବାକୁ ମାଗିବେ ।' ମୁନିଙ୍କ ମନ ତ ଖୁସି ଥିଲା । ସେ ଦୁର୍ଯୋଧନଙ୍କ ପ୍ରାର୍ଥନାକୁ ସ୍ୱୀକାର କରିଗଲେ । ଦୁର୍ଯୋଧନ ମନେ ମନେ ଭାବୁଥିଲେ—ଦ୍ରୌପଦୀଙ୍କ ଭୋଜନ ପରେ ସୂର୍ଯ୍ୟଙ୍କ ପ୍ରଦତ୍ତ ଅକ୍ଷୟ ପାତ୍ରରୁ ସେଦିନ ପାଇଁ ଆଉ କିଛି ମିଳିବ ନାହିଁ । ଋଷି ଦ୍ୱିତୀୟ ଦିନ ପର୍ଯ୍ୟନ୍ତ ପ୍ରତୀକ୍ଷା କରିବେ ନାହିଁ । ସେ ନିଶ୍ଚୟ ଶୀଘ୍ର ଭୋଜନ ମାଗିବେ । ତୁରନ୍ତ ଭୋଜନ ନ ପାଇବା ହେତୁ ଦୁର୍ବାସା କ୍ରୁଦ୍ଧ ହୋଇ ଅଭିଶାପଦ୍ୱାରା ପାଣ୍ଡବମାନଙ୍କୁ ଭସ୍ମ କରିଦେବେ । ଏହିଭଳି ଅନାୟାସରେ ଶତ୍ରୁ-ମାନଙ୍କର ବିନାଶ ଘଟିବ । ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ । ମୋର ଅପକୀର୍ତ୍ତି ହେବ ନାହିଁ; କିନ୍ତୁ ହୃଦୟର କଣ୍ଟକ ଦୂର ହୋଇଯିବ । ଫଳରେ ମୁଁ ନିଷ୍କଣ୍ଟକ ପୃଥିବୀର ସମ୍ରାଟ ହେବି । ଏହି ସବୁ କଥା ଭାବି ସେ ଦୁର୍ବାସା ମୁନିଙ୍କୁ ଆମ ପାଖକୁ ପଠାଇ ଦେଇଥିଲେ ।

ସେଦିନ କୌଣସି ଏକ ପର୍ବ ଥିବାରୁ ହଜାର ହଜାର ଋଷି ମୁନି ଓ ବ୍ରାହ୍ମଣମାନଙ୍କ ଭୋଜନ ପରେ ଶେଷରେ ଦ୍ରୌପଦୀ ଭୋଜନ କଲେ । ଭୋଜନ ପରେ ଅକ୍ଷୟ ପାତ୍ରଟିକୁ ଧୁଆଧୋଇ କରି ଦ୍ରୌପଦୀ ଫେରିଆସିବା ମାତ୍ରେ ଶିଷ୍ୟମଣ୍ଡଳୀ ସହ ମୁନି ଦୁର୍ବାସା ଆସି ଉପସ୍ଥିତ ହୋଇଗଲେ । ଆପଣ ତାଙ୍କୁ ଯଥୋଚିତ ପୂଜା କରିବା ପରେ ଭୋଜନ ନିମିତ୍ତ ପ୍ରାର୍ଥନା କଲେ । ସେ ତ ସେଇଥିପାଇଁ ଆସିଥିଲେ । ତେଣୁ ସେ କହିଲେ—'ରାଜନ୍ ! ଆମ୍ଭେମାନେ କ୍ଷୁଧାର୍ତ୍ତ । ଆପଣ ଯଥାଶୀଘ୍ର ଖାଦ୍ୟ ପ୍ରସ୍ତୁତ କରନ୍ତୁ । ଆମେ ମଧ୍ୟାହ୍ନ ସନ୍ଧ୍ୟା ସାରି ଫେରି-ଆସୁଛୁ । ଫେରିବାବେଳକୁ ସମସ୍ତଙ୍କ ପାଇଁ ପ୍ରସାଦ ବ୍ୟବସ୍ଥା କରିଦେଇଥିବେ । ଏହା କହି କୌଣସି ଉତ୍ତରକୁ ଅପେକ୍ଷା ନ କରି ମୁନି ସ୍ନାନ କରିବା ନିମିତ୍ତ ଚାଲିଗଲେ ।

Digitized by srujanika@gmail.com

ଆପଣ ଯେତେବେଳେ କେତେ ଚକ୍ତିତ ହୋଇ ନ ଥିଲେ ? ଆମ୍ଭେମାନେ ବୁଝିପାରିଥିଲୁ ଯେ, ଏବେ ଋଷିଙ୍କ ଦାରୁଣ ଅଭିଶାପରେ ସମସ୍ତଙ୍କୁ ଭସ୍ମ ହେବାକୁ ପଡ଼ିବ । ହଜାରେ ସଂଖ୍ୟକ ମୁନିଙ୍କୁ ଆମେ ଏତେ ଅଳ୍ପ ସମୟ ମଧ୍ୟରେ କଣ ଖାଇବାକୁ ଦେଇ ତୃପ୍ତି କରିବା ଏବଂ କିଭଳି ଆତିଥ୍ୟ ସମ୍ପାଦନ କରିବା ? ସବୁଠୁ ଅଧିକ ଚିନ୍ତା ହେଉଥିଲା ଦ୍ରୌପଦୀଙ୍କ ପାଇଁ । ସେ ଗୃହସ୍ୱାମିନୀ, ଗୃହଲକ୍ଷ୍ମୀ, ଆତିଥ୍ୟର ଭାର ତାଙ୍କରି ଉପରେ । ଅଭ୍ୟାଗତ ଅତିଥିମାନଙ୍କୁ ଖୁଆଇ ପିଆଇ ସନ୍ତୁଷ୍ଟ କରିବା ସ୍ତ୍ରୀ ଲୋକମାନଙ୍କର ବିଶେଷ କର୍ତ୍ତବ୍ୟ । ସେ ଭୋଜନ କରି ନ ଥିଲେ ଲକ୍ଷେ ଅତିଥି ଆସିଥିଲେ ବି ଚିନ୍ତା ହୋଇ ନ ଥାନ୍ତି; କିନ୍ତୁ ସେ ତ ଭୋଜନ କରିସାରିଛନ୍ତି । ଅକ୍ଷୟ ପାତ୍ରର ସିଦ୍ଧି ସେଦିନ ପାଇଁ ସମାପ୍ତ ହୋଇ-ସାରିଛି । ଯଦି ସାଧାରଣ ଶାନ୍ତ ମୁନି ଋଷି କେହି ହୋଇଥାନ୍ତେ, ତେବେ ତାଙ୍କ ପାଦ ଧରି ନିଜର ସମସ୍ତ ସ୍ଥିତି ବୁଝାଇ ଦିଆଯାଇ ପାରିଥାନ୍ତା; କିନ୍ତୁ ଦୁର୍ବାସାଙ୍କ କ୍ଷେତ୍ରରେ ତାହା ଚିନ୍ତା କରିବା ବିପଜ୍ଜନକ । ତାଙ୍କୁ କହିବା ବୁଝାଇବା ସବୁ କିଛି ନିରର୍ଥକ । ତାଙ୍କ ଇଚ୍ଛା ବିରୋଧରେ ଟିକିଏ ଏପାଖ ସେପାଖ ହେଲେ ଅଭିଶାପ ବର୍ଷା ହୋଇଯିବ । ସର୍ପ ଉପରେ ଭୁଲ୍‌ରେ ପାଦ ପଡ଼ିଗଲେ ବି ସେ ଯେପରି ସମସ୍ତ ବିଷ ଓଜ୍ଜାଳି ପକାଏ, ଦୁର୍ବାସା ସେହିପରି ସାମାନ୍ୟ ବ୍ୟତିକ୍ରମରେ ଅଭିଶାପର ଅଗ୍ନି ବର୍ଷା କରିଦିଅନ୍ତି । ଏସବୁ ଦେଖି ଦ୍ରୌପଦୀ ନିରୁପାୟ ହୋଇ ଅତି ଆର୍ତ୍ତିରେ ଆର୍ତ୍ତତ୍ରାଣ ନାରାୟଣ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କଲେ । ଅତି ଦୁଃଖରେ ଦ୍ୱାରକାଧୀଶଙ୍କ ଶରଣାର୍ଥିନୀ ହେଲେ । ଦ୍ରୌପଦୀ କାନ୍ଦି କାନ୍ଦି ଗଦ୍‌ଗଦ୍ କଣ୍ଠରେ ଡାକିଲେ 'ହେ ଶ୍ୟାମସୁନ୍ଦର ! ମୋ କାଚକୁ ଅକ୍ଷୟ କର, ମୋ ସିନ୍ଦୂରକୁ ରକ୍ଷା କର । ମୋତେ ବୈଧବ୍ୟ ବିପଦରୁ ଉଦ୍ଧାର କର । ମୋର ସ୍ୱାମୀମାନଙ୍କ ଉପରେ ଆସିଥିବା ବିପଦ ଦୂର କର । କ୍ରୋଧୀ ମୁନି ଅସନ୍ତୁଷ୍ଟ ହୋଇ ଅଭିଶାପ ନ ଦିଅନ୍ତୁ । ହେ ଅଶରଣ ଶରଣ ! ତୁମେ ହିଁ ମୋର ଏକମାତ୍ର ଗତି । ହେ ଭୟଭଞ୍ଜନ ! ତୁମେ ଆମକୁ ବହୁ ବିପଦରୁ ରକ୍ଷାକରିଛ; କିନ୍ତୁ ଏ ବିପଦ ସବୁଠାରୁ ଭୟଙ୍କର । ବିପ୍ର ଶାପଦଗ୍ଧ ପୁରୁଷର ପରଲୋକ ମଧ୍ୟ ନଷ୍ଟ ହୋଇଯାଏ । ଇହଲୋକରେ ମଧ୍ୟ ଅପଯଶ ଖେଳିଯାଏ । ଆପଣଙ୍କ ଭକ୍ତ ଭାବେ ପରିଚିତ ମୋ ପତିମାନଙ୍କର ଏଭଳି ଦୁର୍ଦ୍ଦଶା ହେଲେ ଆପଣଙ୍କ ପକ୍ଷରେ ମଧ୍ୟ ଲଜ୍ଜାକର ହେବ । ଆପଣଙ୍କ ଭକ୍ତବାତ୍ସଲ୍ୟ ଗୁଣରେ କଳଙ୍କ ଲାଗିଯିବ । ଆମର ରାଜ୍ୟ ଗଲା, ଗୃହହୀନ ହୋଇ ବଣରେ ବୁଲିଲୁ, ସେଥିପାଇଁ ଆମର ଚିନ୍ତା ନାହିଁ; କିନ୍ତୁ ବର୍ତ୍ତମାନର ବିପତ୍ତିରୁ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ଦ୍ରୌପଦୀ କାନ୍ଦି କାନ୍ଦି ଏହିଭଳି କହୁଥିବାବେଳେ, ତାଙ୍କୁ ଶ୍ୟାମସୁନ୍ଦରଙ୍କ ଆସିବା ଭଳି ଜଣାଗଲା । ଆଗରେ ପୀତାମ୍ବରଧାରୀ ଶ୍ରୀକୃଷ୍ଣ ଚାଲି ଚାଲି ଆସୁଥିବାର

Digitized by srujanika@gmail.com

ଦେଖାଗଲେ । ନିଜର କଳ୍ପଲାଭ ଅଶ୍ରୁଧାରରେ କମଳନୟନା ଦ୍ରୌପଦୀ ଶ୍ରୀକୃଷ୍ଣଙ୍କୁ ଅର୍ଘ୍ୟଦାନ କଲେ । ଅତୀବ ବ୍ୟଗ୍ର ଭାବ ଦେଖାଇ ମଦନମୋହନ ଦ୍ରୌପଦୀଙ୍କୁ କହିଲେ—ଦ୍ରୌପଦି ! ମୋତେ ବଡ଼ ଭୋକଲାଗୁଛି, ଖାଇବାକୁ କିଛି ଅଛି ତ ଦିଅ । 'ଦ୍ରୌପଦୀ କାନ୍ଦି କାନ୍ଦି କହିଲେ –'ସବୁବେଳେ ଉପହାସ କରିବା ତୁମର ଅଭ୍ୟାସ । ଘରେ କିଛି ଖାଇବାକୁ ଥିଲେ ତୁମକୁ କାହିଁକି କାନ୍ଦି କାନ୍ଦି ଡାକିଥାନ୍ତି ? ଦ୍ୱାରକାରୁ ଏତେଦୂର ଆସିବା ପାଇଁ କାହିଁକି କଷ୍ଟ ଦେଇଥାନ୍ତି ?'

କିନ୍ତୁ ଶ୍ରୀକୃଷ୍ଣ ଦ୍ରୌପଦୀଙ୍କ ଉତ୍ତରରେ ଆଦୌ ହସିଲେ ନାହିଁ କି ନିଜର ବ୍ୟଗ୍ରତା ମଧ୍ୟ ଶାନ୍ତ କଲେନାହିଁ । ମୁଁ ବାହାରେ ଥାଇ ଏସବୁ ଘଟଣା ଦେଖୁଥାଏ । ଶ୍ୟାମସୁନ୍ଦର ପୂର୍ବଭଳି କହିଲେ—'ତୁମ ଆଖିରେ ଖାଲି ଲୁହ ପୁରି ରହିଛି, ଯେତେବେଳେ ଇଚ୍ଛା ସେତେବେଳେ ମୁହଁରେ ଲୁଗା ଗୁଞ୍ଜି କାନ୍ଦି ପକାଉଛ । କାହିଁକି କାନ୍ଦୁଛ ସେ କଥା କୁହ । ମୋତେ ଖାଇବାକୁ ଦିଅ, ମୁଁ କେତେ ଦୂରରୁ ଆସିଲିଣି । ଖାଲି କାନ୍ଦି ପକେଇଲେ କ'ଣ ମୋ ପେଟ ପୂରିଯିବ ?'

ଅତ୍ୟନ୍ତ କାତରଭାବେ କୁପିତା ହୋଇ ଦ୍ରୌପଦୀ ମମତା ପ୍ରକାଶ ପୂର୍ବକ କହିଲେ—'ମୁଁ ଦେଖୁଛି, ତୁମେ ବର୍ତ୍ତମାନ ଦ୍ୱିତୀୟ ଦୁର୍ବାସା ଆସି ପହଞ୍ଚିଛ । ତୁମର ଅଭିଶାପକୁ ମୋର ଆଦୌ ଭୟ ନାହିଁ । ମୁଁ ସ୍ପଷ୍ଟଭାବେ କହୁଛି, ତୁମକୁ ଦେବା ନିମିତ୍ତ ମୋ ପାଖରେ ଗୋଟିଏ ହେଲେ ଦାନା ନାହିଁ । କାଲି ପେଟପୁରି ଖାଇନେବ । ଏବେ ଆମକୁ ଅସଲ ଦୁର୍ବାସାଙ୍କଠାରୁ ରକ୍ଷାକର । ତାଙ୍କ ଅଭିଶାପ ବଳରେ ଭସ୍ମହେବାରୁ ଆମକୁ ରକ୍ଷାକର । ଶ୍ରୀକୃଷ୍ଣ ପୂର୍ବସ୍ୱରରେ କହିଲେ—ସେ ଦୁର୍ବାସା କଥା ପରେ ଭାବିବ, ସେ ତ ଏଠାରେ ନାହାନ୍ତି । ସେ ଯେତେବେଳେ ଆସିବେ ସେତେବେଳେ ଦେଖାଯିବ, ପ୍ରଥମେ ମୋତେ କିଛି ଖାଇବାକୁ ଦିଅ ।' କୃଷ୍ଣା ଅତୀବ ନମ୍ରଭାବେ କହିଲେ—'ପ୍ରଭୋ ! ଆଉ ଅଧିକ ଉପହାସ କରନ୍ତୁ ନାହିଁ । ଅସମୟରେ ହସିବା ଠିକ୍ ନୁହେଁ । ସୂର୍ଯ୍ୟଦତ୍ତ ଅକ୍ଷୟପାତ୍ରକୁ ମୁଁ ଧୁଆଧୋଇ କରି ରଖିଦେଇଛି । ଏବେ ସେଥିରୁ କିଛି ବାହାରିବାର ଆଶା ନାହିଁ । ଆପଣଙ୍କୁ କ'ଣ ଖୁଆଇବି ?'

ଭଗବାନ୍ କହିଲେ—'ଦେବି ! ତୁମେ ନିଜେ ଅନ୍ନପୂର୍ଣ୍ଣା । ତୁମ ଭଣ୍ଡାର ସଦା ଅକ୍ଷୟ । ତାହା କେବେ ସରିବାର କଥା ନୁହେଁ । ସେହି ପାତ୍ରଟି ଆଣି ତ ଦେଖେ । ମୋର ତୃପ୍ତି ହେବା ଭଳି ସେଥିରେ ଅବଶିଷ୍ଟ କିଛି ଅଛି କି ନାହିଁ ।' ଦ୍ରୌପଦୀ ରାଗି କରି ଦୁମ୍ ଦୁମ୍ ହୋଇ ଚାଲିଗଲେ ଓ ଆଖି ପିଛୁଳାକେ ପାତ୍ରଟି ଆଣି ଶ୍ରୀକୃଷ୍ଣଙ୍କ ଆଗରେ କଚାଡ଼ି ଦେଲେ, ଆଉ କହିଲେ—'ଦେଖ, ମୁଁ ତାକୁ ଭଲକରି ଧୋଇଦେଇ ରଖିଛି, ଆଉ ସେଥିରେ ଅଛି କଣ ? ପାତ୍ରଟିକୁ ଆଗରେ

Digitized by srujanika@gmail.com

ଦେଖି ଶ୍ରୀକୃଷ୍ଣ ଉତ୍ତମ ରୂପେ ନିରୀକ୍ଷଣ କଲେ । ଭାଗ୍ୟର କଥା, ଦ୍ରୌପଦୀଙ୍କ ଅସାବଧାନତାରୁ ବଥୁଆ ଶାଗର ଏକ କ୍ଷୁଦ୍ରତମ ଅଂଶ ଦୈବାତ୍ ପାତ୍ରର ଫନ୍ଦଧାର ତଳେ ଲାଗିରହିଥିଲା । ଦ୍ରୌପଦୀଙ୍କ ଦୃଷ୍ଟି ସେଠାରେ ପଡ଼ି ନ ଥିଲା । ତାହା ଦେଖି ପ୍ରସନ୍ନ ହୋଇ ହରି କହିଲେ – ଦେଖ, ତୁମେ ନିଜେ ଦେଖ, ତୁମେ ତ କହୁଥିଲ ଏଥିରେ କିଛି ନାହିଁ । ଏଥିରେ କେତେ ଦ୍ରବ୍ୟ ପୂରି ରହିଛି । ସେଥିରେ ଏକା ମୁଁ ନୁହେଁ ଚରାଚର ପୃଥିବୀ ତୃପ୍ତ ହୋଇପାରିବ ।' ଏହା କହି ଆଙ୍ଗୁଳି ଆଗରେ ଭଗବାନ ଶ୍ରୀକୃଷ୍ଣ ସେହି ପତ୍ରଟିକୁ ଉଠାଇ ଆଣି ହାତରେ ରଖିଲେ, ଆଉ କହିଲେ ଏହି ଶାଗ ପତ୍ରଟିରେ ସାରା ବ୍ରହ୍ମାଣ୍ଡ ପରିତୃପ୍ତ ହେବ, ଏତିକ କହି ସେତକ ସେ ନିଜ ପାଟିରେ ପକାଇଦେଲେ ।

ସ୍ନାନ ସାରି ଦୁର୍ବାସା ମୁନି ଓ ତାଙ୍କ ସାଙ୍ଗମାନେ ଆସୁଥାନ୍ତି । ସମସ୍ତଙ୍କର ଖଟାଳିଆ ହାକୁଟି ଉଠୁଥାଏ । ସେମାନେ ପରସ୍ପର ମଧ୍ୟରେ କୁହାକୁହି ହେଲେ— ଆଉ ଗୁଣ୍ଡାଟିଏ ଖାଇବାଭଳି ସ୍ଥାନ ପେଟରେ ନାହିଁ । ଭୋଜନ ନ କଲେ ଧର୍ମରାଜ ଅଭିଶାପ ଦେବେ ନାହିଁ ତ ? ଦୁର୍ବାସା ମଧ୍ୟ ମନେ ମନେ ଭୟ ଭୀତ ହୋଇପଡ଼ିଲେ । ଅମ୍ବରୀଶ ରାଜାଙ୍କ ସମୟର ଘଟଣା ତାଙ୍କର ମନେ ପଡ଼ିଲା । ଭଗବାନଙ୍କ ସୁଦର୍ଶନ ଚକ୍ରର ତେଜ କଥା ମନେ ପଡ଼ିବା ମାତ୍ରେ ଦୁର୍ବାସାଙ୍କ ମୁହଁ ଶୁଖିଗଲା । ସେ କାହାକୁ କିଛି ନ କହି ସେଠାରୁ ପଳାୟନ କଲେ । ଶିଷ୍ୟମାନେ ମଧ୍ୟ ଦୁର୍ବାସାଙ୍କୁ ଅନୁଗମନ କଲେ ।

ଭଗବାନ୍ ଭୀମସେନଙ୍କୁ କହିଲେ – 'ଭାଇ ଭୀମସେନ ! ତୁମେ ଶୀଘ୍ର ଯାଇ ମୁନି ଦୁର୍ବାସା ଓ ଅନ୍ୟମାନଙ୍କୁ ଡାକି ଆଣ । ଖାଦ୍ୟ ପ୍ରସ୍ତୁତ ହୋଇସାରିଲାଣି । ଏହା ଶୁଣି ଭୀମ ଦୌଡ଼ିଗଲେ । ସେ ଯାଇ ଦେଖିଲେ ମୁନିମାନେ କୌପୀନ ନ ବଦଳାଇ ଓଦା କନାସବୁ ହାତରେ ଧରି ପଳାଇ ଯାଉଛନ୍ତି । ଭୀମସେନ ଦୌଡ଼ି ଦୌଡ଼ି ସେମାନଙ୍କ ଆଗକୁ ଯାଇ କହିଲେ 'ମହାରାଜ ! ଏହା ତ ଠିକ୍ ନୁହେଁ । ଆପଣ ଗେଷ୍ଟେଇ କରିବାକୁ କହି ଆସି ଏବେ ପଳେଇ ଯାଉଛନ୍ତି କୁଆଡ଼େ ? ଆମର ଖାଦ୍ୟ ସବୁ ଯେ ନଷ୍ଟ ହେଲା, ସେଥିପାଇଁ ଦାୟୀ କିଏ ?'

ବିନମ୍ରଭାବେ ଦୁର୍ବାସା କହିଲେ—'ତୁମେ ସତ କହୁଛ; କିନ୍ତୁ କଣ ହେଲା କେଜାଣି ପେଟ ଆମର ଫୁଲିଯାଇଛି । ପାଚିଲା ବଟିକାଟିଏ ଖାଇବାକୁ ମଧ୍ୟ ସ୍ଥାନ ନାହିଁ । ଏବେ ଆମେ ଯଦି କିଛି ଖାଇବୁ ତେବେ ମୃତ୍ୟୁ ସୁନିଶ୍ଚିତ । ଆମକୁ କ୍ଷମା ଦିଅ । ଆମ ପକ୍ଷରୁ ଧର୍ମରାଜଙ୍କୁ କହିବ, ସେ ଯେପରି ଆମ ଉପରେ ରାଗିବେ ନାହିଁ । ଅସୁବିଧା ହୋଇ ନ ଥିଲେ ଆମେ ନିଶ୍ଚୟ ତାଙ୍କ ଆତିଥ୍ୟ ସ୍ୱୀକାର କରିଥାନ୍ତୁ ।' ଭୀମସେନ ତ ମାନିବା ଲୋକ ନୁହେଁ । ସେ କହିଲେ—'ଯଦି ଆପଣ ଯିବେ ନାହିଁ ବୋଲି କହୁଛନ୍ତି, ତେବେ ମୋତେ କିଛି ଆଶୀର୍ବାଦ ଦିଅନ୍ତୁ ।'

Digitized by srujanika@gmail.com

ଦୁର୍ବାସା, ଭୀମସେନଙ୍କୁ ଏକଛତ୍ର ସମ୍ରାଟ୍ ହୋଇ କୁଟିଳ ବୁଦ୍ଧି କରିଥିବା ଦୁର୍ଯ୍ୟୋଧନର ସର୍ବନାଶ କରିପାରିବ ବୋଲି, ଆଶୀର୍ବାଦ ଦେଇ କହିଲେ—ଦୁର୍ଯ୍ୟୋଧନର କୁଳରେ ପାଣି ମୁନ୍ଦାଏ ଦେବା ପାଇଁ କେହି ରହିବେ ନାହିଁ ।' ଏହା କହି ଦୁର୍ବାସା ସଶିଷ୍ୟ ସେଠାରୁ ପ୍ରସ୍ଥାନ କଲେ ।

ଏହି ଭାବରେ ଭଗବାନ୍ ଶ୍ରୀକୃଷ୍ଣଙ୍କ କୃପାରୁ ଆମେ ଦୁଃଖ, ଶୋକ, ବିପଦ ଅଭିଶାପାଦିରୁ ମୁକ୍ତିଲାଭ କରିଥିଲୁ । ସେ ଆଜି ଆମକୁ ପରିତ୍ୟାଗକରି ଚାଲିଯାଇଛନ୍ତି । ଆମର ସମସ୍ତ କାର୍ଯ୍ୟ ଅପୂର୍ଣ୍ଣ ରହିଗଲା । ଏବେ ଏ ସଂସାର ଆମକୁ ନରକ ଭଳି ମନେ ହେଉଛି । ଆଉ ଏ ସୁଖ ଭୋଗରେ କି ଲାଭ ? ରାଜନ୍ ! ବର୍ତ୍ତମାନ ଆମ୍ଭେମାନେ ଭଗବାନଙ୍କ ପଥ ଅନୁସରଣ କରିବା ବାଞ୍ଛନୀୟ। ଏହା କହୁ କହୁ ଅର୍ଜୁନ ପୁଣି କାନ୍ଦିବାକୁ ଲାଗିଲେ ।

## ଛପ୍ପୟ

ସୁନତ ପ୍ରିୟା କୀ ଟେର ବେର ନହିଁ କରି ପଧାରେ ।
ଅତି ଭୂଖା କହୁ ଦେହୁ ଆଇ ଯେ ବଚନ ଉଚ୍ଚରେ ॥
ଲେଇ କୃଷ୍ଣା ପାତ୍ର ଲାଇ ଆଗେ ଧରି ଦୀହ୍ନୋ ।
ଶାକପତ୍ରକୁଁ ପାଇ ତୃପ୍ତ ସବରୋ ଜଗ କୀହ୍ନୋ ॥
ହ୍ନାତ ମୁନିନ ଫୁଲ୍ୟୋ ଉଦର, ଲେତ ଓକାର ପଲାୟେ ସବ
ଟାରି ବୃହଦ ବିପତ୍ତି ଜିନ, ଗୟେ ତ୍ୟାଗ ସଂସାର ସବ ॥



Digitized by srujanika@gmail.com

# କିରାତାର୍ଜୁନ ଯୁଦ୍ଧରେ
## ଶ୍ରୀକୃଷ୍ଣଙ୍କ କୃପା

ଯତ୍ତେଜସାଥ ଭଗବାନ୍ ଯୁଧି ଶୂଲପାଣି—
ର୍ବିସ୍ମାପିତଃ ସଗିରିଜୋଽସ୍ତ୍ରମଦାନ୍ନିଜଂ ମେ ।
ଅନ୍ୟେଽପି ଚାହମମୁନୈବ କଳେବରେଣ
ପ୍ରାପ୍ତୋ ମହେନ୍ଦ୍ରଭବନେ ମହଦାସନାର୍ଦ୍ଧମ୍ ॥
( ଭାଗବତ ୧ । ୧୫ । ୧୨ )

ଛପ୍ପୟ

ଅଶ୍ୱତ୍ଥାମା ଭୀମ ଦ୍ରୋଣ ଅରୁ କର୍ଣ୍ଣ ଧନୁର୍ଦ୍ଧର ।
ଡରତ ରହତ ନିତ ଆପ ଚାହିଁ ଅତି ବଳବତ୍ତର ॥
ଦୀକ୍ଷା ଦେକେ ମୋଇ, ଆପନେ ଅସ୍ତ୍ର ଲୈନ ହିତ ।
ପଠୟୋ, ପ୍ରକଟେ ଇନ୍ଦ୍ର, କହେଯା ତପ ମେଁ
ତୁମ ହୋ ରତ ॥
ତୁମରେ ତପତେଁ ତୁଷ୍ଟ ହ୍ୱୈ, ତୁରତ ତ୍ରିଲୋଚନ ଆୟଁଗେ ।
ଲୋକପାଲ, ଶିବ ଅସ୍ତ୍ର ନିଜ, ଆଇ ସଭୀ ଦେ ଜାୟଁଗେ ॥

ଭଗବାନ୍ ନିଜର ବିଭିନ୍ନ ପ୍ରକାର ବିଭୂତି ମଧ୍ୟରେ ବିଭକ୍ତ ହୋଇ ଭକ୍ତ-ମାନଙ୍କ ପ୍ରତି ଅନୁଗ୍ରହ କରନ୍ତି । ସଂସାର ମଧ୍ୟରେ ଆଇ ନିଜର କଲ୍ୟାଣ ହେଲାଭଳି ଯେ କୌଣସି ପ୍ରକାର ସାହାଯ୍ୟ ଯେ କୌଣସି ବ୍ୟକ୍ତିଠାରୁ ପାଇଥିଲେ ମଧ୍ୟ, ତାହାକୁ ଶ୍ୟାମସୁନ୍ଦରଙ୍କ ଅନୁଗ୍ରହ ଦୃଷ୍ଟିଭାବେ ଗ୍ରହଣ କରିବାକୁ ପଡ଼ିବ । କାରଣ ସେହି ରୂପରେ ସେହିଭାବରେ ସେ ଆମକୁ ଅନୁଗ୍ରହ କରିଛନ୍ତି । ସେ ଦୟାକରି ଆମକୁ ସନ୍ମାର୍ଗ ଉପଦେଶ ଦେଇଛନ୍ତି । ଏହି ସବୁ କଥା ଭାବି ଧର୍ମରାଜ କହିବାକୁ ଆରମ୍ଭ କଲେ— 'ଅର୍ଜୁନ ! ଅନ୍ୟ ଉପରେ ଭଗବାନ୍ ଅଲକ୍ଷିତ ଭାବେ ଦୟା ପ୍ରଦର୍ଶନ କରୁଥିବାବେଳେ ଆମ ପାଖରେ ସ୍ୱୟଂ ଉପସ୍ଥିତ ହୋଇ ଅନୁଗ୍ରହ

Digitized by srujanika@gmail.com

କରନ୍ତି । ତାଙ୍କର ଦୟାରୁ ଆମେ ଯୁଦ୍ଧରେ ବିଜୟୀ ହେଲୁ, ନୋହିଲେ ପରଶୁରାମ ତୁଲ୍ୟ ଯୋଦ୍ଧା, ଭୀଷ୍ମ ପିତାମହଙ୍କ ସହିତ ଯୁଦ୍ଧ କରିବାକୁ କାହାର ସାହସ ହୋଇଥାନ୍ତା । ତୁମେ ମୋତେ ବନବାସ କାଳର ଆଉ କେତୋଟି ଅଦ୍‌ଭୁତ ଘଟଣା କହ । ସେ ସମସ୍ତ ମୋର ଅଜ୍ଞାତ ନ ଥିଲେ ମଧ୍ୟ ଆଜି ତୁମ ମୁହଁରୁ ଶୁଣୁଥିବାରୁ ମୋତେ ନୂଆ ନୂଆ କଥା ରୂପେ ପ୍ରତୀତ ହେଉଛି । କୃଷ୍ଣକଥା ଶ୍ରବଣରେ କାହାରି କେବେ ତୃପ୍ତି ହୁଏ ନାହିଁ ।’

ଧର୍ମରାଜଙ୍କ ଆଦେଶ ଅନୁସାରେ ଅର୍ଜୁନ କହିବାକୁ ଲାଗିଲେ—‘ରାଜନ୍ ! ଅନନ୍ତସ୍ମୃତିକୁ ମୋର ଏହି କ୍ଷୁଦ୍ର ଜିହ୍ୱାରେ ସୀମିତ ସମୟ ମଧ୍ୟରେ କିପରି କହିବି । ତେଣୁ ଯାହା ପାରିବି କହିବି । ସେହି କଥା କହିବାରେ ହୃଦୟ ମୋର ଉଲ୍ଲାସ ଲାଭକରୁଛି । ବନବାସ କାଳର ବିପଦ ଅସହ୍ୟ ହେଉଥିଲା । ସେ ସମସ୍ତ ଆମେ ଶ୍ୟାମସୁନ୍ଦରଙ୍କ ଦୟାହେତୁ ସହିବାପାଇଁ ସମର୍ଥ ହୋଇଥିଲେ । ଆପଣ ନିଜର ପୈତୃକ ରାଜ୍ୟ ଫେରିପାଇବା ନିମିତ୍ତ ବ୍ୟାକୁଳ ଥିଲେ; କିନ୍ତୁ ଦୁର୍ଯ୍ୟୋଧନର ଦୁଷ୍ଟ ସ୍ୱଭାବକୁ ସ୍ମରଣ କରି ବିନାଯୁଦ୍ଧରେ ରାଜ୍ୟ ପୁନଃପ୍ରାପ୍ତିର ଆଶା ରଖି ପାରୁ ନ ଥିଲେ । ଯୁଦ୍ଧ କଥା ମନେପଡ଼ିଲେ ଆପଣଙ୍କ ଶରୀର ରୋମାଞ୍ଚିତ ହୋଇ ଉଠୁଥିଲା । ଆଦାନ, ସନ୍ଧାନ, ବିସର୍ଗ ଓ ସଂହାରରୂପ ଧନୁର୍ବିଦ୍ୟାର ଚରଣ ଚତୁଷ୍ଟୟ ପଣ୍ଡିତ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଅଶ୍ୱତ୍ଥାମାଙ୍କ ବଳ, ପରାକ୍ରମ ଆପଣ ମନେ ପକାଇବାମାତ୍ରେ ହତାଶ ହୋଇଯାଉଥିଲେ । ଯୁଦ୍ଧରେ ସେମାନଙ୍କୁ ଜିଣିବାର ଆଶା ଆଦୌ ନ ଥିଲା । ସମସ୍ତ ଦେବତା ମିଳି କରି ମଧ୍ୟ ସେହି ମହାଧନୁର୍ଦ୍ଧର ବୀରମାନଙ୍କୁ ପରାସ୍ତ କରିପାରି ନ ଥାନ୍ତେ । ମଣିଷ କଥା ଛାଡ଼ନ୍ତୁ । ଆପଣ ସେହି ଚିନ୍ତାରେ ଚିନ୍ତିତ ହୋଇ ସର୍ବଦା ଲମ୍ବା ଲମ୍ବା ଦୀର୍ଘଶ୍ୱାସ ଛାଡ଼ୁଥିଲେ । ଆପଣ ଯେତେବେଳେ ସେମାନଙ୍କୁ ଜୟ କରିପାରିବାର ଉପାୟ ନ ପାଇଲେ ସେତେବେଳେ ଭଗବାନ୍ ବ୍ୟାସଙ୍କ ପ୍ରଦତ୍ତ ବିଦ୍ୟାଶିକ୍ଷା ମୋତେ ଦେଇଥିଲେ । ସେହି ବିଦ୍ୟାବଳରେ ମୋର ସଚରାଚର ଜ୍ଞାନ ଉଦୟ ହେଲା । ଦେବରାଜ ଇନ୍ଦ୍ରଙ୍କ ନିକଟକୁ ଯାଇ ମୁଁ ଦିବ୍ୟ ଅସ୍ତ୍ରଶସ୍ତ୍ର ଲାଭ କଲି ।

ଦୀକ୍ଷା ଦେଇସାରିବା ପରେ ଆପଣ ଅତି ଦୁଃଖରେ ମୋତେ ବିଦାୟ ଦେଇ ଗହନ ବନକୁ ଯାଇ ତପସ୍ୟା କରିବାପାଇଁ କହିଲେ । ଆପଣଙ୍କ ଆଦେଶ ଅନୁସାରେ ମୁଁ ଅଗମ୍ୟ ନିର୍ଜନ ବନକୁ ଚାଲିଗଲି । ସେଠାରେ କୃଷ୍ଣଙ୍କ କୃପା ବିନା ମୋର କୌଣସି ଭରସା ନ ଥିଲା । ତାଙ୍କ ଉପରେ ମୋର ଦୃଢ଼ ଭରସା ଥିଲା । ସେ ମୋର କଲ୍ୟାଣ କରିବେ ଏବଂ ସମସ୍ତ ବିଘ୍ନ ଦୂର କରିବେ । ଏହି ଭାବନାରେ ନିର୍ଭୟ ହୋଇ ମୁଁ ଜନମାନବଶୂନ୍ୟ ଅଗମ୍ୟ

Digitized by srujanika@gmail.com

ଗନ୍ଧମାଦନର ଗହନ ବନକୁ ଯାଇଥିଲି । ସେଠାକୁ ସିଦ୍ଧପୁରୁଷମାନେ ମଧ୍ୟ ଯାଇ ପାରୁନଥିଲେ । ସେହି ଶାନ୍ତ ଏକାନ୍ତ ସ୍ଥାନରେ ମୋ ସହିତ ମୋର ପିତା ଦେବରାଜ ଇନ୍ଦ୍ରଙ୍କ ସାକ୍ଷାତ୍ ହେଲା । ସେ ମୋତେ ଉପଦେଶ ଦେଇ କହିଲେ, ଏ ସ୍ଥାନରେ ଅଧିଷ୍ଠାତୃ ଦେବତା ହେଲେ ଭଗବାନ୍ ବିଶ୍ୱନାଥ ଶିବ । ତାଙ୍କୁ ଆରାଧନା କରି ପ୍ରସନ୍ନ ରଖିବା ଉଚିତ ହେବ । ତା' ପରେ ହିଁ ସ୍ୱର୍ଗରୁ ଦିବ୍ୟ ଅସ୍ତ୍ରଲାଭ କରିବା ସମ୍ଭବ ହେବ । ଏହା କହି ଦେବରାଜ ଅନ୍ତର୍ଦ୍ଧାନ ହୋଇଗଲେ ।

ମୋର ଶ୍ୟାମସୁନ୍ଦର ଶିବରୂପ ଧାରଣ କଲେ । ମୋର ଇଷ୍ଟଠାରୁ ଅଭିନ୍ନ ବୋଲି ଭାବି ମୁଁ ତ୍ରିଶୂଳପାଣି ଭଗବାନ୍ ଭୂତନାଥ ବୃଷଭଧ୍ୱଜଙ୍କ ଧ୍ୟାନ ଓ ପୂଜା କରିବାକୁ ଲାଗିଲି । ସେତେବେଳେ ମୋର କୌଣସି ଭୟ ବା ଚିନ୍ତା ନ ଥିଲା । ହଠାତ୍ ଦେଖିଲି, ଗୋଟିଏ ରାକ୍ଷସ ବରାହରୂପ ଧାରଣ କରି ମୋତେ ସଂହାର କରିବା ଲକ୍ଷ୍ୟରେ ମୋ ପାଖରେ ଆସି ପହଞ୍ଚିଲା । ମୁଁ ଦ୍ୱାରକାନାଥଙ୍କ ଭରସାରେ କାହାରିକୁ ଖାତିର କରୁନଥିଲି କି, ତପସ୍ୟା କାଳରେ କାହାରିକୁ ମାରିବା ଇଚ୍ଛା ନ ଥିଲା; କିନ୍ତୁ ସେହି ଶୂକର ରୂପୀ ଅସୁର ଯେତେବେଳେ ମୋ ପ୍ରାଣନେବା ପାଇଁ ଆସି ପହଞ୍ଚିଲା, ସେତେବେଳେ ଗାଣ୍ଡୀବ ଧନୁ ଧରି ତୀକ୍ଷ୍ଣଶର-ଦ୍ୱାରା ତାକୁ ମାରି ଦେବାକୁ ଇଚ୍ଛା କଲି । ଠିକ୍ ଏହି ସମୟରେ ଜଣେ ଶବର ଶବରୁଣୀ ସହିତ ଧନୁଶର ଧରି ନିର୍ଭୟରେ ମୋ ଆଗକୁ ଚାଲିଆସିଲା । ସେ ଅଞ୍ଜନ ପର୍ବତ ଭଳି କଳା, ବଳିଷ୍ଠ ଓ ଭୟଙ୍କର ଦେଖାଯାଉଥିଲା । ଲାଲ୍ ଲାଲ୍ ଆଖି ଦୁଇଟି ତାର ଜଳୁଥିଲା । ହଜାର ହଜାର କିରାତ ଓ କିରାତଣୀ ତାଙ୍କ ପଛରେ ଦୌଡ଼ି ଦୌଡ଼ି ଆସୁଥିଲେ । ସେମାନଙ୍କର ଭୟଙ୍କର ଶବ୍ଦରେ ସେହି ଶାନ୍ତ ପ୍ରଦେଶ ଅଶାନ୍ତ ଓ କୋଳାହଳପୂର୍ଣ୍ଣ ହୋଇଗଲା । ସେମାନେ ସମସ୍ତେ ସ୍ୱଚ୍ଛନ୍ଦଭାବେ ମୋହରି ପାଖକୁ ଚାଲି ଆସୁଥିଲେ । ମୋ ପାଖରେ ପହଞ୍ଚିବା ମାତ୍ରେ ସେହି ଭୟଙ୍କର ରୂପଧାରୀ କିରାତ ମୋତେ ଧମକେଇ ପଚାରିଲା— ତୁ କିଏ ? ଏଠିକି କାହିଁକି ଆସିଛୁ ? ସାବଧାନ ! ତୁ ଭୁଲରେ ମଧ୍ୟ ଏ ବରାହକୁ ବାଣବିଦ୍ଧ କରିବୁ ନାହିଁ । ଏହା ମୋର ଶିକାର । ଯଦି ଅହଙ୍କାରବଶତଃ ତୁ ତାକୁ ବାଣ ମାରିବୁ, ମୁଁ ସେହି ଶୂକର ସହିତ ତୋତେ ମଧ୍ୟ ଯମପୁରକୁ ପଠାଇଦେବି ।

ଜଣେ ବଣୁଆ ଶବରକୁ ମୋ ଆଗରେ ଠିଆହୋଇ ଏଭଳି କଠୋର କଥା କହୁଥିବାର ଦେଖି ମୋର ଭୀଷଣ କ୍ରୋଧ ଜାତ ହେଲା; କିନ୍ତୁ ମୁଁ ତା' କଥା ଉପରେ ଆଦୌ ଧ୍ୟାନ ନ ଦେଇ ସେହି ବରାହକୁ ଲକ୍ଷ୍ୟ କରି ବାଣ ଛାଡ଼ିଦେଲି । ଦୁଇଟି ବାଣରେ ମୂକ ନାମକ ଦୈତ୍ୟ ନିଜର କପଟ ବରାହ ରୂପ ତ୍ୟାଗ କରି ପୃଥିବୀ ଉପରେ ଢଳିପଡ଼ିଲା । ରାକ୍ଷସ ମରିଗଲା; କିନ୍ତୁ କିରାତ ଖୁବ୍

Digitized by srujanika@gmail.com

ରାଗିଗଲ । ସେ ପୁଣି ମୋତେ କହିଲା—ତୁ ମୋର ଲକ୍ଷ୍ୟ କରିଥିବା ପଶୁକୁ କାହିଁକି ମାରିଲୁ ? ମୁଁ ଯେତେବେଳେ ତାକୁ ମାରିବା ପାଇଁ ସିଦ୍ଧାନ୍ତ କରିଥିଲି, ତୁ ବାଣ ମାରିବାକୁ କାହିଁକି ସାହସ କଲୁ ।

ମୁଁ ଅତ୍ୟନ୍ତ କ୍ରୋଧରେ ଉତ୍ତର ଦେଲି—'ଯା ପଳା, କାହିଁକି ବକ୍‌ବକ୍ ହେଉଛୁ ? ତୁ କିଏ ମୋର ପଶୁକୁ ମାରିବା ପାଇଁ ? ସେଇଟା ଏକ ରାକ୍ଷସ । ମୋତେ ମାରିଦେବାକୁ ଆସିଥିଲା । ତାକୁ ବଧକରିବା ମୋର ଧର୍ମ । ତୁ ମୃଗୟା ନୀତିର ବିରୋଧାଚରଣ କରିଛୁ । ଏଠାରୁ ଚାଲିଯା, ନୋହିଲେ ତୋତେ ବି ମୁଁ ଯମପୁର ପଠାଇଦେବି । ତୁ କ'ଣ ଅର୍ଜ୍ଜୁନ ନାମ ଶୁଣିନାହୁଁ । ମୁଁ ସେହି ଅର୍ଜ୍ଜୁନ ଏହି ଗାଣ୍ଡୀବ ଧନୁଦ୍ୱାରା ଶ୍ରୀକୃଷ୍ଣଙ୍କ ଦୟାରୁ ମୁଁ ସମସ୍ତ ଦେବତାଙ୍କ ଦେବରାଜ ଇନ୍ଦ୍ରଙ୍କୁ ମଧ୍ୟ ପରାସ୍ତ କରିଦେଇଛି । ତୋର ନିଜ ପ୍ରାଣ ପ୍ରତି ଭୟ ଥିଲେ ଏଠାରୁ ଶୀଘ୍ର ଚାଲିଯିବା ଉଚିତ । ନିର୍ଭୟରେ ସେହି କିରାତ କହିଲା—'ତୋ ଗାଣ୍ଡୀବକୁ ମୋର ଭୟ ନାହିଁ କି ତୋ କଥା ଶୁଣି ମୁଁ ଡରିଯିବା ଲୋକ ନୁହେଁ । ତୁ ମୋତେ ତଡ଼ିବାକୁ କିଏ ? ଏହି ଅରଣ୍ୟ ମୋର । ଏଠାରେ ଆମେ ସ୍ୱାଧୀନ ଭାବେ ବିଚରଣ କରୁଁ । ଯିବା କଥାହେଲେ ତୋତେ ହିଁ ଯିବାକୁ ହେବ; କାରଣ ଆମ ରାଜ୍ୟରେ ଆମକୁ ନ ଜଣାଇ ଏବଂ ଆମ କାର୍ଯ୍ୟରେ ବାଧା କରିଛୁ । ଏହି ଶୂକର ମୋହର ବାଣରେ ମରିଛି ।'

ମୁଁ ରାଗିଗଲି । ମୁଁ କହିଲି—'ବେଶି ଗଜର ଗଜର ହେଲେ ମାରିବି ଏକ ବାଣ ଯେ ତୋ ବୋପାର ନାଁ ଆସିବ ନାହିଁ । ଆସିଲା ଯେମିତି ରଜାପୁଅ । ଅରଣ୍ୟ ସମସ୍ତଙ୍କର । ତୋଭଳି ମ୍ଳେଚ୍ଛର ଏଠାକୁ ଆସିବାର ଅଧିକାର ନାହିଁ । ମୁଁ ଏଠାରେ ଭଗବାନ୍ ଭୂତନାଥଙ୍କ ଆରାଧନା କରୁଛି ।' ମୋର ଏଭଳି କଥା ଶୁଣି ସେହି ଭିଲ ଅତି ଅବଜ୍ଞା କଲାଭଳି କହିଲା—'ତୁ ଭୂତନାଥ, ପ୍ରେତନାଥ, ପିଶାଚନାଥ ଯାହାକୁ ଆରାଧନା କର ପଛକେ, ମୁଁ ମନା କରିବାସତ୍ତ୍ୱେ ତୁ କାହିଁକି ମୋ ମୃଗୟା ପଶୁକୁ ହତ୍ୟାକଲୁ ?'

ମୁଁ କ୍ରୁଦ୍ଧ ହୋଇ ହସି ହସି କହିଲି—'ତୁ ଏମିତି ଆଉ ମାନିବୁ ନାହିଁ । ତୁ ଏବେ ସେହି ଦୈତ୍ୟର ପଥ ଅନୁସରଣ କରିବୁ । ମୁଁ ତପସ୍ୟା କାଳରେ ହିଂସାଚରଣ କରିବାକୁ ଚାହୁଁ ନ ଥିଲି; କିନ୍ତୁ, କାଳ ଆସି ତୋ ମୁଣ୍ଡରେ ବସିଲାଣି । ଠିକ୍ ଅଛି, ଏବେ ସମ୍ଭାଳ । ଏହା କହି ମୁଁ ଏକ ତୀକ୍ଷ୍ଣ ବାଣ ସେହି ଭିଲକୁ ଲକ୍ଷ୍ୟକରି ଛାଡ଼ିଦେଲି । ପଥର ଉପରେ ବାଲୁକା କଣ୍ଟା ଫୋଡ଼ିଲେ ଯେପରି ତାହା ମୁନ ଗୁଣ୍ଡ ହୋଇଯାଏ ସେହିପରି ମୋ ବାଣଟିର ଅଗ୍ରଭାଗ ତା' ଦେହରେ ବାଜିବାମାତ୍ରେ ଭାଙ୍ଗିଯାଇ ଖସିପଡ଼ିଲା । ଏହା ଦେଖି ମୁଁ

Digitized by srujanika@gmail.com

ଆଶ୍ଚର୍ଯ୍ୟ ହୋଇଗଲି । ମୋର କ୍ରୋଧ ଆହୁରି ବଢ଼ିଗଲା । ତା ମୁଣ୍ଡ କାଟିବା ନିମିତ୍ତ ଅର୍ଦ୍ଧଚନ୍ଦ୍ରାକାର ବାଣ ମାରିଲି । ସେ ହସି ହସି ମୋ ବାଣଟାକୁ ହାତରେ ଧରି ପକେଇଲା । ତା'ପରେ ମୁଁ ଅସଂଖ୍ୟ ବାଣ ମାରି ଚାରିଆଡ଼ୁ ତାକୁ ଘୋଡ଼େଇ ପକେଇଲି; କିନ୍ତୁ ସୁମେରୁ ପର୍ବତ ଭଳି ସେ ଭିଲ ଠିଆ ହୋଇ ରହିଥାଏ । ଗୋଟିଏ ବାଣ ତା ଦେହରେ ବାଜିଲା ନାହିଁ । ମୋ ଅକ୍ଷୟ ତୂଣୀରର ସମସ୍ତ ବାଣ ସରିଗଲା । ସେତେବେଳେ ସର୍ବସ୍ୱ ଅପହୃତ ବଣିକ, ବିଷଦାନ୍ତ ଭାଙ୍ଗି ଦିଆଯାଇଥିବା ସର୍ପ, କାତ ଭାଙ୍ଗିଯାଇଥିବା ନୌକା, ପକ୍ଷ କଟାଯାଇଥିବା ପକ୍ଷୀ, ପଞ୍ଜରା ଭାଙ୍ଗିଯାଇଥିବା ସିଂହପରି ବିବଶ ହୋଇଗଲି; କିନ୍ତୁ ହତାଶ ନ ହୋଇ ମୁଁ ଧନୁର ଅଗ୍ରଭାଗରେ ତାକୁ ଠେଲିଦେବାକୁ ଇଚ୍ଛାକରି ଧନୁଟି ତା'ଆଡ଼କୁ ବଢ଼ାଇବା ମାତ୍ରେ ସେ ତାହା ଧରି ପକାଇ ମୋ ହାତରୁ ଛଡ଼େଇ ନେଲା । ଧନୁଟି ହାତରୁ ଯିବାମାତ୍ରେ ମୁଁ କ୍ରୋଧରେ ଅସ୍ଥିର ହୋଇ କଟୀଦେଶରୁ ଖଡ଼୍ଗ ବାହାର କରି ତାହା ଉପରେ ପ୍ରହାର କରିବା ମାତ୍ରେ ତାହା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ଆଉ କୌଣସି ଅସ୍ତ୍ର ନ ଥିବାରୁ ମୁଁ ଦ୍ୱନ୍ଦ୍ୱଯୁଦ୍ଧ ପାଇଁ ପ୍ରସ୍ତୁତ ହେବାର ଦେଖି ସେ ମଧ୍ୟ ପ୍ରସ୍ତୁତ ହୋଇଗଲା । ଯେତେ ଟଣା ଓଟରା କଲେ ମଧ୍ୟ ସେ ଅଚଳ ମହାମେରୁ ଭଳି ଠିଆ ହୋଇଥାଏ । ସବୁ ବଳ ଖର୍ଚ୍ଚ କରି ବିଧା ପରେ ବିଧା ମାରିଲି; କିନ୍ତୁ ସେଥିରେ ଟିକିଏ ହେଲେ ତା'ର ପରିବର୍ତ୍ତନ ଦେଖିଲି ନାହିଁ । ଶେଷରେ ଅନ୍ୟ ଉପାୟ ନ ପାଇ ତଳେ ପକାଇଦେବା ଅଭିପ୍ରାୟରେ ଯେତେବେଳେ ତାକୁ ଧରିବାପାଇଁ ହାତ ବଢ଼ାଇଲି, ସେତେବେଳେ ସେ ମୋତେ ଜାବୁଡ଼ି ଧରି ଏଭଳି ଚିପି ଧରିଲା ଯେ ମୋ ନିଃଶ୍ୱାସ ବନ୍ଦ ହୋଇଗଲା ଭଳି ମନେହେଲା । ମୋ ମୁହଁରୁ ରକ୍ତର ଧାରା ବହିଲା । ମୁଁ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲି; କିନ୍ତୁ ସେ ଶବର ଶବରୁଣୀ ସହିତ ସେହିପରି ହସ ହସ ମୁଖରେ ଠିଆ ହୋଇଥାଏ ।

କିଛି ସମୟ ପରେ ମୋର ମୂର୍ଚ୍ଛା ଭାଙ୍ଗିଗଲା । ମୁଁ କାନ୍ଦି କାନ୍ଦି କହିଲି— 'ହେ ଶ୍ୟାମସୁନ୍ଦର ! ଆଜି ଏ ଶବରଦ୍ୱାରା ମୋତେ ପରାସ୍ତ କଲ ? ମୁଁ ଭଗବାନ୍ ଶଙ୍କରଙ୍କର ପୂଜା ଆରମ୍ଭକଲି । ମୃତ୍ତିକା ଶଙ୍କରଙ୍କୁ ପୂଜାକରି ମାଳାଟିଏ ଦେବାମାତ୍ରେ ଦେଖିଲି, ତାହା କିରାତ କଣ୍ଠରେ ପଡ଼ିଛି । ସେତେବେଳେ ମୋର ଜ୍ଞାନୋଦୟ ହେଲା । ଭିଲ ବେଶଧାରୀ ସେ ଯେ ସାକ୍ଷାତ ଶଙ୍କର ସେଥିରେ ମୋର ଆଉ ସନ୍ଦେହ ରହିଲାନାହିଁ । ମୁଁ ସଙ୍ଗେ ସଙ୍ଗେ ତାଙ୍କ ଚରଣ ତଳେ ପଡ଼ିଗଲି । କିରାତ ରୂପୀ ଶଙ୍କର ଛଦ୍ମବେଶ ତ୍ୟାଗକରି ଦେବୀ ଭଗବତୀଙ୍କ ସହିତ ମୋ ଆଗରେ ପ୍ରକଟିତ ହେଲେ । ସେହି ଶ୍ୟାମସୁନ୍ଦରଙ୍କ ଦୟାରୁ ମୁଁ ଶିବଙ୍କୁ ସନ୍ତୁଷ୍ଟ କରି ପାରିଥିଲି । ପିନାକପାଣି ପଶୁପତି ମୋର ପୌରୁଷରେ

Digitized by srujanika@gmail.com

ପ୍ରସନ୍ନ ହୋଇ ବହୁ ପ୍ରଶଂସା କରି କହିଲେ—'ଅର୍ଜୁନ ! ମୁଁ ତୁମ ଉପରେ ପ୍ରସନ୍ନ ହୋଇଛି, ବର୍ତ୍ତମାନ ଯେ କୌଣସି ବର ପ୍ରାର୍ଥନା କର । ମୁଁ ବିଶ୍ୱବିଜୟୀ ହେବା ନିମିତ୍ତ ବର ପ୍ରାର୍ଥନା କଲି । ସେ ମୋତେ ପ୍ରାର୍ଥିତ ବର ସହିତ ନିଜର ପାଶୁପତ ଅସ୍ତ୍ର ମଧ୍ୟ ଦାନକଲେ ।' ହେ ରାଜନ୍ ! ଶିବ ପାର୍ବତୀ ଚାଲିଯିବା ପରେ ସେହି ବଣରେ ଆଉ ଏକ ଘଟଣା ଘଟିଲା । ସେହି ଘଟଣାରେ ମୁଁ ଲୋକପାଳ-ମାନଙ୍କଠାରୁ ଅସ୍ତ୍ରଲାଭ କରିଥିଲି ।

ଭଗବାନ୍ ଆଶୁତୋଷଙ୍କ ବର ଲାଭକରି ମୁଁ ମନେ ମନେ ଆନନ୍ଦିତ ହେଲି । ଦେବଗଣଙ୍କ ପକ୍ଷରେ ଦୁର୍ଲଭ ଦର୍ଶନ ସେହି ଶିବପାର୍ବତୀ ମୋତେ ଅନୁଗୃହୀତ କରିଥିଲେ । ମହା ମହା ମୁନି ଋଷି ବେଦମନ୍ତ୍ର ପଢ଼ି ପଞ୍ଚାମୃତଦ୍ୱାରା ଯାହାଙ୍କୁ ଅର୍ଚ୍ଚନା କରନ୍ତି ମୁଁ ଅଜ୍ଞାନବଶତଃ ସେହି ନୀଳକଣ୍ଠଙ୍କ ଉପରେ ପୁଷ୍ପ ବଦଳରେ ବାଣ ବର୍ଷା କରିଥିଲି । ଯାହାଙ୍କ ଚରଣକୁ ସ୍ପର୍ଶ କରିବାପାଇଁ ତପୋଧନମାନେ ଭୟ କରନ୍ତି, ମୁଁ ତାଙ୍କୁ ମୁଷ୍ଟି ପ୍ରହାର କଲି । ଦେବାଧିଦେବ ମହାଦେବଙ୍କ ସ୍ପର୍ଶସୁଖ ଲାଭ କରିଥିବାରୁ ମୋର ଜୀବନ ଧନ୍ୟ ହୋଇଛି । ଏ ସମସ୍ତ କେବଳ ଶ୍ୟାମସୁନ୍ଦରଙ୍କ କୃପାଫଳରେ ସମ୍ଭବ ହୋଇଥିଲା । ତା' ନୋହିଲେ ମୋର କେଉଁ କ୍ଷମତା ଥିଲା, ଯାହା ଦ୍ୱାରା ମୁଁ ପଶୁପତିଙ୍କୁ ସନ୍ତୁଷ୍ଟ କରି ପାଶୁପତ ଅସ୍ତ୍ରଲାଭ କରିବାକୁ ସମର୍ଥ ହୋଇଥାନ୍ତି । ମୁଁ ଏହିସବୁ କଥା ଭାବୁଥିଲାବେଳେ ପଶ୍ଚିମ ଦିଗରୁ ଏକ ଉଜ୍ଜ୍ୱଳ ଆଲୋକ ମୋ ଆଡ଼କୁ ଆସୁଥିବାର ଦେଖିଲି । ସେହି ଆଲୋକ ପୁଞ୍ଜ ଆକାଶରୁ ଧୀରେ ଧୀରେ ମୋ'ରି ଆଡ଼କୁ ଓହ୍ଲାଇ ଆସୁଥିଲା । ମୁଁ ଦେଖିଲି ଭଗବାନ୍ ବରୁଣ ରଥ ଆରୋହଣକରି ଆସୁଛନ୍ତି । ତାଙ୍କ ପଛରେ ଦିବ୍ୟରୂପ ଧାରଣ କରି ଅନ୍ୟାନ୍ୟ ଜଳଚର ଓ ଜୀବ ଅଧିଷ୍ଠାତୃ ଦେବଗଣ ମଧ୍ୟ ତାଙ୍କୁ ଅନୁଗମନ କରୁଥିଲେ । ମୁଁ ଉଠିପଡ଼ି ପଶ୍ଚିମ ଦିଗର ଅଧିପତି ବରୁଣଙ୍କୁ ଅଭିବାଦନପୂର୍ବକ ସ୍ୱାଗତ ଜଣାଇଲି । ମୁଁ ବସିବା ପୂର୍ବରୁ ଦକ୍ଷିଣ ଦିଗରେ ସୂର୍ଯ୍ୟଙ୍କ ଭଳି ପ୍ରକାଶ ଦେଖାଗଲା । ଧ୍ୟାନପୂର୍ବକ ଦେଖି ଜାଣିଲି ସେ ସୂର୍ଯ୍ୟସୁତ ଯମ, ମାନବରୂପ ଧାରଣ କରିଛନ୍ତି । ମୁଁ ଅଞ୍ଜଳିବଦ୍ଧ ହୋଇ ପ୍ରାଣୀମାନଙ୍କର ସଂହାରକର୍ତ୍ତା ଦକ୍ଷିଣ ଦିକ୍‌ପତି ଯମଙ୍କୁ ପ୍ରଣାମ ଜଣାଇଲି । ପ୍ରସନ୍ନ ଚିତ୍ତରେ ସେ ମୋ ଆଗରେ ଉପସ୍ଥିତ ହେଲେ ।

ଏହି ସମୟରେ ପୂର୍ବଦିଗରୁ ଦିବ୍ୟଗନ୍ଧ ବହି ଆସିଲା । ସୁଖଦ ସଙ୍ଗୀତର ମଧୁର ଗୁଞ୍ଜନ ଶୁଣାଗଲା । ସେହିଆଡ଼ୁ ଏକ ଦିବ୍ୟ ବିମାନ ମୋ ଆଡ଼କୁ ଆସୁଥିବାର ଦେଖିଲି । ସେହି ବିମାନରେ ଜନନୀ ଶଚୀଙ୍କ ସହିତ ମୋର ପିତା ଦେବରାଜ ଇନ୍ଦ୍ର ବିରାଜିତ ଥିଲେ । ତାଙ୍କ ଉପରେ ଶତ ଶତ ଶ୍ୱେତଛତ୍ର ଟଣା ଯାଇଥିଲା । ସୁରସୁନ୍ଦରୀଗଣ ଚାମର ଢାଳୁଥିଲେ । ଦେବତା, ଗନ୍ଧର୍ବ ଓ ଋଷିଗଣ ସ୍ତୁତି

Digitized by srujanika@gmail.com

କରୁଥିଲେ । ଅନୁପମ ସୁନ୍ଦରୀ ଅପ୍ସରାମାନେ ତାଙ୍କ ଚାରିପାଖରେ ଶୋଭା ପାଉଥିଲେ । ସେ ସବୁଜ ରଙ୍ଗର ବସ୍ତ୍ର ପରିଧାନ କରିଥିଲେ । ମା’ ଶଚୀଙ୍କର ଶାଢ଼ୀ ଥିଲା ରକ୍ତବର୍ଣ୍ଣର । ଉଭୟେ କଳ୍ପବୃକ୍ଷର ଫୁଲରେ ନିର୍ମିତ ମାଳା ପିନ୍ଧିଥିଲେ । ସେହି ଫୁଲର ସୁଗନ୍ଧରେ ଚାରିଆଡ଼ ମହକ ଯାଉଥିଲା । ଅସଂଖ୍ୟ ଦେବାଙ୍ଗନା ତାଳ ସହିତ କୋକିଳକୂଜିତ କଣ୍ଠରେ ଦିବ୍ୟ ସଙ୍ଗୀତ ଗାଉଥିଲେ । ଏହିପରି ପୂର୍ବ ଦିକ୍‌ପାଳ ପିତା ଇନ୍ଦ୍ରଙ୍କୁ ଆସୁଥିବାର ଦେଖି ମୋର ହୃଦୟ ଆନନ୍ଦରସରେ ପୂରିଗଲା । ମୁଁ ଶ୍ରଦ୍ଧା ଓ ଭକ୍ତିର ସହିତ ଉଭୟଙ୍କୁ ପ୍ରଣାମ କଲି । ଏହାପରେ ଉତ୍ତର ଦିଗର ଅଧିପତି ଦେବଗଣଙ୍କ ଧନପତି କୁବେର ମଧ୍ୟ ସେହି ପର୍ବତ ଶିଖରରେ ମୋ ପାଖେ ଆସି ପହଞ୍ଚିଲେ । ଚାରିଦିଗର ଲୋକପାଳ ଆସି ଆସନ ଗ୍ରହଣ କରିବା ପରେ ଉପଲବ୍ଧ ଉପଚାରଦ୍ୱାରା ସେମାନଙ୍କୁ ପୂଜା କଲି । ମୋ ପୂଜା ଗ୍ରହଣ କରି ପ୍ରଥମେ ଦକ୍ଷିଣ ଦିଗର ଅଧିପତି ଯମ କହିଲେ—ଅର୍ଜୁନ ! ଆମ୍ଭେମାନେ ତୁମ୍ଭର ତପସ୍ୟାରେ ସନ୍ତୁଷ୍ଟ । ଆମ ଚାରିଜଣଙ୍କୁ ତୁମେ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଛ । ଆମ୍ଭମାନଙ୍କର ଏକତ୍ର ଦର୍ଶନ ମର୍ତ୍ତ୍ୟଲୋକ-ମାନଙ୍କ ପକ୍ଷରେ ଦୁର୍ଲଭ । ଆମ୍ଭେମାନେ ତୁମ୍ଭର ସ୍ୱଭାବ, ବ୍ୟବହାର, ବ୍ରତ ଓ ବ୍ରହ୍ମଚର୍ଯ୍ୟଦ୍ୱାରା ପ୍ରସନ୍ନ ହୋଇଛୁ । ତୁମ୍ଭେ ନିଜର ପରାକ୍ରମଦ୍ୱାରା ଭଗବାନ୍ ପଶୁପତିଙ୍କୁ ମଧ୍ୟ ସନ୍ତୁଷ୍ଟ କରିଛ, ଏହା ବଡ଼ ଭାଗ୍ୟର କଥା । ବର୍ତ୍ତମାନ ତୁମକୁ ମୁଁ ମୋର ଏହି ଅମୋଘ ଦଣ୍ଡ ଦେଉଛି, ଗ୍ରହଣ କର । ଏହାଦ୍ୱାରା ତୁମେ ଶତ୍ରୁ-ମାନଙ୍କୁ ସଂହାର କରିପାରିବ । ଭୀଷ୍ମ, ଦ୍ରୋଣ, କର୍ଣ୍ଣ କେହି ତୁମକୁ ଜିଣିପାରିବେ ନାହିଁ । ଯେଉଁ କର୍ଣ୍ଣଙ୍କର ବଳ ପରାକ୍ରମକୁ ମନେପକାଇ ଧର୍ମରାଜ ସର୍ବଦା ଭୟଭୀତ ହୋଇ ରହୁଛନ୍ତି, ସେହି କର୍ଣ୍ଣଙ୍କୁ ତୁମେ ଯୁଦ୍ଧରେ ମାରିଦେଇ ପାରିବ । ଏହାପରେ ବରୁଣ, କୁବେର ଓ ଦେବରାଜ ଯଥାକ୍ରମେ ପାଶ,ପ୍ରସ୍ୱାପନାସ୍ତ୍ର ଓ ଅନ୍ୟାନ୍ୟ ଦିବ୍ୟାସ୍ତ୍ରଦାନର ପ୍ରତିଶ୍ରୁତି ଦେଇଥିଲେ । ଦେବରାଜ କହିଲେ —ପୁତ୍ର ! ତୁମକୁ ମୁଁ ସମସ୍ତ ଅମୋଘ ଅସ୍ତ୍ର ଦେବି; କିନ୍ତୁ ଦେବତାମାନଙ୍କର ଏକ ଦୁଷ୍କର କାର୍ଯ୍ୟ ତୁମକୁ କରିବାକୁ ପଡ଼ିବ । ତୁମକୁ ଏହି ମାନୁଷ ଶରୀରରେ ସ୍ୱର୍ଗକୁ ଡକାଇ ନେବି ଏବଂ କାର୍ଯ୍ୟଶେଷରେ ପୁଣି ଭାଇମାନଙ୍କ ପାଖରେ ଆଣି ଛାଡ଼ିଦେବି । ତୁମେ ସମସ୍ତ ଚିନ୍ତା ତ୍ୟାଗ କରି ସ୍ୱର୍ଗଯାତ୍ରା ନିମିତ୍ତ ପ୍ରସ୍ତୁତ ହୁଅ । ମୁଁ ମାତଳି ହାତରେ ରଥ ପଠାଇବି, ତୁମେ ତା ସହିତ ଚାଲିଆସିବ । ଦେବରାଜ ଇନ୍ଦ୍ର ଏହା କହି ଅନ୍ୟ ଦିକ୍‌ପାଳମାନଙ୍କ ସହିତ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ମୁଁ ଚାରିଆଡ଼କୁ ବିସ୍ମିତ ହୋଇ ଦେଖିବାକୁ ଲାଗିଲି । ସବୁ କଥା ମୋତେ ସ୍ୱପ୍ନଭଳି ଲାଗିଲା । ଲୋକପାଳମାନଙ୍କର କୃପା କେବଳ ବାସୁଦେବଙ୍କ ପରୋକ୍ଷ ଅନୁଗ୍ରହ ହେତୁ ସମ୍ଭବ ହୋଇଥିଲା ।

Digitized by srujanika@gmail.com

ରାଜନ୍ ! ଏକ ସମୟରେ ଭଗବାନ୍ ଭୂତନାଥ ଓ ଲୋକପାଳମାନଙ୍କ ଦୟା ଓ ସେମାନଙ୍କଠାରୁ ଦିବ୍ୟାସ୍ତ୍ର ଲାଭ କରି ମୋର ମନ ବିଶେଷ ଆନନ୍ଦ ଲାଭକଲା । ମୁଁ ସ୍ୱର୍ଗର ସ୍ୱପ୍ନ ଦେଖିବାକୁ ଲାଗିଲି । ସ୍ୱର୍ଗ, ନନ୍ଦନବନ, ସ୍ୱର୍ଗୀୟବିମାନ ବିଷୟରେ ଭାବିବାକୁ ଲାଗିଲି । ଶୁଣିଥିଲି ଦେବତାଙ୍କ ଇଚ୍ଛାନୁସାରେ ବିମାନ ଗମନ କରିଥାଏ । ଦେବରାଜଙ୍କ ପୁର ଅତ୍ୟନ୍ତ ସୁନ୍ଦର । ସେଠାରେ ଐରାବତ ହାତୀ, ସମସ୍ତ ତୀର୍ଥ ଓ ନଦ ନଦୀ ଗୁଡ଼ିକର ଅଧିଷ୍ଠାତୃ ଦେବ ରହନ୍ତି । କେବଳ ସିଦ୍ଧସାଧକ ମୁନି-ଋଷିଗଣ ଏବଂ ଶମ, ଦମ, ସଂଯମାଦି ସଦ୍‌ଗୁଣଶାଳୀ ଲୋକେ ସ୍ୱର୍ଗ ଦର୍ଶନ କରିବାକୁ ସମର୍ଥ । ବଡ଼ ବଡ଼ ରାଜର୍ଷି, ମହର୍ଷି, ଦେବର୍ଷି, ଯଶସ୍ୱୀ, ତପସ୍ୱୀ, ସତ୍ୟ ପୁରୁଷ-ମାନେ ହିଁ ସ୍ୱର୍ଗଦର୍ଶନ କରିପାରନ୍ତି । ତାହା ପୁଣି ଏହି ମାନୁଷ ଶରୀର ଦ୍ୱାରା ନୁହେଁ, ମୃତ୍ୟୁପରେ ଦିବ୍ୟ ରୂପ ଧାରଣ କରି ପ୍ରାଣୀ ସ୍ୱର୍ଗକୁ ଯାଏ; କିନ୍ତୁ ମୁଁ ଏଭଳି କେଉଁ ସୁକୃତ କରିଥିଲି ଯେ ଏହି ଭୌତିକ ଶରୀର ଦ୍ୱାରା ହିଁ ସ୍ୱର୍ଗଯାତ୍ରା କରିପାରିବି । ଯେଉଁମାନେ ସ୍ୱର୍ଗଗାମୀ ହୁଅନ୍ତି, ସେମାନେ ପୁଣି ସେହି ଶରୀର ନେଇ ପୃଥିବୀକୁ ଆସିପାରନ୍ତି ନାହିଁ । ପୁଣ୍ୟ କ୍ଷୀଣ ହେଲାପରେ ସେମାନେ ଅନ୍ୟ ଯୋନିରେ ଜନ୍ମଗ୍ରହଣ କରନ୍ତି; କିନ୍ତୁ ମୋର କେଉଁ ପୁଣ୍ୟର ଫଳ ଥିଲା ? ଶ୍ରୀକୃଷ୍ଣଙ୍କ କୃପାଦ୍ୱାରା ହିଁ ଦେବଦୁର୍ଲଭ ସୁଯୋଗ ମୋତେ ମିଳିଥିଲା । ଯାହା ଉପରେ ଦେବକୀନନ୍ଦନଙ୍କର ଦୟା ଓ ଅନୁଗ୍ରହ ଥିବ, ତା ପକ୍ଷରେ କୌଣସି କାର୍ଯ୍ୟ ଅସମ୍ଭବ ନୁହେଁ । ମୁଁ ଏହା ଭାବୁଥିବାବେଳେ ଏକ ବିରାଟ ଦ୍ୱୀପ ସଦୃଶ ଦିବ୍ୟରଥ ଆକାଶରୁ ତଳକୁ ଆସୁଥିବାର ଦେଖାଗଲା । ରଥର ପ୍ରକାଶ ସୂର୍ଯ୍ୟଙ୍କଠାରୁ ଅଧିକ ଉଜ୍ଜ୍ୱଳ ଦେଖାଯାଉଥିଲା । ସେଥିରେ ଶ୍ରେଷ୍ଠ ଶ୍ରେଷ୍ଠ ଘଣ୍ଟି ବନ୍ଧାଯାଇଥିଲା । ଗୃଳିବା ସମୟରେ ସେଥିରୁ ମଧୁର ଧ୍ୱନି ନିର୍ଗତ ହେଉଥିଲା । ଅନେକ ଅସ୍ତ୍ରଶସ୍ତ୍ର ସେଥିରେ ସଜ୍ଜିତ ହୋଇ ରହିଥିଲା ଏବଂ ଇଚ୍ଛା ଅନୁସାରେ ତାହାର ସଂଖ୍ୟା କମ୍ ବେଶି ହେଉଥିଲା । ରଥଟି ମୋ ଆଗରେ ପଚ୍ଚାଶ ଶୂନ୍ୟରେ ଝୁଲିରହିଲା । ଶତଶତ ଅଶ୍ୱ ସେଥିରେ ଯୋଗ୍ଯ ଯାଇଥିଲେ । ପ୍ରତ୍ୟେକ ପ୍ରତ୍ୟେକ ସହିତ ବନ୍ଧା ହୋଇ ରହିଥିଲେ । ସେହି ରଥର ସାରଥି ତଳକୁ ଆସିବା ମାତ୍ରେ ମୋତେ ପ୍ରଣାମ ଜଣାଇ କହିଲେ—ହେ କୁରୁକୁଳନନ୍ଦନ ! ଆପଣଙ୍କୁ ଦେବରାଜ ଇନ୍ଦ୍ର ଡକାଇଛନ୍ତି । ସେ ସ୍ୱର୍ଗରେ ଆପଣଙ୍କୁ ଦେଖିବାପାଇଁ ଇଚ୍ଛା କରୁଛନ୍ତି । ଆପଣ ସେଠାକୁ ଯାଇ ତାଙ୍କର ବାତ୍ସଲ୍ୟସ୍ନେହ ସ୍ୱୀକାର କରନ୍ତୁ । ଆପଣ ଚରାଚର ସ୍ୱାମୀ ଭଗବାନ ବାସୁଦେବଙ୍କୁ ପ୍ରସନ୍ନ କରିଛନ୍ତି, ସେଥିପାଇଁ ଆପଣଙ୍କୁ ଦୁଷ୍ପ୍ରାପ୍ୟ ସୁ ଅବସର ମିଳିଛି । ଆପଣଙ୍କୁ ସ୍ୱର୍ଗଯାତ୍ରା ନିମିତ୍ତ ପାର୍ଥିବ ଦେହ ତ୍ୟାଗ କରିବାକୁ ପଡ଼ିବନାହିଁ । ଆପଣ ଆଉ କାଳବିଳମ୍ବ ନ କରି ମୋ ସହିତ ଆସନ୍ତୁ ।'

Digitized by srujanika@gmail.com

ବିନୀତଭାବେ ମାତଳିଙ୍କୁ କହିଲି—ହେ ଇନ୍ଦ୍ର ସାରଥି ! ମୁଁ ଆପଣଙ୍କୁ ସ୍ୱାଗତ କରୁଛି । ଆପଣଙ୍କ ବିନୀତ ବଚନକୁ ଅଭିନନ୍ଦନ ଜଣାଉଛି । ହେ ଧର୍ମଜ୍ଞ ! ଏହା ବଡ଼ ସୌଭାଗ୍ୟର କଥା ଯେ ଏହି ଦିବ୍ୟ ରଥ ସହିତ ଆପଣଙ୍କୁ ମୁଁ ଦର୍ଶନ କଲି । ଏହି ରଥରେ ଶତ ଶତ ଅଶ୍ୱମେଧ ଯଜ୍ଞ କରିଥିବା ରାଜର୍ଷିମାନେ ଯାଇପାରନ୍ତି । ଶ୍ରୀକୃଷ୍ଣଙ୍କ ଦୟାରୁ ସେହି ରଥରେ ଆଜି ମୋର ବସିବା ସୌଭାଗ୍ୟ ମିଳିଛି । ଆପଣ ପ୍ରଥମେ ବସନ୍ତୁ, ତା'ପରେ ମୁଁ ବସିବି । ମୋ କଥା ଶୁଣି ମାତଳି ରଥରେ ବସିଲେ ଏବଂ ଘୋଡ଼ାମାନଙ୍କର ଲଗାମ୍ ଠିକ୍ କରି ଧରିଲେ । ମୁଁ ଦଶଦିକ୍‌ପାଳଙ୍କୁ ପ୍ରଣାମ ଜଣାଇ ସେହି ବନବାସୀ ଦେବର୍ଷି, ବ୍ରହ୍ମର୍ଷି ଓ ସିଦ୍ଧମାନଙ୍କର ଅନୁମତି ପ୍ରାର୍ଥନା କଲି । ମୋର ନିକଟବର୍ତ୍ତୀ ପଶୁ, ପକ୍ଷୀ, ବୃକ୍ଷ, ଲତା, ଗୁଳ୍ମଠାରୁ ବିଦାୟ ନେଇ ରଥରେ ବସିଲି । ସେହି ରଥର ସୌନ୍ଦର୍ଯ୍ୟ ଓ ସୁଗନ୍ଧରେ ମୁଁ ଆତ୍ମବିଭୋର ହୋଇପଡ଼ିଲି । ଭଗବାନ୍ ବାସୁଦେବଙ୍କ କୃପାରୁ ମୁଁ ଦେବରାଜଙ୍କ ରଥରେ ବସି ସମସ୍ତ ଶୋକ, ଚିନ୍ତା, ଗ୍ଲାନି, ସନ୍ତାପକୁ ଭୁଲିଗଲି । ଏ ମଧ୍ୟରେ ରଥଯାଇ ସ୍ୱର୍ଗର ନନ୍ଦନବନ ନିକଟରେ ପହଞ୍ଚିଗଲା । ମାତଳି କହିଲେ—ହେ ମହାଭାଗ ! ଏବେ ଆପଣ ସ୍ୱର୍ଗରେ ପହଞ୍ଚି ଗଲେ । ଏହା କହୁଁ କହୁଁ ଆମେ ଅମରାବତୀ ନଗରୀ ପାଖରେ ପହଞ୍ଚିଗଲୁ । ଶହ ଶହ ଦେବ, ଗନ୍ଧର୍ବ ଓ ଅପ୍‌ସରା ମୋତେ ସ୍ୱାଗତ ଜଣାଇଲେ । ସମସ୍ତେ ମୋତେ ଆଦରର ସହିତ ଦେବରାଜଙ୍କ ସଭାକୁ ନେଇଗଲେ । ସେଠାରେ ମୋତେ ସବୁଠାରୁ ଦୁର୍ଲଭ ଯେଉଁ ସୌଭାଗ୍ୟ ମିଳିଥିଲା, ତାହା ବର୍ଣ୍ଣନା କରୁଛି ।

ଦେବରାଜ ଖୁବ୍ ଦୂରରୁ ମୋତେ ଆସୁଥିବାର ଦେଖି ଅତୀବ ଆନନ୍ଦିତ ହେଲେ । ମୁଁ ଦ୍ରୁତବେଗରେ ଆଗେଇ ଯାଇ ତାଙ୍କର ପବିତ୍ର ପାଦଦ୍ୱୟ ମୋ ଶିରରେ ସ୍ଥାପନ କଲି । ଯେଉଁ ପାଦଦ୍ୱୟ ତଳେ ପ୍ରତିଦିନ ଅସଂଖ୍ୟ ଦେବତା ଓ ରାଜର୍ଷିଙ୍କର ଶିର ଲୋଟିଥାଏ, ତ୍ରୈଲୋକ୍ୟବନ୍ଦିତ ସେହି ଚରଣକୁ ମୋ ମସ୍ତକରେ ପୋଛିଦେଲି । ଦେବରାଜ ଅତ୍ୟନ୍ତ ସ୍ନେହରେ ମୋତେ ବଳପୂର୍ବକ ଉଠାଇ ନେଇ ଛାତିରେ ଚାପିଧରି ଆଲିଙ୍ଗନ କଲେ । ମୋ ମୁହଁକୁ କମଳ କୋମଳ କରରେ ପୋଛିଦେଲେ । ମୋର ମୁଣ୍ଡବାଳକୁ ସାଉଁଳେଇ ସିଂହାସନର ଅର୍ଦ୍ଧାଂଶରେ ମୋତେ ବସାଇ ଦେଲେ । ସେତେବେଳେ ଆମ ଦୁଇ ପିତା ପୁତ୍ରଙ୍କୁ ଏକ ଆସନରେ ଦେଖି ସ୍ୱର୍ଗର ସମସ୍ତ ଦେବତା, ଋଷି, ଗନ୍ଧର୍ବ, ରାଜର୍ଷି, ଦେବର୍ଷି ଅତୀବ ଆନନ୍ଦିତ ହୋଇଥିଲେ । ସମସ୍ତେ ଏକ ଦୃଷ୍ଟିରେ ଆମରିଆଡ଼କୁ ଅପଲକ ନୟନରେ ଚାହିଁଥାନ୍ତି । ଏ ପ୍ରକାର ମହାନ୍

Digitized by srujanika@gmail.com

ସୌଭାଗ୍ୟରେ ମୋ ମନରେ ଗର୍ବ ଜାତ ହେଉଥାଏ । ଦେବରାଜଙ୍କ ସହିତ ମର୍ତ୍ତ୍ୟ ଶରୀରରେ ତାଙ୍କ ସିଂହାସନରେ ବସିଥିବାରୁ ମୋତେ ବଡ଼ ଲଜ୍ଜା ଲାଗୁଥାଏ । ସଙ୍କୋଚବଶତଃ ମୁଁ ମୁହଁ ଉଠାଇ ସମସ୍ତଙ୍କୁ ଗୃହିଁପାରୁ ନ ଥିଲି । କ୍ରୀଡାନ୍ତ ହୋଇ ଦେବରାଜଙ୍କ କୋଳରେ ବସିଥିଲି । ସ୍ୱର୍ଗୀୟ ରୂପଲାବଣ୍ୟ ପରିପୂର୍ଣ୍ଣ ଦେବାଙ୍ଗନାମାନେ ମୋ ଉପରେ ଚାମର ଢାଳୁଥିଲେ । ଲକ୍ଷ ଲକ୍ଷ ଅପ୍ସରାଙ୍କ ଦ୍ୱାରା ଦେବରାଜଙ୍କ ସଭା ସହସ୍ର ସହସ୍ର ବିଦ୍ୟୁତ୍‌ରେଖା ଏକତ୍ର ସମବେତ ହେଲା ଭଳି ଦେଖାଯାଉଥିଲା ।

ଦେବରାଜଙ୍କ ଆଦେଶ ଅନୁସାରେ ଅପ୍ସରା ଓ ଗନ୍ଧର୍ବମାନେ ମୋର ପାଦ ଧୋଇଦେଲେ ଓ ଯଥାବିଧି ପୂଜା କଲେ । ସ୍ୱର୍ଗରେ ଏଭଳି ଅଲୌକିକ ସତ୍କାର ଲାଭକରି ମୁଁ ଅସୀମ ଆନନ୍ଦସାଗରରେ ବୁଡ଼ିଗଲି । ମୁଁ ନିଜକୁ ପୁରାପୁରି ଭୁଲି ଯାଇ ନ ଥିଲି । ମୁଁ ବୁଝିପାରୁଥିଲି ଯେ ଏ ପ୍ରକାର ସମ୍ମାନ ଲାଭ କରିବାପାଇଁ ମୋର ଆଦୌ ଯୋଗ୍ୟତା ନାହିଁ । ସବୁ କିଛି ସେହି ଶ୍ୟାମସୁନ୍ଦରଙ୍କ ଦୟାର ଫଳ । ସେ ହିଁ ମୋତେ ଗଧ ଉପରୁ ଓହ୍ଲାଇ ଆଣି ଐରାବତ ଉପରେ ବସାଇ ଦେଇଛନ୍ତି । ତାଙ୍କର ଦୟାରୁ ତୃଣରୁ ସୁମେରୁ ପାଲଟି ଯାଇଛି । ଯାହା ଉପରେ ତାଙ୍କର କୃପା ହୁଏ, ତା' ପକ୍ଷରେ ସ୍ୱର୍ଗଲୋକ କାହିଁ ବ୍ରହ୍ମଲୋକ ମଧ୍ୟ ଅତି ତୁଚ୍ଛ ମନେହୁଏ । ଲୋକ ପିତାମହ ବ୍ରହ୍ମା ମଧ୍ୟ ତାଙ୍କର କୃପା ଲାଭ ନିମିତ୍ତ ସର୍ବଦା ଉତ୍ସୁକ ରହନ୍ତି ।

ରାଜନ୍ ! ଯେ ଆମକୁ ମନୁଷ୍ୟରୁ ଦେବତା ସ୍ତରକୁ ନେଇଛନ୍ତି । ସେ ହିଁ ଦୁର୍ବଳ ବ୍ୟକ୍ତିକୁ ସବଳ କରିଥାନ୍ତି । ରାଜ୍ୟଭ୍ରଷ୍ଟ ହୋଇଥିଲେ ବି ସେ ଚକ୍ରବର୍ତ୍ତୀ ପଦ ପ୍ରଦାନ କରିଛନ୍ତି । ଅସହାୟ ଅବସ୍ଥାରେ ଯେ ଆମକୁ ସମସ୍ତ ପ୍ରକାର ସାହାଯ୍ୟ ଦେଇଥିଲେ, ନିଜର ବଡ଼ଭାଇ ବଳରାମ ମନା କରିଥିଲେ ମଧ୍ୟ ଯେ କୌରବମାନଙ୍କୁ ତ୍ୟାଗ କରି ଆମର ପକ୍ଷ ସମର୍ଥନ କରିଥିଲେ, ନିଃଶସ୍ତ୍ର ହୋଇଥିଲେ ମଧ୍ୟ ଯେ ମୋତେ ନିମିତ୍ତଭାବେ ରଖି ଆମର ସମସ୍ତ ଶତ୍ରୁଙ୍କୁ ସଂହାର କରିଥିଲେ, ସେ ଆଜି ମର୍ତ୍ତ୍ୟ ଦଣ୍ଡରେ ଛାଡ଼ିଦେଇ କୁଆଡ଼େ ବିଲୀନ ହୋଇଗଲେ । ପ୍ରଭୋ ! ଏବେ ଆଉ ଏ ସଂସାରରେ କ୍ଷଣେମାତ୍ର ରହିବା ସମ୍ଭବ ନୁହେଁ । ଦେବତାମାନଙ୍କର ଅଜେୟ ନିବାତ କବଚ ଦୈତ୍ୟଙ୍କୁ ମୁଁ ସଂହାର କରିପାରିଥିଲି । ସେଥିପାଇଁ ସ୍ୱର୍ଗ, ମର୍ତ୍ତ୍ୟ ସର୍ବତ୍ର ମୋତେ ଅଜସ୍ର ପ୍ରଶଂସା କରାଯାଇଥିଲା । ଶ୍ରୀକୃଷ୍ଣବିହୀନ ହୋଇଥିବାରୁ ମୋତେ ଦଣ୍ଡିଆ ଶବର ପରାସ୍ତ କରିଥିଲା । ସେ ସବୁ କଥା କେବେହେଲେ ଭୁଲି ହେବ ନାହିଁ । ସେଥିପାଇଁ

Digitized by srujanika@gmail.com

ଆଉ ଏ ସଂସାରରେ କିଛିହେଲେ ଆକର୍ଷକ ବସ୍ତୁ ନାହିଁ । ଶ୍ରୀକୃଷ୍ଣ ଚାଲିଯାଇଛନ୍ତି । ଆମେ ମଧ୍ୟ ଯଥାଶୀଘ୍ର ତାଙ୍କର ମାର୍ଗ ଅନୁସରଣ କରିବା ଉଚିତ । ଏହା କହୁଁ କହୁଁ ଅର୍ଜୁନ ମୂର୍ଚ୍ଛିତ ହୋଇପଡ଼ିଲେ ।

## ଛପ୍‌ପୟ

କରତ ତପସ୍ୟା ଭୀଲ ବେଶ ଧରି ଶିବ ତହଁ ଆୟେ ।
ଜାନ କଙ୍ଗଲୀ କାତ, ଲଡ଼ୟୋ ହରି ଅତ ହରଷାୟେ ॥
ଭୟୋ ଯୁଦ୍ଧ ଘନ ଘୋର, ଭଈ ନହିଁ କୁଣ୍ଠିତ ମୋ ମତ ।
କୃଷ୍ଣ କୃପାତେ ଉମା ସହିତ, ଶିବ ତୁଷ୍ଟ ଭୟେ ଅତ ॥
ଜିନକୀ କୃପା ପ୍ରସାଦ ତେଁ, ନର ତନୁ ତେଁ ସୁର ପୁର
ଗୟୋ ॥
ଅର୍ଦ୍ଧ ସିଂହାସନ ହରି ଦୟୋ, ଅବ ଉନ ବିନୁ ନିରବଲ
ଭୟୋ ॥



# ନିବାତ କବଚ ବଧ ଓ

## ଶ୍ରୀକୃଷ୍ଣଙ୍କ କୃପା

ତତ୍ରୈବ ମେ ବିହରତୋ ଭୁଜଦଣ୍ଡଯୁଗ୍ମଂ ।
ଗାଣ୍ଡୀବଲକ୍ଷଣ ମରାତିବଧାୟ ଦେବାଃ ।
ସେନ୍ଦ୍ରାଃ ଶ୍ରିତା ଯଦନୁଭାବିତମାଜମୀଢ଼ ।
ତେନାହମଦ୍ୟ ମୁଷିତଃ ପୁରୁଷେଣ ଭୂମ୍ନା ॥

( ଭାଗବତ ୧ । ୧୫ । ୧୩ । )

### ଛପ୍‌ପୟ

କଛୁକ କାଲ ସୁଖ ସହିତ ସ୍ୱର୍ଗ ସୁଖ ଭୋଗେ ଭାରୀ ।
ଦିବ୍ୟ ଅସ୍ତ୍ର ସବ ସୀଖି ଚଲନକୀ କରୀ ତୟ୍ୟାରୀ ॥
ଦେବରାଜ ସବ ଦେବ କହେ ଇକ କାରଜ କୀଜେ ॥
ଅସ୍ତ୍ରଶସ୍ତ୍ର ତୋ ଲୟେ ଦକ୍ଷିଣା ଗୁରୁକୀ ଦୀଜେ ॥
ହୈ ନିବାତ କବଚାଦି ଅତି, ପ୍ରବଲ ଦୈତ୍ୟ ତିନତେଁ ଲରୋ ॥
ମାରୋ ରଣମେଁ ସବନି କୂଁ, ନିଷ୍କଣ୍ଟକ ସୁରପୁର କରୋ ॥

ଦେବ, ଦାନବ, ଯକ୍ଷ ରାକ୍ଷସାଦିଙ୍କୁ ଯେବେ ଜୟ କରିଥିଲି, ସେ ସୁଦିନ ଆଜି ଆଉ ନାହିଁ । ଅର୍ଜୁନ ଅତୀତର ସେହି ସ୍ମୃତି ରୋମନ୍ଥନ କରି କାନ୍ଦି କାନ୍ଦି, ଧର୍ମରାଜ କିଛି ପଚାରିବା ପୂର୍ବରୁ ପୁଣି କହିବାକୁ ଆରମ୍ଭ କଲେ—ରାଜନ୍ ! ଏବେ ଆମର କହିବା ଓ ଶୁଣିବା ଭଳି ଆଉ କୌଣସି କଥା ନାହିଁ । ସ୍ୱର୍ଗର କଥା ମନେପଡ଼ିବା ମାତ୍ରେ ମୋର ବିସ୍ମୟର ସୀମା ରହୁ ନାହିଁ । ଆଜି ସେ ସବୁ କଥା ବହୁପୂର୍ବରୁ ଦେଖିଥିବା ସ୍ୱପ୍ନ ବା ପୂର୍ବଜନ୍ମ ଘଟିତ ଘଟଣା ଭଳି ପ୍ରତୀତ

Digitized by srujanika@gmail.com

ହୋଇଛି । ମୁଁ ପାଞ୍ଚ ବର୍ଷ କାଳ ସ୍ୱର୍ଗରେ ଥିଲି । ସେଠାରେ ମୁଁ ଶ୍ରୀକୃଷ୍ଣଙ୍କ କୃପାରୁ ଦେବଗଣଙ୍କ ଅସାଧ୍ୟ ବହୁ କଠିନ କାର୍ଯ୍ୟ କରିପାରିଥିଲି ।

ସମସ୍ତ ପ୍ରକାର ଦିବ୍ୟାସ୍ତ୍ରର ଆଦାନ, ସନ୍ଧାନ, ବିସର୍ଗ ଓ ସଂହାରାଦି ପ୍ରକ୍ରିୟା ଶିକ୍ଷାକରି ସାରିବାପରେ ସେ ସବୁର ପ୍ରୟୋଗରେ ନିପୁଣତା ଲାଭକରି ମୁଁ ଆପଣଙ୍କ ଚରଣ ଦର୍ଶନ ନିମିତ୍ତ ଦେବରାଜଙ୍କଠାରେ ମୋର ଇଚ୍ଛା ପ୍ରକାଶ କଲି । ହେ ମହାରାଜ ! ସ୍ୱର୍ଗରେ ବାସ କରୁଥିଲେ ମଧ୍ୟ ମୋର ମନ ଶାନ୍ତିରେ ରହୁ ନ ଥିଲା । ଜୁଆଖେଳର ଗୋଟିଗୋଟି କଥା ବାରମ୍ବାର ମୋ ମନରେ ପଡ଼ିଯାଉଥିଲା । ପରିପୂର୍ଣ୍ଣ ସଭାରେ ଦ୍ରୌପଦୀଙ୍କର ଅପମାନ କଥା ମନେ ପଡ଼ିଗଲା ମାତ୍ରେ ମୋର ଶରୀର କ୍ରୋଧରେ କମ୍ପି ଉଠୁଥିଲା, ଇଚ୍ଛା ହେଉଥିଲା ସିଧାସଳଖ କୌରବମାନଙ୍କ ପାଖକୁ ଯାଇ ସେହି ଦିବ୍ୟାସ୍ତ୍ର ବଳରେ ସେମାନଙ୍କୁ ଭସ୍ମ କରିଦେବି । ପୁଣି ମୋ ମନରେ ଆପଣଙ୍କ ପ୍ରତିଜ୍ଞା କଥା ପଡ଼ିଯାଉଥିଲା । ଆପଣ ଧର୍ମାତ୍ମା, ଧର୍ମବିରୁଦ୍ଧ କୌଣସି କାର୍ଯ୍ୟ ଆପଣ କରିବେନାହିଁ । ବନବାସର ସମୟ ପୂର୍ବରୁ ଆପଣ କେବେହେଲେ ଫେରିଯିବେ ନାହିଁ । ଯଦି ସମୟର ଅବଧି ପୂର୍ବରୁ ମୁଁ କୌରବ-ମାନଙ୍କୁ ମାରି ପକାଇବି, ତେବେ ଆପଣ ନିଶ୍ଚୟ ମୋତେ, ଧର୍ମହୀନ ଓ କପଟାଚାରୀ ଭାବି ତ୍ୟାଗ କରିବେ । ସେହି ଭୟରେ ମୁଁ ମନର କ୍ରୋଧକୁ ମନରେ ମାରି ସମୟର ପ୍ରତୀକ୍ଷା କରୁଥିଲି । ଆପଣଙ୍କ ବିନା ସ୍ୱର୍ଗରେ ମଧ୍ୟ କିଛି ଭଲ ଲାଗୁ ନ ଥିଲା । ଆପଣ ବଣରେ ରହି କଷ୍ଟ ପାଉଛନ୍ତି, ଅଥଚ ମୁଁ ସ୍ୱର୍ଗରେ ରହି ସୁଖଭୋଗ କରିବି । ସେ ପ୍ରକାର ସୁଖଭୋଗକୁ ଧିକ୍ । ଏ ଅବସ୍ଥାରେ ଇନ୍ଦ୍ରଲୋକ କଥା ଛାଡ଼ନ୍ତୁ ବ୍ରହ୍ମଲୋକ ମଧ୍ୟ ସୁଖପ୍ରଦ ହୋଇ ନ ଥାନ୍ତା; କିନ୍ତୁ କାର୍ଯ୍ୟବଶତଃ ଆପଣଙ୍କ ଆଦେଶ ପାଳନପାଇଁ ମୋତେ ରହିବାକୁ ପଡ଼ିଲା । ଦେବରାଜଙ୍କ ଆଗ୍ରହରୁ ଅନ୍ୟମନସ୍କ ଭାବେ ମୁଁ ସ୍ୱର୍ଗସୁଖ ଲାଭ କରୁଥିଲି । ସମସ୍ତ ପ୍ରକାର ଅସ୍ତ୍ରଶସ୍ତ୍ରର ପ୍ରୟୋଗରେ ଭଲଭାବେ ପାରଙ୍ଗମ ହେବାପରେ ଦିନେ ଦେବରାଜ ଇନ୍ଦ୍ର ମୋତେ କହିଲେ—ବତ୍ସ, ଅର୍ଜୁନ ! ମୋର ବିଶ୍ୱାସ ବର୍ତ୍ତମାନ ତୁମେ ତ୍ରୈଲୋକ୍ୟ ବିଜୟୀ ହୋଇପାରିବ । ତ୍ରିଲୋକରେ କେହି ତୁମକୁ ଏବେ ଆଉ ପରାଜିତ କରିପାରିବେ ନାହିଁ ! ତୁମେ ମନୋଯୋଗ ସହକାରେ ସମସ୍ତ ଦିବ୍ୟାସ୍ତ୍ରର ପ୍ରୟୋଗ ଶିକ୍ଷା ଶେଷ କରିଛ । ତୁମର ଧାରଣା ଶକ୍ତି ଓ ହସ୍ତକୌଶଳ ଦେଖି ମୁଁ ବିଶେଷ ପ୍ରୀତ ହୋଇଛି । ବର୍ତ୍ତମାନ ତୁମକୁ ମୋର କିଛି କାମ କରିବାକୁ ପଡ଼ିବ । ଶିକ୍ଷା କରିଥିବା ବିଦ୍ୟା ନିମିତ୍ତ ବର୍ତ୍ତମାନ ଗୁରୁଦକ୍ଷିଣା ପରିଶୋଧ କରିବାକୁ ପଡ଼ିବ ।

'ଆପଣଙ୍କ ଆଦେଶ ଯଥାଶକ୍ତି ପାଳନ କରିବି' ବୋଲି କହିବା ପରେ ଦେବରାଜ ଇନ୍ଦ୍ର ପ୍ରସନ୍ନ ହୋଇ କହିଲେ—'ଅର୍ଜୁନ ! ତୁମର ବାହୁବଳ ଉପରେ ଆମ ସମସ୍ତଙ୍କର ଭରସା ଅଛି । ଯେଉଁ କାମକୁ ଦେବତାମାନଙ୍କ ସହିତ ମିଶି

Digitized by srujanika@gmail.com

ମୁଁ କରି ପାରିନାହିଁ । ସେହି କାମ ତୁମକୁ କରିବାକୁ ପଡ଼ିବ । ମୋର ନିବାତ କବଚ ନାମରେ ଏକ ରାକ୍ଷସ ଶତ୍ରୁ ଅଛି । ସେ ସମୁଦ୍ର ତଳେ ପାତାଳରେ ରହେ । ତା ପାଖରେ ପ୍ରାୟ ତିନିକୋଟି ସୈନ୍ୟ ଅଛନ୍ତି । ଦେବ, ଦାନବ, ଗନ୍ଧର୍ବ, ଯକ୍ଷାଦି କେହି ତାକୁ ମାରି ପାରୁ ନାହାନ୍ତି । ତୁମେ ଯାଇ ତାକୁ ସଂହାର କର ଓ ଦେବତାମାନଙ୍କୁ ସୁଖୀ କର ।'

ଦେବରାଜଙ୍କ ମୁହଁରୁ ନିଜର ପ୍ରଶଂସା ଶୁଣି ମୋ ମନରେ ଗର୍ବ ଜାତ ହେଲା । ମୁଁ ଚିନ୍ତା କଲି—ମୁଁ କେତେ ବଳବାନ୍ । ଦେବରାଜ ମୋ ବାହୁବଳ ଉପରେ ଆସ୍ଥା ରଖିଛନ୍ତି । ଦେବଗଣଙ୍କଦ୍ୱାରା ଅବଧ୍ୟ ନିବାତ କବଚକୁ ମାରିବା ପାଇଁ ମୋତେ ପଠାଉଛନ୍ତି । ସେତେବେଳେ ମୁଁ ଭୁଲିଯାଇଥିଲି ଯେ ଏ ବଳ ମୋର ନୁହେଁ, ଏହା ଶ୍ୟାମସୁନ୍ଦରଙ୍କର । ନିବାତ କବଚ ଓ ହିରଣ୍ୟପୁରବାସୀ ଦୈତ୍ୟମାନଙ୍କୁ ମାରିବାପାଇଁ ମୋର ବା କେତେ ବଳ । ସେହି ସର୍ବଶକ୍ତିମାନ୍ ଶ୍ରୀକୃଷ୍ଣଙ୍କ ପ୍ରଦତ୍ତ ବଳଦ୍ୱାରା ସେ ମରିବ । ଦେବରାଜଙ୍କ ଆଦେଶ ଅନୁସାରେ ମାତଲି ସହିତ ରଥ ନେଇ ମୁଁ ଦୈତ୍ୟକୁ ମାରିବାପାଇଁ ସ୍ୱର୍ଗରୁ ପ୍ରସ୍ଥାନ କଲି । ସ୍ୱର୍ଗବାସୀ ସମସ୍ତେ ଆନନ୍ଦ ହୃଦୟରେ ମୋତେ ବିଦାୟ ଦେଇଥିଲେ । ଦେବତା ଓ ଋଷିଗଣ ମୋ ବାହୁବଳର ଭୂରି ଭୂରି ପ୍ରଶଂସା କରୁଥିଲେ । ଗନ୍ଧର୍ବମାନେ ଦିବ୍ୟସଙ୍ଗୀତ ଗାନ କରୁଥିଲେ ଏବଂ ଅପ୍ସରାମାନେ ନନ୍ଦନବନର ଦିବ୍ୟପୁଷ୍ପ ମୋ ଉପରେ ବର୍ଷା କରୁଥିଲେ । ସମସ୍ତଙ୍କର ଯଥୋଚିତ ସତ୍କାର ଲାଭ କରି ଦେବରାଜଙ୍କ ଦିବ୍ୟରଥରେ ବସି ଜଳଜନ୍ତୁ ପୂର୍ଣ୍ଣ ଊର୍ମି ବହୁଳ ସାଗର ମଧ୍ୟରେ ଯାତ୍ରା ଆରମ୍ଭ କଲି । କ୍ରମେ କ୍ରମେ ମାତଲି ରଥ ନେଇ ନିବାତ କବଚର ଦିବ୍ୟପୁରୀ ସମ୍ମୁଖରେ ପହଞ୍ଚିଲା । ସେଠାରେ ସ୍ୱର୍ଗଠାରୁ ଅଧିକ ସୁଖସାମଗ୍ରୀ ପୂରି ରହିଥିଲା । ମାତଲିଠାରୁ ଜାଣିଲି ପୂର୍ବେ ସେହିପୁର ଦେବତାମାନଙ୍କ ଅଧୀନରେ ଥିଲା; କିନ୍ତୁ ପ୍ରବଳ ପରାକ୍ରମୀ ଦୈତ୍ୟ ନିବାତ କବଚ ଦେବତାମାନଙ୍କୁ ବିତାଡ଼ିତ କରି ଏହାକୁ ଅଧିକାର କରିନେଲା । ବ୍ରହ୍ମାଙ୍କ ବର ଲାଭକରି ସେ ଦେବତା ମାନଙ୍କର ଅବଧ୍ୟ ହୋଇ ରହିଛି ।

ଦୈତ୍ୟ ନିବାତ କବଚ ମୋତେ ଦେଖିବା ମାତ୍ରେ ଶୂଳ, ପଟ୍ଟିଶ, ଖଡ୍‌ଗ, ତୋମର ଭୁଶୁଣ୍ଡି ଆଦି ନାନା ଅସ୍ତ୍ରଶସ୍ତ୍ର ନେଇ ମୋ ସହିତ ଯୁଦ୍ଧ କରିବାକୁ ଆଗେଇ ଆସିଲା । ମୁଁ ମଧ୍ୟ ହଜାରେ ବାଣ ମାରି ତାକୁ ଖଣ୍ଡିଆଖାବରା କରି ପକାଇଲି । ଅନେକ ସୈନ୍ୟ ତାର ମୋ ବାଣରେ ମୃତ୍ୟୁବରଣ କଲେ । ଅନେକ ଜୀବନ ନେଇ ପଳାଇଗଲେ; କିନ୍ତୁ କିଛି ସମୟପରେ ପୁଣି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ସେମାନେ ଲଢ଼େଇ ପାଇଁ ଆଗେଇ ଆସିଲେ । ସେମାନେ ଆସୁରୀ ମାୟା ପ୍ରୟୋଗ କରି କେତେବେଳେ ଭୀଷଣ ବର୍ଷା, ପଥର ବୃଷ୍ଟି ତ ପୁଣି

Digitized by srujanika@gmail.com

କେତେବେଳେ ଅଗ୍ନି ବୃଷ୍ଟି ବା ଘୋର ଅନ୍ଧକାର ସୃଷ୍ଟି କରୁଥିଲେ । ଅନ୍ଧକାର ସମୟରେ ମାତଲି ରଥ ଚଳାଇବା ପାଇଁ ଅସମର୍ଥ ହୋଇ କହିଲେ—'ଅର୍ଜୁନ ! ଦୈତ୍ୟ ବଡ଼ ପ୍ରବଳ । ଏ ଭଳି ଘୋର ଯୁଦ୍ଧ ମୁଁ କେବେ ଦେଖିନାହିଁ । ତୁମେ ବଜ୍ରାସ୍ତ୍ରଦ୍ୱାରା ଏହି ଆସୁରୀ ମାୟା ଦୂର କର ।'

ମାତଲିଙ୍କୁ ଭୟଭୀତ ହେବାର ଦେଖି ମୋର ହୃଦୟ ମଧ୍ୟ କମ୍ପିବାକୁ ଲାଗିଲା । ମୁଁ ହଠାତ୍ କିଛି ଦେଖିପାରିଲି ନାହିଁ । ମୋର ଅସ୍ତ୍ରକ୍ଷେପଣ ବନ୍ଦ ହୋଇଗଲା । ସେତେବେଳେ ମୁଁ ଶ୍ୟାମସୁନ୍ଦରଙ୍କୁ ସ୍ମରଣ କଲି । ମନେ ମନେ ତାଙ୍କୁ ସ୍ତୁତି କଲି । ସ୍ମରଣମାତ୍ରେ ମୋର ବୁଦ୍ଧି ଉଦୟ ହେଲା । ବଜ୍ରାସ୍ତ୍ରଦ୍ୱାରା ଦୈତ୍ୟର ସମସ୍ତ ମାୟା ଦୂର କଲି । ଘନ ଅନ୍ଧାର ନିମିଷକ ମଧ୍ୟରେ କୁଆଡ଼େ ଉଭେଇ ଗଲା । ମାତଲି ମଧ୍ୟ ସାବଧାନହୋଇ ଘୋଡ଼ାଙ୍କ ଲଗାମ କଷି ଧରିଲେ । ଏହାପରେ ଶବ୍ଦଭେଦୀ ବାଣଦ୍ୱାରା ଲୁଚି ରହିଥିବା ଦୈତ୍ୟମାନଙ୍କୁ ମାରିବାକୁ ଲାଗିଲି । ଅନେକ ରାକ୍ଷସ ସୈନ୍ୟ ନିହତ ହେଲେ । ଦୈତ୍ୟ ନଗରରେ ହାହାକାର ପଡ଼ିଗଲା । ମାତଲି ମୋର ବଳ ଓ ପରାକ୍ରମ ଦେଖି ପ୍ରଶଂସା କରିବାକୁ ଲାଗିଲେ । ମୋର ବଳ ଇନ୍ଦ୍ରଙ୍କଠାରୁ ମଧ୍ୟ ଅଧିକ ବୋଲି ମାତଲି କହିଲେ; କିନ୍ତୁ ସେହି ଶକ୍ତି ଯେ ମୋର ନୁହେଁ, ସେ ଜାଣିବେ କିପରି । ପ୍ରଭୁ ଶ୍ୟାମସୁନ୍ଦର ହିଁ ମୋତେ ନିମିତ୍ତ କରି କାଳପାଶରେ ଆବଦ୍ଧ ଥିବା ଦୈତ୍ୟମାନଙ୍କୁ ସଂହାର କରୁଥାନ୍ତି । ତାଙ୍କ ଶକ୍ତିଦ୍ୱାରା ହିଁ ମୁଁ ଅସ୍ତ୍ରଶସ୍ତ୍ରର ଯଥାବିଧି ବ୍ୟବହାର କରୁଥିଲି । ମୋର ଯଦି ପ୍ରକୃତରେ ବଳ ଥାଆନ୍ତା, ତେବେ ମୁଁ ବାଣ୍ଡିଆଁ ଶବର-ଦ୍ୱାରା ଆଜି ପରାସ୍ତ ହୋଇ ନ ଥାନ୍ତି । ଯେଉଁ ବାଣରେ ନିବାତ କବଚ ଓ ହିରଣ୍ୟପୁରବାସୀ ଦୈତ୍ୟମାନେ ମୃତ୍ୟୁବରଣ କରିଥିଲେ, ସେହି ବାଣ ଏବେ ସାଧାରଣ ମାନବଙ୍କୁ ମାରିବା ନିମିତ୍ତ କୁଣ୍ଠିତ କାହିଁକି ହେଲା ?

ରାଜନ୍ ! ନିବାତ କବଚ ସହିତ ସମସ୍ତଙ୍କୁ ସଂହାର କରି, ବିଜୟ ଶଙ୍ଖ ବଜାଇ ଅତି ଆନନ୍ଦରେ ମୁଁ ପାତାଳପୁରୀରୁ ବାହାରକୁ ଆସିଲି । ଫେରିବା ବାଟରେ ଶୂନ୍ୟରେ ଏକ ନଗର ଝୁଲି ରହିଥିବାର ଦେଖିଲି । ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିବାରୁ ମାତଲିଙ୍କୁ ପଚାରିଲି—'ମହାଭାଗ ! ତୁମେ ଦେବରାଜଙ୍କ ଶ୍ରେଷ୍ଠ ସାରଥି ! ତୁମେ ସର୍ବଜ୍ଞ । ଦୟାକରି ମୋତେ ଏହି ଆଶ୍ଚର୍ଯ୍ୟ ନଗରରେ ପରିଚୟ ଦିଅ । ଏହା କାହାର । ଏହା ଏତେ ଦେଦୀପ୍ୟମାନ ଦେଖାଯାଉଛି କିପରି ଏବଂ ବିନା 'ସହାୟତାରେ 'କାହାର ଶକ୍ତିବଳରେ ଆକାଶରେ ଝୁଲି ରହିପାରିଛି ?' ମାତଲି ମୋ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ—ହେ ପାଣ୍ଡୁନନ୍ଦନ ! ଏହା ପୌଲୋମ ଓ କାଳକେୟ ନାମକ ଦୈତ୍ୟଙ୍କ ନଗର । ଏହାର ନାମ

Digitized by srujanika@gmail.com

ହିରଣ୍ୟପୁର । ଏହି ଦୁଇ ଅସୁରଙ୍କ ଜନନୀ ପୁଲୋମୀ ଓ କାଳକା ହଜାରେ ବର୍ଷ କାଳ ତପସ୍ୟା କରିଥିଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଲୋକପିତା ବ୍ରହ୍ମା ସେମାନଙ୍କୁ ବର ପ୍ରଦାନ କରିଥିଲେ । ସେହି ବର ପ୍ରଭାବରେ ରାକ୍ଷସ ଦୁହେଁ ଦେବତା, ରାକ୍ଷସ, ଯକ୍ଷ, ଗନ୍ଧର୍ବ ପ୍ରଭୃତିଙ୍କଦ୍ୱାରା ମୃତ୍ୟୁ ବରଣ କରିବେ ନାହିଁ । ବିମାନ ସଦୃଶ ସୁବର୍ଣ୍ଣମୟ ପୁରଟି ଆକାଶର ଯେ କୌଣସି ସ୍ଥାନକୁ ଯାଇପାରିବ ଏବଂ ଯେ କୌଣସି ସ୍ଥାନରେ ଝୁଲି ରହିପାରିବ । ବ୍ରହ୍ମାଙ୍କ ବରଦାନ ଫଳରେ ଏହି ନଗରଟି ବହୁକାଳ ହେଲା ଏହିପରି ଝୁଲି ରହିଛି । ଏହି ପୁରରେ ରହୁଥିବା ରାକ୍ଷସମାନେ ଖୁବ୍ ବଳଶାଳୀ । ସେମାନେ ଦେବତାମାନଙ୍କ ପ୍ରତି ସର୍ବଦା ଶତ୍ରୁତା ଆଚରଣ କରୁଛନ୍ତି । ସେମାନଙ୍କ ଉତ୍ପୀଡ଼ନରେ ଦେବରାଜ ଅସ୍ଥିର ହୋଇ ପଡ଼ୁଛନ୍ତି । ଦେବଗଣ ତ ସେମାନଙ୍କୁ ମାରିପାରିବେ ନାହିଁ । ସେଥିପାଇଁ ସେମାନେ ନିର୍ଭୟରେ ନାନାଦି ଉପଦ୍ରବ କରୁଛନ୍ତି ।'

ମାତଲିଙ୍କ କଥା ଶୁଣି ମୋ ରଥ ସେହି ପୁରକୁ ନେଇଯିବା ନିମିତ୍ତ କହିଲି । ମାତଲି କହିଲେ—'ଆପଣ ହିଁ ସେମାନଙ୍କୁ ସଂହାର କରିପାରିବେ । ଥରେ ମୁଁ ବ୍ରହ୍ମାଙ୍କଠାରୁ ଶୁଣିଛି ଯେ, ଏମାନେ ଦେବତାଙ୍କର ଅବଧ୍ୟ ହେଲେ ବି ଜଣେ ମାନବ ହାତରେ ମୃତ୍ୟୁବରଣ କରିବେ । ଆପଣ ସେମାନଙ୍କୁ ହତ୍ୟା କରି ଦେବତାମାନଙ୍କ ଦୁଃଖ ଦୂରକରିବା ଉଚିତ । ଏହାପରେ ସେହି ପୁରରେ ପ୍ରବେଶ ମାତ୍ରେ ଘୋର ଯୁଦ୍ଧ ଆରମ୍ଭ ହୋଇଗଲା । ଦୈତ୍ୟମାନେ ଅସ୍ତ୍ରଶସ୍ତ୍ର ଧରି ମୋ ଆଡ଼କୁ ମାଡ଼ି ଆସିଲେ । ମୁଁ ଦିବ୍ୟାସ୍ତ୍ର ସାହାଯ୍ୟରେ ସମସ୍ତଙ୍କୁ ସଂହାର କଲି । ଅନେକ ସେହି ନଗର ମଧ୍ୟରେ ଲୁଚି ରହିଲେ । ମୁଁ ବାଣ ନିକ୍ଷେପ କରି ସେହି ସୁବର୍ଣ୍ଣ ନଗରକୁ ଚୂରମାର କରି ପୃଥିବୀ ଉପରେ ପକାଇଦେଲି । କେତେକ ଦୈତ୍ୟ ରଥର ଘୋଡ଼ାଙ୍କ ପାଦ ଧରି ଝୁଲିକରି ରହିବାରୁ ସେମାନଙ୍କୁ ବଜ୍ରାସ୍ତ୍ରଦ୍ୱାରା ମାରି ତଳକୁ ଖସାଇଦେଲି ।'

ଭଗବାନ୍ ବାସୁଦେବଙ୍କ କୃପା ଫଳରେ ଦେବତାମାନଙ୍କର ଅଜେୟ ଦୈତ୍ୟ ଦାନବଙ୍କ ସଂହାର କରି ଦେବରାଜ ଇନ୍ଦ୍ରଙ୍କ ଅମରାବତୀ ନଗରୀକୁ ଫେରି-ଆସିଲି । ସେଠାରେ ସମସ୍ତେ ମୋତେ ସ୍ୱାଗତ କଲେ । ଯାହାର କୃପା ହେତୁ ନିର୍ଭୟରେ ମୁଁ ଦୈତ୍ୟମାନଙ୍କ ସହିତ ଯୁଦ୍ଧ କରିପାରିଥିଲି, ସେ ଆଉ ଆଜି ଏ ପୃଥିବୀରେ ନାହାନ୍ତି । ସେ ମୋ ପ୍ରତି କପଟାଚରଣ କରି ବୈକୁଣ୍ଠକୁ ଚାଲିଗଲେ । ରାଜନ୍ ! ବର୍ତ୍ତମାନ ଆମର ଆଉ ଆଶ୍ରୟ ନାହିଁ । ଆମ୍ଭେମାନେ ହୀନବୀର୍ଯ୍ୟ ଓ ପରାକ୍ରମଶୂନ୍ୟ ହୋଇଯାଇଛୁ । ଏବେ ଆମର ଜୀବନ ରଖିବା

Digitized by srujanika@gmail.com

ନିରର୍ଥକ । ଯେ କୌଣସି ସାଧାରଣଲୋକ ବର୍ତ୍ତମାନ ଆମକୁ ହସି ପାରିବ । ନୀଚତମ ବ୍ୟକ୍ତି ମଧ୍ୟ ଆମକୁ ନୀଚଭାବେ ଦେଖିବ । ଏହା କହୁଁ କହୁଁ ଅର୍ଜୁନଙ୍କ କଣ୍ଠରୋଧ ହୋଇଆସିଲା । ଆଉ ଅଧିକ କିଛି ସେ କହିପାରିଲେ ନାହିଁ ।

### ଛପ୍‌ପୟ

ମାର୍ ସକେଂ ନହିଁ ଦେବ ତିହ୍ନୀ ତେ ମୈଁ ଜା କୂଟ୍‌ୟୋ ।
କୃଷ୍ଣ କୃପା ତେଁ କଛୁ କଠିନ କାରଜ ନହିଁ ସୂଝ୍‌ୟୋ ।।
ଦିବ୍ୟ ଅସ୍ତ୍ର ତେ ମାରି ଶତ୍ରୁ ସବହୀ ସଂହାରେ ।
ମାୟା ଛଲତେଁ ଲଡ଼େ, ତଊ ରଣ ମେଁ ସବହାରେ ।।
କାଲକେୟ ପୌଲୋମ ସବ, ସ୍ୱର୍ଣ୍ଣପୁରୀବାସୀ ହନେ ।
ଜିନକେ ବଲତେଁ ବଲୀ ବନି ରାଜନ୍ ଅବ ତିନୁ
ବିନୁ ବନେ ।।



Digitized by srujanika@gmail.com

# ଗୋଧନ ହରଣ ଓ
# ଶ୍ରୀକୃଷ୍ଣଙ୍କ ଅନୁଗ୍ରହ

ଯଦ୍‌ବାନ୍ଧବଃ କୁରୁବଲାବ୍‌ଧିମନନ୍ତ ପାର ।
ମେକୋ ରଥେନ ତତରେଽହମତାର୍ଯସତ୍ତ୍ୱମ୍ ।
ପ୍ରତ୍ୟାହୃତଂ ବହୁଧନଂ ଚ ମୟା ପରେଷାଂ
ତେଜାସ୍ପଦଂ ମଣିମୟଂ ଚ ହୃତଂ ଶିରୋଭ୍ୟଃ ।।

( ଭାଗବତ ୧ । ୧୫ । ୧୪ )

## ଛପ୍‌ପୟ

କୌରବ ଓର ତ୍ରିଗର୍ତ୍ତ ସନ୍ଧି କରି କରି ଚଢ଼ାଈ ।
କରେ ବାସ ଅଜ୍ଞାତ କହାଁ ହମ ପାଞ୍ଚୋଁ ଭାଈ ।।
ଭୀଷ୍ମ, କର୍ଣ୍ଣ, ଗୁରୁ, ଦ୍ରୋଣ ସୁଯୋଧନ ସବ ମିଲି କରିକେଁ ।
ମତ୍ସ୍ୟ ଦେଶ ପେଂ ଚଢ଼େ ଚଲେ ଗୋଧନ ବହୁ ହରିକେଁ ।।
ବୃହନ୍ନଲା ତେଁ ସାରଥୀ ବନେ୍ୟା ହର୍ଷ ହିୟ ମେଁ ଅମିତ ।
କହେ ଉତ୍ତର୍‌ ସୁଧର ପଟ, ଲଡ଼ୌଁ ମମ ଗୁଡ଼ିୟାନ ହିତ ।।

ସମୃଦ୍ଧିଶାଳିନୀ ରାଜଧାନୀ ସ୍ଥିତ ମହାନଗରୀର ଅବରୁଦ୍ଧ ଦ୍ୱାର ଖୋଲି ଦିବା ମାତ୍ରେ ଯେପରି ନାନା ପ୍ରକାର ବେଶଭୂଷା ପରିହିତ ନରନାରୀ ଅନବରତ ବାହାରକୁ ଆସୁଥାନ୍ତି, ସେହିପରି ଅର୍ଜ୍ଜୁନଙ୍କର ସ୍ମୃତି ରୂପ ନଗରୀର ଦ୍ୱାର ଖୋଲି ଯାଇଥିବାରୁ କୃଷ୍ଣକୃପା ସମ୍ବନ୍ଧୀୟ ଅସଂଖ୍ୟ କାହାଣୀ ବାହାରିବାକୁ ଲାଗିଲା । ଶ୍ରୀକୃଷ୍ଣଙ୍କ ଦୟାରୁ ସେ ଯେଉଁ ଯେଉଁ ଅସାଧ୍ୟ କାର୍ଯ୍ୟ ସାଧନ କରିଥିଲେ, ଯାହା ସବୁ ଅମାନୁଷିକ ପୌରୁଷ ପ୍ରଦର୍ଶନ କରିଥିଲେ ସେ ସମସ୍ତ ମନେ ପଡ଼ିବାମାତ୍ରେ ଅର୍ଜ୍ଜୁନଙ୍କର ହୃଦୟ କାନ୍ଦି ଉଠୁଥିଲା । ସେହି ସବୁ କାର୍ଯ୍ୟ ମଧ୍ୟରେ ଅଚ୍ୟୁତଙ୍କର ପ୍ରତ୍ୟକ୍ଷ ଅନୁଗ୍ରହ ସେ ଅନୁଭବ କରିପାରୁଥିଲେ ।

Digitized by srujanika@gmail.com

ବନବାସ ପରେ ଅଜ୍ଞାତବାସର ସ୍ମୃତି ତାଙ୍କ ମନରେ ଜାଗି ଉଠିଲା । ଅତି କରୁଣସ୍ୱରରେ ସେ ବଡ଼ଭାଇ ଧର୍ମରାଜଙ୍କୁ କହିବାକୁ ଲାଗିଲେ – 'ରାଜନ୍ ! କୃଷ୍ଣଙ୍କ କରୁଣା ଅନନ୍ତ ସାଗର । ତା'ର ଶେଷ ନାହିଁ । ଆମ ସମସ୍ତଙ୍କ ଉପରେ ତାଙ୍କର ଅସୀମ ଦୟା ଥିଲା । ହସ୍ତିନାପୁରରେ ନିକଟବର୍ତ୍ତୀ ମତ୍ସ୍ୟଦେଶର ରାଜଧାନୀ ମହାରାଜ ବିରାଟଙ୍କ ରାଜଭବନରେ ବେଶ ବଦଳାଇ ଅମ୍ଭେମାନେ ଅଜ୍ଞାତବାସର କାଳଯାପନ କରୁଥିଲେ । ଚାରିଆଡ଼େ ଆମକୁ ଖୋଜାଖୋଜି କରି ନିରସ୍ତ ହେବା ପରେ ଦୁର୍ଯୋଧନ ଭାବିଲେ, ସମ୍ଭବତଃ ବନବାସ, ଦୁଃଖରେ ଦୁଃଖୀ ହୋଇ ଆମ୍ଭେମାନେ ଆତ୍ମହତ୍ୟା କରିଛୁ; କିନ୍ତୁ କୂର୍ମ ଭଳି ଆମ୍ଭେମାନେ ନିଜକୁ ଲୁଚାଇ ପଡ଼ି ରହିଥାଉଁ । ବଗ ଭଳି ରାଜ୍ୟରୂପ ଆହାର ଲାଭ ନିମିତ୍ତ ଆଖି ବୁଜି ଆମ୍ଭେମାନେ ମିଥ୍ୟା ସମାଧିମଗ୍ନ ରହିଥାଉଁ । ସାଧାରଣ ବ୍ରାହ୍ମଣ ଭଳି ଆମର କାଳ କଟିଯାଉଥିଲା । ସେହି ସମୟରେ କୌରବ ଓ ତ୍ରିଗର୍ତ୍ତ ମିଳିତଭାବେ ମତ୍ସ୍ୟଦେଶ ଉପରେ ଆକ୍ରମଣ କରିଦେଲେ । ମତ୍ସ୍ୟାଧିପତି ମହାରାଜ ବିରାଟ ନିଜର ଶ୍ୟାଳକ କୀଚକଙ୍କ ସେନାପତିତ୍ୱରେ ପୂର୍ବେ ତ୍ରିଗର୍ତ୍ତ ରାଜାଙ୍କୁ ବନ୍ଧୁ ହାଇରାଣ କରିଥିଲେ । ସେ ସେହି ପୂର୍ବ ଶତ୍ରୁତାର ପ୍ରତିଶୋଧ ନେବା ନିମିତ୍ତ କୌରବମାନଙ୍କ ସହାୟତା ପାଇବା ମାତ୍ରେ ମତ୍ସ୍ୟଦେଶ ଉପରେ ଆକ୍ରମଣ କଲେ । ସେମାନେ ଗୋଟିଏ ଦିଗରୁ ଆକ୍ରମଣ ଆରମ୍ଭ କଲେ । କୌରବମାନେ ଭାବିଲେ ବିରାଟ ନିଜର ସୈନ୍ୟ ସାମନ୍ତ ସହିତ ତ୍ରିଗର୍ତ୍ତଙ୍କ ସହିତ ଯୁଦ୍ଧ କରିବାକୁ ବାହାରିଗଲେ ଶୂନ୍ୟନଗରୀରୁ ସମସ୍ତ ଗୋଧନ ଓ ରତ୍ନ ଆଭୂଷଣମାନ ଅପହରଣ କରି ନେଇଯିବେ । ସେମାନେ ପ୍ରକୃତରେ ତାହା ହିଁ କଲେ, ଆପଣ ଓ ଭୀମସେନ ମହାରାଜ ବିରାଟଙ୍କ ସହିତ ଯୁଦ୍ଧକୁ ଚାଲି ଯାଇଥିଲେ । ଏଆଡ଼େ ବିରାଟଙ୍କ ପୁତ୍ର ଉତ୍ତର ଏକାକିଆ ଦୁର୍ଗରକ୍ଷା କରୁଥିଲେ । ସେହି ସମୟରେ କୌରବମାନେ ବିରାଟଙ୍କର ସମସ୍ତ ଗୋଧନ ହରଣ କରିନେଲେ । ଗୋରକ୍ଷକ ଗୋପାଳମାନେ ଆସି ରାଜକୁମାରଙ୍କୁ ସବୁକଥା କହିଲେ । ଉତ୍ତରକୁମାର ରାଣୀହଂସପୁରକୁ ଯାଇ କହିଲେ, ଯଦି କେହି ଯୋଗ୍ୟ ସାରଥି ମିଳିବେ, ତେବେ ମୁଁ କୌରବ-ମାନଙ୍କୁ ପରାସ୍ତ କରି ଗୋଧନ ଫେରାଇ ଆଣିପାରିବି ।

ଦ୍ରୌପଦୀ ସେତେବେଳେ ସୈରନ୍ଧ୍ରୀ ବେଶରେ ରାଣୀହଂସପୁରରେ ରହୁଥିଲେ । ମୁଁ ନପୁଂସକ ବୃହନ୍ନଳା ବେଶରେ ମହାରାଜ ବିରାଟଙ୍କ କନ୍ୟା ଉତ୍ତରାକୁ ନୃତ୍ୟଗୀତ ଶିକ୍ଷାଦାନ କରୁଥିଲି । ଦ୍ରୌପଦୀଙ୍କଠାରୁ କୁମାର ଜାଣିବାକୁ ପାଇଲେ ଯେ, ମୁଁ ସାରଥି କର୍ମରେ ଖୁବ୍ ପ୍ରବୀଣ । ଉତ୍ତରକୁମାର ମୋର ଯଥାର୍ଥ ସ୍ୱରୂପ ନ ଜାଣି ମୋତେ ସାରଥି କରିବା ନିମିତ୍ତ ଆଗ୍ରହ ପ୍ରକାଶ କଲେ । ଅଜ୍ଞାତବାସର ଅବଧି ସମାପ୍ତ ହୋଇଯାଇଥିବାରୁ ମୁଁ ସେହି ଯୁଦ୍ଧକୁ ଏକ ଉତ୍କୃଷ୍ଟ

Digitized by srujanika@gmail.com

ଅବସର ଭାବେ ସ୍ୱୀକାର କରି ରଥନେଇ ଉତ୍ତରଙ୍କ ସମ୍ମୁଖରେ ଉପସ୍ଥିତ ହେଲି । ଆମ୍ଭେମାନେ ସୁସଜ୍ଜିତ ହୋଇ ଯାତ୍ରା ଆରମ୍ଭ କରିବାବେଳେ ବାଳ ଗୃହଲକ୍ଷ୍ମୀ ଉତ୍ତରା ମୋତେ କହିଲେ—'ବୃହନ୍ନଳା ! ମୋ ଭାଇ କୌରବ-ମାନଙ୍କୁ ପରାସ୍ତ କରି ଆସିବାବେଳେ ମୋ ଖେଳନା ପାଇଁ ରଙ୍ଗ ବିରଙ୍ଗ କନା ନିଶ୍ଚୟ ଆଣିବ ।' ମୁଁ ମଧ୍ୟ ଆନନ୍ଦରେ କହିଦେଲି – 'ଦୁର୍ଯ୍ୟୋଧନ କର୍ଣ୍ଣ ପ୍ରଭୃତିଙ୍କର ସୁନ୍ଦର ସୁନ୍ଦର ବସ୍ତ୍ର ତୋ ପାଇଁ ନେଇ ଆସିବୁ ।' ହସି ହସି ଏତିକ କହି ରଥ ନେଇ କୌରବସେନାଙ୍କ ଆଡ଼କୁ ଯାତ୍ରା କଲୁ । ବର୍ଷାକାଳୀନ ଘନ ସମାନ ସର୍ବତ୍ର ବିସ୍ତୃତ, ସମୁଦ୍ର ତୁଲ୍ୟ କୌରବ ସେନାବାହିନୀକୁ ଦେଖି ଉତ୍ତରଙ୍କର ସାହସ ଉଡ଼ିଗଲା । ଦେହରୁ ତାଙ୍କର ଝାଳ ବହିପଡ଼ିଲା । ଭୟରେ ସେ ଖୁବ୍ ଜୋର୍‌ରେ ଥରିବାକୁ ଲାଗିଲେ । ଭୟରେ ସେ କହିଲେ 'ବୃହନ୍ନଳେ ! ତୁମେ ଯଥାଶୀଘ୍ର ମୋ ରଥକୁ ନଗରକୁ ଫେରାଇ ନିଅ । ଏହି ଯୋଦ୍ଧାମାନଙ୍କ ସହିତ ଯୁଦ୍ଧ କରିବାପାଇଁ ମୁଁ ଅସମର୍ଥ । ଆମ ଗୋଧନ ଯଦି ନେଇଯାଉଛନ୍ତି ନିଅନ୍ତୁ । ଗୋରୁ ଅନେକ ମିଳିବେ । ଜୀବନ ଥିଲେ ଅନେକ ଐଶ୍ୱର୍ଯ୍ୟ ମିଳିବ ।'

କିନ୍ତୁ, ମୁଁ ସେ ପିଲାକୁ ନାନାପ୍ରକାର ବୁଝାଇଲି । ବୀରତ୍ୱ ପ୍ରତିପାଦକ କାହାଣୀ କହି ଆଶ୍ୱାସନା ଦେଲି । ବୀରର ଧର୍ମ, ଯୁଦ୍ଧର କୌଶଳ ବିଷୟରେ ବହୁ ଉପଦେଶ ଦେଲି । ଯୁଦ୍ଧରୁ ପଳାୟନ କରିବା କ୍ଷତ୍ରିୟର ଅଧର୍ମ ହେବ ବୋଲି କହିବା ପରେ ମଧ୍ୟ ସେ ମୋର କୌଣସି କଥା ଶୁଣିଲାନାହିଁ । ସେ ଏପରି ଭୟଭୀତ ହୋଇଯାଇଥିଲା ଯେ, ମୁଁ ରଥ ଫେରାଉ ନଥିବାର ଦେଖି ରଥରୁ ତଳକୁ ଡେଇଁ ପଡ଼ି ଦୌଡ଼ିବାକୁ ଆରମ୍ଭ କଲା । ମୁଁ ରଥ ଠିଆକରି ଦୌଡ଼ିଯାଇ ତାକୁ ଧରି ଆଣିଲି । ସେ ମୋତେ ନାନାପ୍ରକାର ଅନୁନୟ ବିନୟ ହୋଇ କହିଲା ଏବଂ ବିବିଧ ପ୍ରକାର ପ୍ରଲୋଭନ ଦେଖାଇଲା । ସେତେବେଳେ ମୁଁ ନହସି ରହିପାରିଲି ନାହିଁ । ହସି ହସି ମୁଁ କହିଲି, 'ବାବୁ, ଆଦୌ ଭୟକର ନାହିଁ, ମୁଁ ଯୁଦ୍ଧ କରିବ, ତୁମେ ମୋ ରଥ ଚଳାଇବ ।' ସେ କହିଲା ଆପଣ ତ ନପୁଂସକ, ନାଚିବା ଗାଇବା ଲୋକ, ଯୁଦ୍ଧ କିପରି କରିବେ ।' ତୁମେ ନିଜ ସହିତ ମୋତେ ମାରିବ ।'

ଉତ୍ତର କୁମାର ଅତୀବ ଭୟଭୀତ ହୋଇଥିବାର ଦେଖି ମୁଁ ମୋ ପରିଚୟ ଦେଇ କହିଲି—'ମୁଁ ନପୁଂସକ ନୁହେଁ । ଗାଣ୍ଡୀବ ଧନୁର୍ଧାରୀ ଶ୍ରୀକୃଷ୍ଣ ସଖା ଅର୍ଜ୍ଜୁନ । ଭଗବାନ ଶ୍ରୀକୃଷ୍ଣଙ୍କ ଦୟାରୁ ମୁଁ ସବୁ କିଛି କରିବାପାଇଁ ସମର୍ଥ । ସମ୍ମୁଖର ଏହି ବିରାଟ ସେନାବାହିନୀକୁ ମୁଁ ଏକୁଟିଆ ପରାଜିତ କରିଦେବି । ବାସୁଦେବଙ୍କ କୃପାରୁ କୌଣସି କାର୍ଯ୍ୟ ମୋତେ କଠିନ ମନେହୁଏ ନାହିଁ ।

Digitized by srujanika@gmail.com

ତୁମେ ନିର୍ଭୟ ହୁଅ । ଅନେକ ପ୍ରକାର ପ୍ରଶ୍ନ ପଚାରିବା ପରେ ଶମୀ ବୃକ୍ଷରୁ ମୋର ଗାଣ୍ଡୀବ ଧନୁକୁ ଦେଖି ଯେତେବେଳେ ତାର ବିଶ୍ୱାସ ଆସିଲା, ସେତେବେଳେ ମୋ କଥା ଅନୁସାରେ ସାରଥି ହେବାକୁ ସ୍ୱୀକାର କଲା । ଏହାପରେ ମୋ ଧନୁର ଟଙ୍କାର ଶବ୍ଦରେ କୌରବବାହିନୀରେ ଆତଙ୍କ ଖେଳିଗଲା । ପ୍ରବଳ ପରାକ୍ରମୀ ତ୍ରୈଲୋକ୍ୟବିଜୟୀ ବୀର ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଦୁର୍ଯ୍ୟୋଧନାଦି ଯୋଦ୍ଧାଙ୍କ ସହିତ ଯୁଦ୍ଧ କରିବା ନିମିତ୍ତ ମୁଁ ଏକୁଟିଆ ଅଗ୍ରସର ହେଲି । ଭଗବାନ୍ ମୋର ସହାୟ ଥିଲେ । ମୁଁ ନିର୍ଭୟରେ ଯୁଦ୍ଧକୁ ଆଗେଇ ଯାଉଥିବାର ଦେଖି କୌରବ ସେନାବାହିନୀରେ ବିବାଦ ଆରମ୍ଭ ହୋଇଗଲା । କିଏ ମୋତେ ନିନ୍ଦା କଲା ତ କିଏ ପ୍ରଶଂସା କଲା । ପିତାମହ ଭୀଷ୍ମ ସମସ୍ତଙ୍କୁ ଶାନ୍ତ କରି ମିଳିତଭାବେ ମୋ ସହିତ ଯୁଦ୍ଧ କରିବାକୁ ଆସିଲେ ।

ଭୟଙ୍କର ଯୁଦ୍ଧ ଆରମ୍ଭ ହୋଇଗଲା । ସମସ୍ତେ ନିଜ ନିଜର ପୂର୍ଣ୍ଣଶକ୍ତି ବିନିଯୋଗ କରି ମୋତେ ହରାଇବା ନିମିତ୍ତ ଚେଷ୍ଟାକଲେ; କିନ୍ତୁ ନନ୍ଦନନ୍ଦନଙ୍କ ଅପାର କୃପାହେତୁ ସେମାନଙ୍କ ମନୋରଥ ସଫଳ ହେଲନାହିଁ । କର୍ଣ୍ଣ, କୃପାଚାର୍ଯ୍ୟ, ଅଶ୍ୱତ୍ଥାମା, ଭୀଷ୍ମ, ଦୁର୍ଯ୍ୟୋଧନ ସମସ୍ତେ ଜଣକ ପରେ ଜଣେ ମୋ ସହିତ ଯୁଦ୍ଧରେ ପରାଜିତ ହେଲେ । ସମସ୍ତେ ଭୟରେ ଯୁଦ୍ଧକ୍ଷେତ୍ରରୁ ପଳାଇଗଲେ ମଧ୍ୟ କର୍ଣ୍ଣ ପୁନର୍ବାର ଯୁଦ୍ଧ କରିବାପାଇଁ ଆସିଲେ । ସେତେବେଳେ କାହାରିକୁ ଜୀବନରେ ମାରିଦେବାର ଅଭିପ୍ରାୟ ମୋର ନ ଥିଲା । ଅନେକ ସୈନିକ ମୃତ୍ୟୁବରଣ କରିଥିଲେ ମଧ୍ୟ ମୁଁ କୌଣସି ସେନାପତିଙ୍କୁ ଆଘାତ କରି ନ ଥିଲି । ତେଣୁ ମୋହନାସ୍ତ୍ରଦ୍ୱାରା ସମସ୍ତଙ୍କୁ ମୋହିତ କରି ଭୂତଳଶାୟୀ କଲାପରେ ଉତ୍ତର କୁମାରଙ୍କୁ କହିଲି—ବାବୁ, ତୁମେ ଯାଇ ମୂର୍ଚ୍ଛିତ ହୋଇପଡ଼ିଥିବା ମୁଖ୍ୟ ମୁଖ୍ୟ ବୀରଙ୍କ ମଣିମୟ ମୁକୁଟ ଓ ସୁନ୍ଦର ସୁନ୍ଦର ଉତ୍ତରୀୟ ବସ୍ତ୍ର ସବୁ ଉତ୍ତରାଙ୍କ ନିମିତ୍ତ ସଂଗ୍ରହକରି ନେଇ ଆସ । ସେହି ବସ୍ତ୍ର ଓ ମୁକୁଟ ଲାଭ କରି ଉତ୍ତରା ଖୁସି ହେବେ ।'

ଉତ୍ତର କୁମାର ମୋ ଆଦେଶ ଅନୁସାରେ ରଥ ଠିଆ କରି ତଳକୁ ଯାଇ ବୀରମାନଙ୍କ ବସ୍ତ୍ର ଓ ଆଭୂଷଣ ସଂଗ୍ରହ କରିବାକୁ ଲାଗିଲେ । ଯେତେବେଳେ ଭୀଷ୍ମଙ୍କ ମୁକୁଟ ଆଣିବାକୁ ଗଲା, ସେ ସେତେବେଳେ ତାକୁ ବାରଣ କରି କହିଲି—ଦେଖ ବାବୁ, ତାଙ୍କ ପାଖକୁ ଯିବନାହିଁ । ସେ ହେଉଛନ୍ତି ଭୀଷ୍ମ, ମୋର ସଖା ଶ୍ରୀକୃଷ୍ଣଙ୍କ ପରମଭକ୍ତ । ସଂସାରରେ କେହି ତାଙ୍କୁ ପରାଜିତ ବା ମୋହିତ କରି ପାରିବେ ନାହିଁ । ଏହି ମୋହନାସ୍ତ୍ରରେ ବାସୁଦେବଙ୍କ କୃପାରୁ ହିଁ ସେ ମୋହିତ ହୋଇ ନାହାନ୍ତି । ସାବଧାନ, ତାଙ୍କ ଆଡ଼କୁ ହାତ ବଢ଼ାଇବାମାତ୍ରେ ପ୍ରାଣ ଯିବ ।' ମୋ କଥା ଶୁଣିବାମାତ୍ରେ ଉତ୍ତର କୁମାର ଫେରି ଆସିଲା ।

Digitized by srujanika@gmail.com

ରାଜନ୍ ! ସେହି ଯୁଦ୍ଧରେ ଏଭଳି ଅଦ୍ଭୁତ କାଣ୍ଡ ଦେଖି ଦୁର୍ଯ୍ୟୋଧନର ସମସ୍ତ ଅଭିମାନ ଧୂଳିସାତ୍ ହୋଇଗଲା । କୌରବମାନଙ୍କର ମନୋରଥ ବିଫଳ ହେଲା । ତ୍ରିଗର୍ତ୍ତଙ୍କ ସହିତ ହୋଇଥିବା ଚୁକ୍ତି ସଫଳ ହେଲା ନାହିଁ । ଧନରତ୍ନ କିଛି ପାଇପାରିଲେ ନାହିଁ କି ଗୋଧନ ହରଣ କରିପାରିଲେ ନାହିଁ; କିନ୍ତୁ ପରିଣତି ସ୍ୱରୂପ ପରାଜୟ ହିଁ ସାର ହେଲା । ସବୁ ସୈନ୍ୟ ମୋହିତ ହୋଇ-ଥିବାର ଦେଖି ମୁଁ ଗୋପାଳମାନଙ୍କୁ ଗାଈ ଅଡ଼ାଇ ଫେରିଯିବାକୁ ଆଦେଶ ଦେଲି । ମୋ ଅନୁମତି ପାଇବାମାତ୍ରେ ଗୋପାଳମାନେ ଗାଈ ନେଇ ନଗରକୁ ପ୍ରତ୍ୟାବର୍ତ୍ତନ କଲେ । ସେଭଳି ଏକ ବିରାଟ ସୁସଜ୍ଜିତ କୌରବବାହିନୀକୁ ଯେଉଁ ପ୍ରଭୁଙ୍କ ଦୟାରୁ ମୁଁ ହସି ହସି ଆଖିପିଛୁଳାକେ ହରାଇଥିଲି ଏବଂ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, କୃପାଚାର୍ଯ୍ୟ, ଦୁର୍ଯ୍ୟୋଧନାଦିଙ୍କୁ ତୃଣବତ୍ ମନେ କରିଥିଲି, ସେହି ଭଗବାନ୍ ବାସୁଦେବ ଆମ୍ଭମାନଙ୍କୁ ତ୍ୟାଗକରି ନିଜଧାମକୁ ଚାଲିଯାଇଛନ୍ତି । ଏବେ ମୋର ଆଉ ସେ ବଳ ବା ତେଜ ନାହିଁ । ମୁଁ ବର୍ତ୍ତମାନ ନିର୍ବଳ ଓ ସାହସହୀନ ହୋଇ-ଯାଇଛି । ରାଜନ୍ ! ଏବେ ଆମ୍ଭମାନଙ୍କୁ ତାଙ୍କରି ପଥ ଅନୁସରଣ କରିବାକୁ ହେବ । ଏହା କହୁଁ କହୁଁ ଅର୍ଜୁନଙ୍କ କଣ୍ଠରୁଦ୍ଧ ହୋଇଗଲା ।

## ଛପ୍ପୟ

ଉତ୍ତର ଉତରୀ ଚଲେ୍ୟା ଜାୟଁ କୌରବ ଗୌଲ୍ ଟେ ।
ସେନା ଲଖୀ ମହାନ୍ କୁଁ ବରକେ ଛକ୍ କେ ଛୁଟେ ॥
ନିଜ ପରିଚୟ କରଓ୍ୱାଇ ଯୁଦ୍ଧକୀ କରୀ ତୟ୍ୟାରୀ ।
ସଂଧାନେ୍ୟା ଗାଣ୍ଡୀବ ଶତ୍ରୁ ସେନା ସଂହାରୀ ॥
ଲହୀ ବିଜୟ ମୂର୍ଚ୍ଛିତ କରେ ମୁକୁଟ ବସ୍ତ୍ର ଗୋଧନ ଲୟେ
କରେ କାଜ ଜିନ କୃପାତେଁ ହାୟ କୃଷ୍ଣ ଓ୍ୱେ ତଜିଗୟେ ॥



Digitized by srujanika@gmail.com

## ମହାଭାରତ ଯୁଦ୍ଧରେ
## ଶ୍ରୀକୃଷ୍ଣଙ୍କ କୃପା

ଯଦ୍ଦୋଷ୍ଷୁ ମା ପ୍ରଣିହିତ ଗୁରୁଭୀଷ୍ମ କର୍ଣ୍ଣ-
ନପ୍ତୃତ୍ରିଗର୍ତ୍ତଶଲ୍ୟସୈନ୍ଧବବାହ୍ଲିକାଦ୍ୟୈଃ ।
ଅସ୍ତ୍ରାଣ୍ୟମୋଘମହିମାନି ନିରୂପିତାନି
ନୋ ପସ୍ପୃଶୁର୍ନୃହରିଦାସମିବାସୁରାଣି ॥
( ଭାଗବତ ୧ । ୧୫ । ୧୬ )

### ଛପ୍ପୟ

କୈସୀ କରପା କରୀ ହମାରେ ଉପରେ ରନ ମହିଁ ।
ଭୀଷ୍ମ ଦ୍ରୋଣ ସମ ବୀର ବାଣ ତକ ମାରହିଁ ତନମହିଁ ॥
ଜାହିଁ ସର୍ କରି ନିକରି ତନକ ତନମହିଁ ନହିଁ ଲାଗୈଁ ।
ଲାଗତ ମେରେ ବାଣ ଶତ୍ରୁ ରଣ ତଜ ସବ ଭାଗୈଁ ॥
ମେରେ ରଥ ପୈ ବୈଠକେଁ ସବକୂଁ ନିରବୀରକ କର୍ୟୋ ।
ଦୃଷ୍ଟି ତାରି ମୃତ ସରିସ କରି ଓଜ ତେଜବୟୁ ବଲ ହର୍ୟୋ ॥

ବିଧିବିଧାନ ଅନୁସାରେ ପ୍ରୟୋଗ ନ କଲେ ଶସ୍ତ୍ର ସ୍ୱୟଂ କାହାରିକୁ ମାରିପାରେ ନାହିଁ । କାଠପିତୁଳି ନିଜେ ନାଚେ ନାହିଁ, ନଚେଇବା ଲୋକ ସେଗୁଡ଼ିକୁ ନଚାଇଥାଏ । ଏହି କଥା ଭାବି ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣଙ୍କ କୃପା ସ୍ମରଣ ପୂର୍ବକ ଅର୍ଜ୍ଜୁନ ପୁଣି କହିବାକୁ ଲାଗିଲେ, ରାଜନ୍ ! ଭଗବାନ୍ ଏହି ପୃଥିବୀରେ ଥିବା ପର୍ଯ୍ୟନ୍ତ ଆମ୍ଭମାନଙ୍କ ମଙ୍ଗଳକାମନା କରୁଥିଲେ, ଆମ୍ଭମାନଙ୍କୁ ସମସ୍ତ ସାହାଯ୍ୟ ଦେଇଥିଲେ ଏବଂ ମହାମହା ବିପଦରୁ ଉଦ୍ଧାର କରି-

Digitized by srujanika@gmail.com

ଥିଲେ । କଂସର ମୃତ୍ୟୁପରେ ମାମୁଁ ଅକ୍ରୂରଙ୍କୁ ଆମର ଭଲମନ୍ଦ ବୁଝିବାପାଇଁ ପଠାଇଥିଲେ । ସେତେବେଳେ ଆମ୍ଭେମାନେ ପିତୃହୀନ ଅନାଥ ପିଲା । ସେ ପର୍ଯ୍ୟନ୍ତ ଆମେ ଶ୍ୟାମସୁନ୍ଦରଙ୍କୁ ଦେଖି ନ ଥିଲୁ । ଅକ୍ରୂର ଆସିବା ପରେ ଆମ୍ଭେମାନେ ଜାଣିଲୁ, ସେ ହେଉଛନ୍ତି ଆମର ସର୍ବସ୍ୱ । ଆମ ମୁଣ୍ଡ ଉପରେ ତାଙ୍କର ହାତର ଛତ୍ରଛାୟା ରହିଛି !

ମହାଭାରତ ଯୁଦ୍ଧରେ ନିଜେ ନିଃଶସ୍ତ୍ର ରହି ମଧ୍ୟ ଅସ୍ତ୍ରଶସ୍ତ୍ରଧାରୀ ମହା ମହା ଯୋଦ୍ଧାଙ୍କଠାରୁ ବଳି କାର୍ଯ୍ୟ ସେ କରିଥିଲେ । ଯୁଦ୍ଧ ନ କରି ମଧ୍ୟ ସେ ଯୁଦ୍ଧର ପ୍ରଧାନ ନାୟକ ହୋଇଥିଲେ । କାଠପିତୁଳା ନାନାରଙ୍ଗରେ ନାଚେ, ବିବିଧ ହାବଭାବ ପ୍ରକାଶ କରେ । ଜଣେ ଲୋକ ଚୁପ୍‌ଚାପ୍ ବସିରହି ନିର୍ବିକାରଭାବେ ସେହି ନୃତ୍ୟ ଦେଖୁଥାଏ । ଦର୍ଶକମାନେ ସେହି ଲୋକକୁ ନିଜପରି ଜଣେ ଦର୍ଶକ ବୋଲି ଭାବନ୍ତି; କିନ୍ତୁ ତା'ର ଗୋଟିଏ ହାତ ଲୁଚି ରହିଥାଏ । ସେହି ହାତରେ ସେ ନିର୍ଜୀବ ପିତୁଳାଗୁଡ଼ିକର ଡୋରି ଧରିଥାଏ । ତାହାରି ସଙ୍କେତ ଅନୁସାରେ ପିତୁଳାଗୁଡ଼ିକ ନାଚନ୍ତି । ସେହି ଗତିହୀନ ସ୍ଥାବର ପିତୁଳାଗୁଡ଼ିକ ଉଦାସୀନଭାବେ ବସିଥିବା ପୁରୁଷର ହାତରେ ଥାଏ । ଦର୍ଶକମାନେ କେବେହେଲେ ଜାଣିପାରନ୍ତି ନାହିଁ ଯେ, ସେହି ପୁରୁଷ ହିଁ ବସିରହି ପିତୁଳାଗୁଡ଼ିକୁ ନଚାଉଛି । ସେହିଭଳି ମହାଭାରତ ଯୁଦ୍ଧରେ ସେ ସବୁ କିଛି କଲେ ଓ କରାଇଲେ; କିନ୍ତୁ ସଂସାରରେ ପ୍ରଚାରିତ ହେଲା ବୀର ଅର୍ଜୁନ ଏଡ଼େ ବଡ଼ ମହାଭାରତ ଯୁଦ୍ଧରେ ବିଜୟୀ ହେଲା । ବହୁ ବଡ଼ ବଡ଼ ଯୋଦ୍ଧାଙ୍କୁ ସେହି ଯୁଦ୍ଧରେ ସଂହାର କଲା । ରାଜନ ! ଆପଣ ନିଜେ ଚିନ୍ତା କରନ୍ତୁ, ସେହି ଯୁଦ୍ଧରେ ମୋର କରିବାର କ'ଣ ଥିଲା ?

ବିରାଟ ନଗରରେ ଗୋଧନ ହରଣ ଯୁଦ୍ଧପରେ ଯେତେବେଳେ ଆମ୍ଭେମାନେ ସମସ୍ତଙ୍କ ଆଗରେ ପରିଚିତ ହେଲୁ, ସେତେବେଳକୁ ଅଜ୍ଞାତବାସର ସମୟ ସରିଯାଇଥିଲା । ଦୁର୍ଯ୍ୟୋଧନ ମନରେ କପଟ ଥିଲା । ସେ ଯେ କୌଣସି ଉପାୟରେ ଆମକୁ ରାଜ୍ୟଭ୍ରଷ୍ଟ କରିବାପାଇଁ ଇଚ୍ଛା କରୁଥିଲା । ଆମର ପୈତୃକ ରାଜ୍ୟ ଆମକୁ ଫେରାଇ ଦେବା ନିମିତ୍ତ ତା'ର ଆଦୌ ଆନ୍ତରିକ ଇଚ୍ଛା ନ ଥିଲା । ସେଥିପାଇଁ ସେ ନାନାପ୍ରକାର ବାହାନା କରୁଥିଲା । ସେ କହିବାକୁ ଲାଗିଲା— ଅଜ୍ଞାତବାସ ସମୟ କାଟିବା ପୂର୍ବରୁ ପାଣ୍ଡବମାନେ ଜଣାପଡ଼ିଗଲେ । ତେଣୁ ନିୟମ ଅନୁସାରେ ସେମାନେ ପୁଣି ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସ କରିବେ । ପିତାମହ ଭୀଷ୍ମ ଗଣନା କରି ପାଣ୍ଡବମାନଙ୍କ ବନବାସ ସମୟ ପୂର୍ଣ୍ଣ ହୋଇଛି ବୋଲି ବୁଝାଇବାକୁ ଯେତେ ଯତ୍ନକଲେ ମଧ୍ୟ ସେ କୌଣସି କଥା ଶୁଣିଲା ନାହିଁ । ସେ ନିଜ କଥା ଉପରେ ଅଡ଼ିବସିଲା । ଶେଷରେ ଯୁଦ୍ଧକରିବା କଥା ସିଦ୍ଧାନ୍ତ ହେଲା । ଉଭୟ ପକ୍ଷରୁ ସୈନ୍ୟ ସଂଗ୍ରହ ଆରମ୍ଭ ହୋଇଗଲା ।

Digitized by srujanika@gmail.com

ଦୁର୍ଯୋଧନ ରାଜଗାଦିରେ ଥିଲା । ଆମ୍ଭେମାନେ ରାଜ୍ୟଭ୍ରଷ୍ଟ ଓ ସାଧନହୀନ ଥିଲୁ; ତଥାପି ଧାର୍ମିକ ମନୋଭାବାପନ୍ନ ରାଜାମାନେ ଶ୍ରୀକୃଷ୍ଣଙ୍କ ସହାୟତା ଓ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ଆମ ପକ୍ଷରେ ଯୁଦ୍ଧରେ ଯୋଗଦେବା ନିମିତ୍ତ ପ୍ରସ୍ତୁତ ହେଲେ । ଭାରତର ଅନ୍ୟାନ୍ୟ ବୀର, ରାଜା ମହାରାଜାମାନେ ଦୁର୍ଯୋଧନର ପ୍ରରୋଚନାରେ ଆମ ବିପକ୍ଷରେ ଯୁଦ୍ଧପାଇଁ ଆସିଲେ । ଏହି ଉପାୟରେ ଦୁର୍ଯୋଧନର ଏଗାର ଅକ୍ଷୌହିଣୀ ଓ ଆମ ପକ୍ଷରେ ମାତ୍ର ସାତ ଅକ୍ଷୌହିଣୀ ସୈନ୍ୟ ରହିଲେ; କିନ୍ତୁ, ଗୋପୀଜନବଲ୍ଲଭ ଦ୍ୱାରକାଧିପତି ଶ୍ୟାମସୁନ୍ଦର ମୋ'ରଥର ସାରଥି ହେଲେ । ମୁଁ ତାଙ୍କୁ କହିଲି ବାସୁଦେବ ! ମୋ ରଥକୁ ନେଇ ଉଭୟସେନାଙ୍କ ମଝିରେ ରଖ । କେଉଁ କେଉଁ ଯୋଦ୍ଧାମାନଙ୍କ ସହିତ ଯୁଦ୍ଧ କରିବାକୁ ହେବ ତାହା ମୁଁ ଦେଖିବି ।

ମୋର ଆଦେଶ ଅନୁସାରେ ସେ ମୋ ରଥକୁ ଆଖି ପିଛୁଳାକେ ନେଇ ଉଭୟ ସେନାବାହିନୀର ମଧ୍ୟଭାଗରେ ଠିଆକରାଇଦେଲେ । ମୋର ମନେହେଲା, ଉଦ୍ବେଳିତ ଜଳରାଶିକୁ ନେଇ ଦୁଇଟି ପ୍ରବୃଦ୍ଧ ସାଗର ପରସ୍ପର ସହିତ ମିଶିବାକୁ ଯେପରି ଦ୍ରୁତବେଗରେ ମାଡ଼ିଆସୁଛି । ଉଭୟ ପକ୍ଷର ସୈନ୍ୟ ଯୁଦ୍ଧ ନିମିତ୍ତ ଉତ୍ସୁକ ହୋଇ ରହିଛନ୍ତି । କୌରବପକ୍ଷୀୟ ସେନାବାହିନୀ ଆଡ଼କୁ ଚାହିଁବାମାତ୍ରେ ମୋର ସମସ୍ତ ଉତ୍ସାହ ଭାଙ୍ଗିଗଲା । ଭୟ ବା କାତରତା ହେତୁ ନୁହେଁ, ଆତ୍ମୀୟ ବନ୍ଧୁସ୍ୱଜନମାନଙ୍କ ମୋହରେ ମୁଁ ମୋହିତ ହୋଇଗଲି । ଆଖି ପାଇବା ପର୍ଯ୍ୟନ୍ତ ସୈନ୍ୟବାହିନୀ ଆଡ଼କୁ ଚାହିଁ ଦେଖିଲି ସମସ୍ତେ ମୋର ସମ୍ବନ୍ଧୀୟ ହିଁ ଦେଖାଗଲେ । ସେମାନଙ୍କ ଆଗରେ ସେନାପତି, ଶ୍ୱେତକେଶ ଶ୍ମଶ୍ରୁଶୋଭିତ, ସାକ୍ଷାତ୍ ବୀରମୂର୍ତ୍ତି ପ୍ରଧାନ ସୈନ୍ୟସଂଚାଳକ ପିତାମହ ଭୀଷ୍ମ ଠିଆ ହୋଇଛନ୍ତି । ସେ ଆମର ପିତାମହ । ନିଜର ପୁଅଭଳି ସେ ଆମ୍ଭମାନଙ୍କୁ ପାଳନପୋଷଣ କରିଥିଲେ । ଆମ୍ଭେମାନେ ଧୂଳିଧୂସରିତ ହୋଇ ତାଙ୍କ କୋଳରେ ବସି ତାଙ୍କ ଶ୍ୱେତବସ୍ତ୍ରକୁ ମଳିନ କରୁଥିଲେ ମଧ୍ୟ ସେ ପ୍ରେମରେ ଆଲିଙ୍ଗନ କରି ଆମ ମୁଖରେ ଚୁମ୍ବନ ଦେଉଥିଲେ । କେତେ ସ୍ନେହରେ ସେ ଆମକୁ ତାଙ୍କର ବିସ୍ତୃତ ବକ୍ଷରେ ଚାପି ଧରୁଥିଲେ । ଆଜି ତାଙ୍କର ସହିତ ଯୁଦ୍ଧ କରିବି, ଆଉ ସେହି ବକ୍ଷଦେଶକୁ ବାଣବିଦ୍ଧ କରିବି । ଏହା ମୁଁ ପାରିବିନାହିଁ । ମୁଁ ରାଜ୍ୟଲୋଭରେ ଏଭଳି କ୍ରୁର କର୍ମ କରିପାରିବି ନାହିଁ ।

ପିତାମହ ଭୀଷ୍ମଙ୍କ ନିକଟରେ ବୀରତା ଓ ବ୍ରହ୍ମତେଜର ସାକାର ମୂର୍ତ୍ତିସ୍ୱରୂପ ଦୁର୍ବଳଶରୀର ପୂଜନୀୟ ବିପ୍ରଦେବ ହେଉଛନ୍ତି ଆମର ଗୁରୁଦେବ ଦ୍ରୋଣ । ସେହି ଆଚାର୍ଯ୍ୟଙ୍କ କୃପାରୁ ଆମକୁ ସମସ୍ତ ଅସ୍ତ୍ରଶସ୍ତ୍ର ଶିକ୍ଷା ମିଳିଛି । ମୋତେ ଶ୍ରେଷ୍ଠ ବଳବାନ୍ ବୀର ଓ ତ୍ରିଲୋକବିଜୟୀ ଭାବେ ପ୍ରସିଦ୍ଧ କରିବାରେ ଏହି ଗୁରୁ

Digitized by srujanika@gmail.com

ଭଗବାନ ଗୌତମନନ୍ଦ ଦ୍ରୋଣଙ୍କ ଅବଦାନ ଅବିସ୍ମରଣୀୟ । ସେ ଆମ୍ଭମାନଙ୍କୁ କେତେ ଆଦର କରୁଥିଲେ । ଏହି ସମଦର୍ଶୀ ଆଚାର୍ଯ୍ୟ ବିଶେଷ କରି ମୋତେ ଅଧିକ ଆଦର ଓ ସମର୍ଥନ କରୁଥିଲେ । ତାଙ୍କର ଚରଣତଳେ ପୁଷ୍ପାଞ୍ଜଳି ଦେଇ ପ୍ରଣାମ କଲାବେଳେ ସେ କହନ୍ତି—'ବତ୍ସ ! ଆୟୁଷ୍ମାନ୍ ହୁଅ ! ଆଜି ସେହି ଗୁରୁଦେବଙ୍କ ସହିତ କ'ଣ ଯୁଦ୍ଧ କରିବି ? ଆଜି ପୁଷ୍ପ ସ୍ଥାନରେ ବାଣଦ୍ୱାରା ରକ୍ତାକ୍ତ ଶରୀରକୁ ତାଙ୍କର ଦେଖି ପାରିବି ? ଏଭଳି ପାପକାର୍ଯ୍ୟ ମୁଁ ଏଇ ହାତରେ କେବେହେଲେ କରିପାରିବି ନାହିଁ ।'

ଏହି ସୂତପୁତ୍ର କର୍ଣ୍ଣ କ୍ରୂର ହେଲେ ମଧ୍ୟ ସର୍ବଦା ଆମ ସହିତ ପ୍ରତିସ୍ପର୍ଦ୍ଧା କରନ୍ତି; ତଥାପି ସେ ଆମର ସାହାଧ୍ୟାୟୀ ଭାଇ । ଆମେ ସମସ୍ତେ ଏକ ଆଚାର୍ଯ୍ୟଙ୍କର ଶିଷ୍ୟ । ରାଜନ୍ ! ସେ ପର୍ଯ୍ୟନ୍ତ ମୁଁ ଜାଣି ନ ଥିଲି ଯେ, ସେ ଆମର ଗୁରୁଭାଇ ନୁହେଁ, ସହୋଦର ବଡ଼ଭାଇ । ମହାଭାଗ କର୍ଣ୍ଣ ସୂତପୁତ୍ର ନୁହଁନ୍ତି; କିନ୍ତୁ ଆପଣଙ୍କଠାରୁ ଜ୍ୟେଷ୍ଠ ଶ୍ରେଷ୍ଠ ଓ ସମ୍ମାନୀୟ ଶ୍ରଦ୍ଧେୟ ଆର୍ଯ୍ୟବନ୍ଧୁ । ସେ ପର୍ଯ୍ୟନ୍ତ ମୁଁ ତାଙ୍କୁ ଜଗତର ଅଦ୍ୱିତୀୟ ବୀର ଓ ମୋର ଏକମାତ୍ର ପ୍ରତିସ୍ପର୍ଦ୍ଧୀ ବୀର ବୋଲି ଭାବିଥିଲି । ମୁଁ ତାଙ୍କର ଖ୍ୟାତିରେ ଭୟଭୀତ ହେଉଥିଲେ ମଧ୍ୟ ଜୀବନରୁ ମାରିଦେବା କଥା କେବେହେଲେ ମନରେ ଭାବି ନ ଥିଲି । ତାଙ୍କ ପାଖରେ ମୋର ଗୁରୁପୁତ୍ର, ଅଶ୍ୱତ୍ଥାମା ଠିଆ ହୋଇଛନ୍ତି । ସେ ସହୋଦର ଭାଇ ଭଳି । ବିଦ୍ୟା, ବର୍ଣ୍ଣ, ବୟସ, ବଳ ପରାକ୍ରମରେ ସେ ମୋଠାରୁ ବଡ଼, ମୋର ପୂଜନୀୟ ଓ ସମ୍ମାନୀୟ । ବ୍ରାହ୍ମଣ ହୋଇ ମଧ୍ୟ ସେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଓ ଯୁଦ୍ଧ ନିମିତ୍ତ ଉତ୍ସୁକ ହୋଇ ରହିଛନ୍ତି । ତାଙ୍କୁ ହତ୍ୟା କରିବା ପରେ ଯେଉଁ ରାଜ୍ୟ ଲାଭ ହେବ, ତାହା ବ୍ରହ୍ମରକ୍ତରେ ରକ୍ତାକ୍ତ ଓ ଭୂତପ୍ରେତଙ୍କ ଭୋଗ୍ୟ ହୋଇପାରିବ । ସେହି ରାଜ୍ୟ ଭୋଗରେ ଆମେ ସୁଖୀ ହେବା କିପରି ? ମୁଁ ଗୁରୁପୁତ୍ର ଓ ବ୍ରାହ୍ମଣଙ୍କୁ କେବେହେଲେ ମାରିପାରିବି ନାହିଁ ।

ଆମର ମାମୁଁ ଶଲ୍ୟ ଠିଆହୋଇଛନ୍ତି । ସେ ଆମର ସାନ ମା' ନକୁଳ ଓ ସହଦେବଙ୍କ ଜନନୀ ମାଦ୍ରୀଙ୍କ ଭାଇ । ମଦ୍ର ଦେଶରୁ ଯେତେବେଳେ ସେ ଆମ୍ଭମାନଙ୍କୁ ଦେଖିବା ପାଇଁ ଆସନ୍ତି, ସେତେବେଳେ ନାନାପ୍ରକାର ସୁନ୍ଦର ସୁନ୍ଦର ଉପହାର ଆଣନ୍ତି । ଦୂରରୁ ତାଙ୍କୁ ଦେଖିବାମାତ୍ରେ ମା'କୁନ୍ତୀଙ୍କ କୋଳରୁ ଡେଇଁ ପଡ଼ି ଦୌଡ଼ି ଦୌଡ଼ି ଯାଇ ତାଙ୍କୁ କୁଣ୍ଢାଇ ଧରୁଥିଲି । ସେ ଆମକୁ କାଖେଇ ପୁଅ ଭଳି ଆଦର କରୁଥିଲେ, ମୁହଁରେ ଚୁମା ଦେଇଥିଲେ, ଆଉ ଉପହାର ସବୁ ଆଗରେ ଥୋଇ କହୁଥିଲେ—'ବାବୁ, ଅର୍ଜୁନ ! କହ, ତୁ କେଉଁଟା ନେବୁ ?' ମୁଁ ସେଥିରୁ ଗୋଟାଏ ଦୁଇଟା ଝାମ୍ପିନିଏ, ସେ ହସନ୍ତି ଓ ସ୍ନେହରେ ଗାଲକୁ ଚିପି ଦିଅନ୍ତି । ସେ ଆଜି ଧନୁଶର ଧରି ଆମର ପ୍ରାଣନେବା ନିମିତ୍ତ ଉଭା ହୋଇଛନ୍ତି ।

Digitized by srujanika@gmail.com

ମାମୁଁ ତ ଖୁସିରେ ମଧ୍ୟ ଭଣଜାଙ୍କୁ ମାରନ୍ତି ନାହିଁ । ସେ ପଛେ ମୋତେ ମାରନ୍ତୁ, ମୁଁ କିନ୍ତୁ ତାଙ୍କ ଉପରେ ଅସ୍ତ୍ରପ୍ରୟୋଗ କରିପାରିବ ନାହିଁ ।

ଏ ହେଉଛନ୍ତି ଦୁର୍ଯ୍ୟୋଧନ । ତାଙ୍କର ପ୍ରକୃତି କ୍ରୂର ଓ ସ୍ୱଭାବ ଅତୀବ ମନ୍ଦ କିନ୍ତୁ କ'ଣ କରାଯିବ ? ନିଜର ଆଙ୍ଗୁଳିଟିଏ ବଙ୍କା ବା ବିକୃତ ହେଲେ ତାକୁ କ'ଣ କାଟିଦେଇ ପାରିବା ? ଆଖିଟା କଣା ହୋଇଗଲେ ବା କାନଟା କାଲା ହୋଇଗଲେ କ'ଣ କରିବା ? ଯାହାହେଲେ ବି ସେ ମୋର ଭାଇ ଓ ବୟସରେ ମୋଠାରୁ ବଡ଼ । ସେ, ସତରେ ନ ହେଲେ ବି, ଶିଷ୍ଟାଚାର ଦୃଷ୍ଟିରୁ ମୋତେ ଆଦର କରନ୍ତି । ଆଜି ସେ ସମ୍ରାଟ ପଦରେ ଆସୀନ । ଏଗାର ଅକ୍ଷୌହିଣୀ ସେନାର ପ୍ରଭୁ । ତାକୁ ହତ୍ୟା କରି ତାହାର ଭୁକ୍ତାବଶିଷ୍ଟ ଭାବେ ରାଜ୍ୟ ଲାଭ କରି ମଧ୍ୟ ଆମେ କଣ ସୁଖୀ ହୋଇପାରିବା ? ତାର ରାଣୀମାନଙ୍କୁ ବିଧବା କରାଇ ସେଇମାନଙ୍କ ଉଷ୍ଣନିଃଶ୍ୱାସରେ ଆମର ହୃଦୟ କ'ଣ ସିଝିଯିବ ନାହିଁ ? ଯଦି ଦୁର୍ଯ୍ୟୋଧନ ସମ୍ରାଟଭାବେ ରହିଲେ ସୁଖୀ ହେବ, ତାହା ହେଉ । ଆମ୍ଭେମାନେ ବର୍ତ୍ତମାନ ପୁଚ୍ଛା ଯେପରି ଭିକ୍ଷା କରି ଚଳି ଆସୁଛୁ ସେହିପରି ଜୀବନର ଅବଶିଷ୍ଟ ସମୟ କଟାଇ ନେବା । କେତେଦିନ ବଞ୍ଚିବା ଯେ ସେଥିପାଇଁ ଏ ଭଳି କ୍ରୂର କର୍ମ କରିବା । ନିଜର ଭାଇକୁ ମାରି ବଂଶର କଳଙ୍କ ସାରାଜୀବନ ମୁଣ୍ଡାଇବା କାହିଁକି ? ଏହିପରି ବନ୍ଧୁବାନ୍ଧବମାନଙ୍କୁ ଦେଖି ମୋର ମୋହ ଜାତ ହେଲା । ମୁଁ ଗାଣ୍ଡିବ ଧନୁ ଥୋଇଦେଲି । କବଚ, ତୂଣୀର ସବୁ କାଢ଼ି ଫିଙ୍ଗିଦେଲି । ସାରଥି ଶ୍ୟାମସୁନ୍ଦରଙ୍କୁ କହିଲି—ବାସୁଦେବ ! ମୋ ରଥ ହସ୍ତିନାକୁ ଫେରେଇ ନେଇ ଚାଲ ।

ବିସ୍ମିତ ହୋଇ ସେ କହିଲେ—'କାହିଁକି ? ସେଠାରେ କ'ଣ କିଛି ଭୁଲି ଆସିଲେ କି ? ଯୁଦ୍ଧ ଆରମ୍ଭବେଳେ ତୁମର କ'ଣ ହେଲା ?' ଅନ୍ୟମନସ୍କଭାବେ ଯୁଦ୍ଧ କରିବିନାହିଁ ବୋଲି ଉତ୍ତର ଦେବାରୁ ସେ ଆଖି ତରାଟି, ଶୁଷ୍କହାସ ହସି କହିଲେ —କଣ ଭୟ ଲାଗୁଛି କି ? ତୁମେ ଏଭଳି ବୁଢ଼ା ବୁଢ଼ୀ ରହିଛ, ମୁଁ ଜାଣିବି କିମିତି ?'

ଶ୍ରୀକୃଷ୍ଣଙ୍କ ଉତ୍ତର ଶୁଣି ଅତ୍ୟନ୍ତ କ୍ରୋଧରେ ସହିତ କହିଲି 'ଘନଶ୍ୟାମ ! ଆପଣ ମୋତେ ହସାନ୍ତୁ ନାହିଁ । ଶୂଳପାଣି ଭଗବାନ ଭୂତନାଥଙ୍କୁ ଯେ ଯୁଦ୍ଧରେ ସନ୍ତୁଷ୍ଟ କରିଛି, ସେ ଏହି ମର୍ତ୍ତ୍ୟର ଅଧିବାସୀଙ୍କୁ ଭୟ କରିବ କି ? ଯେ ଏକା ଏକା ନିବାତ କବଚଙ୍କୁ ଏବଂ ହିରଣ୍ୟପୁରବାସୀଙ୍କ ଦେବଗଣ ଅବଧ ଦୈତ୍ୟମାନଙ୍କୁ ସଂହାର କରିପାରିଛି, ସେହି ଅର୍ଜୁନ ମାନବକୁ କେବେହେଲେ ଡରିବ ନାହିଁ । ଭୟରୁ ନୁହେଁ, ଦୟାବଶତଃ ମୁଁ ଏହି ବନ୍ଧୁବାନ୍ଧବମାନଙ୍କୁ ମାରିବା ପାଇଁ ଇଚ୍ଛା କରୁନାହିଁ ।

Digitized by srujanika@gmail.com

ଶ୍ୟାମସୁନ୍ଦର ଅଟ୍ଟାଳିଆ ସ୍ୱରରେ କହିଲେ—'ଭାଇ ! ତୁମେ ତ ବଡ଼ ଦୟାବାନ୍ ଜଣାପଡ଼ୁଛ । ସେହିଭଳି ଦୟାକରି ମହାରାଜ ପାଣ୍ଡୁଙ୍କୁ ବଞ୍ଚାଇଲ ନାହିଁ କାହିଁକି ?' ଏହା ଶୁଣି ମୁଁ କହିଲି—'ସେ ସମୟରେ ମୁଁ ଖୁବ୍ ଛୋଟ ଥିଲି । ବଡ଼ ହୋଇଥିଲେ ମଧ୍ୟ କ'ଣ କରିଥାନ୍ତି । କାଳ ଉପରେ କାହାର ହାତ ଅଛି ? ଅବଶ୍ୟମ୍ଭାବୀ ମୃତ୍ୟୁରୁ କାହାକୁ କିଏ ବଞ୍ଚାଇ ପାରିବ ?' ଶ୍ରୀକୃଷ୍ଣ ପଚାରିଲେ ଯଦି ତୁମେ ମୃତ୍ୟୁଠାରୁ କାହାରିକୁ ରକ୍ଷା କରି ପାରିବ ନାହିଁ, ତେବେ ଡରୁଛ କାହିଁକି ? ଏଠାରେ ସମବେତ ହୋଇଥିବା ଲୋକେ କ'ଣ ଅମର ରହିବେ ? ତୁମେ ଦୟା କରି ଛାଡ଼ିଦେଲେ ସେମାନେ କ'ଣ ଅଜର ଅମର ହୋଇ ରହିବେ ?' ମୁଁ ସେଇଠୁ ଜୋର ଦେଇ କହିଲି—ନିଜର ସ୍ୱାଭାବିକ ମୃତ୍ୟୁ ହେତୁ ଯେ ମରିବ ତା କଥା ଅଲଗା । ଆମେ ବୃଥାଟାରେ ସେମାନଙ୍କୁ ହତ୍ୟା କରିବା କାହିଁକି ? କାଳକବଳରେ ପଡ଼ି ଦିନେ ଏମାନେ ମରିବେ, ସେଥିରେ ଆମର ପାପ ହେବ ନାହିଁ ।

ମୋ କଥା ଶୁଣି ସେ ହସି ହସି କହିଲେ—'ଭାଇ ଅର୍ଜୁନ ! ତୁମେ ବୁଝିପାରୁ ନାହିଁ । ଏତେ ଦିନ ସାଙ୍ଗରେ ରହି ମଧ୍ୟ ତୁମେ ଅଜ୍ଞାନ ହୋଇ ରହିଗଲ । ମୁଁ ହେଉଛି ସେହି କାଳ । ମୁଁ ସମସ୍ତଙ୍କୁ ଆଜି ସଂହାର କରିବା ନିମିତ୍ତ ଆସିଅଛି । ମୁଁ ତୁମକୁ ନିମିତ୍ତ କରି ସମସ୍ତଙ୍କୁ ସଂହାର କରୁଛି । ତୁମର କି ଶକ୍ତି ଅଛି ଯେ, ତୁମେ ଭୀଷ୍ମ, ଦ୍ରୋଣ ଭଳି ବୀରଙ୍କ ସମ୍ମୁଖରେ ଠିଆ ହୋଇପାରିବ ? ତୁମରି ରଥରେ ବସି ମୁଁ ସମସ୍ତଙ୍କୁ ନିସ୍ତେଜ ଓ ମୃତବତ୍ କରି ଦେଉଛି । ତୁମେ ଯୁଦ୍ଧ ନ କଲେ ମଧ୍ୟ ଏମାନେ ସମସ୍ତେ ମରିବେ । ତୁମେ ଯୁଦ୍ଧ କରିବନାହିଁ, ଏହା ହୋଇ ନ ପାରେ । ତୁମରି ହାତରେ ସେମାନଙ୍କର ମୃତ୍ୟୁ ହେବ ବୋଲି ମୁଁ ସିଦ୍ଧାନ୍ତ କରିଛି । ଅହଙ୍କାରବଶତଃ ତୁମେ ଯୁଦ୍ଧରୁ ଓହରିଯିବା ନିମିତ୍ତ ଇଚ୍ଛାକଲେ, ତୁମର ବେଗବତୀ ଇଚ୍ଛା ତୁମକୁ ସହସା ସେହି କାର୍ଯ୍ୟରେ ନିଯୁକ୍ତ କରିବ । ଏମାନେ ସମସ୍ତେ ମରିସାରିଛନ୍ତି । କେବଳ ତୁମକୁ ପ୍ରତିଷ୍ଠିତ କରିବା ନିମିତ୍ତ ଓ ତୁମର ସମ୍ମାନ ପାଇଁ ତୁମରି ବାଣରେ ଏମାନଙ୍କୁ ମୁଁ ମାରିବା ପାଇଁ ଇଚ୍ଛାକରୁଛି । ସେଥିପାଇଁ ତୁମେ କାପୁରୁଷତା ପରିତ୍ୟାଗ କରି ଓ ମୋ କଥା ଅନୁସାରେ ଯୁଦ୍ଧ କର ।'

ସେତେବେଳେ ଇଚ୍ଛା ନ ଥାଇ ମଧ୍ୟ ମୁଁ ଯୁଦ୍ଧରେ ପ୍ରବୃତ୍ତ ହେଲି । ତାଙ୍କର ଯୁକ୍ତିପାଖରେ ମୁଣ୍ଡ ନୁଆଁଇବାକୁ ପଡ଼ିଲା । ହେ ରାଜନ ! ସେ ମୋ ରଥରୁ ଯୁଦ୍ଧରେ କାଳଚକ୍ର ଭଳି ବୁଲୁଥିଲେ । ବିଜୁଳି ମାରିବା ମାତ୍ରେ ଯାହା ଉପରେ ପଡ଼େ, ସେ ଯେପରି ମୃତ୍ୟୁ ବରଣକରେ, ସେହିପରି ଶ୍ରୀକୃଷ୍ଣଙ୍କ ଆଖି ଯାହା ଉପରେ ପଡ଼ୁଥିଲା ସେ ତତ୍‌କ୍ଷଣାତ୍ ହତବୀର୍ଯ୍ୟ ଓ ମୃତବତ୍ ହୋଇଯାଉଥିଲେ । ଯୁଦ୍ଧରେ

Digitized by srujanika@gmail.com

କୌରବପକ୍ଷ ସମସ୍ତ ଶକ୍ତି ଲଗାଇ ନାନାବିଧ ଅମୋଘ ଅସ୍ତ୍ରଶସ୍ତ୍ର ନେଇ ମୋ ଉପରେ ଆକ୍ରମଣ କରିଥିଲେ; କିନ୍ତୁ ଶ୍ରୀକୃଷ୍ଣଙ୍କ କୃପା ହେତୁ କୌଣସି ଅସ୍ତ୍ର ମୋ ଦେହରେ ବାଜି ନ ଥିଲା । ରଥୀ ମହାରଥୀମାନଙ୍କର ବାଣ ବୃଷ୍ଟି ଗୋବର୍ଦ୍ଧନଧାରୀଙ୍କ ଦୟାରୁ ବ୍ୟର୍ଥ ହୋଇ ଯାଇଥିଲା । ନୃସିଂହ ଭଗବାନ ନିଜର ତୀକ୍ଷ୍ଣ ନଖରେ ହିରଣ୍ୟକଶିପୁର ବକ୍ଷ ବିଦାରଣ କରିଥିଲେ; କିନ୍ତୁ ଶ୍ରୀକୃଷ୍ଣ ଦୃଷ୍ଟିପାତମାନେ ସମସ୍ତଙ୍କୁ ହୃଦୟହୀନ, ବଳହୀନ ଓ ଆୟୁହୀନ କରି ଦେଉଥିଲେ । ପ୍ରହ୍ଲାଦର ହତ୍ୟା ପାଇଁ ହିରଣ୍ୟକଶିପୁର ଯେପରି ବିବିଧ ଉପାୟ ଅବଲମ୍ବନ ନିମିତ୍ତ ଆଦେଶ ପ୍ରଦାନ କରିଥିଲା, ସେହିପରି ଦୁର୍ଯ୍ୟୋଧନଙ୍କୁ ପ୍ରସନ୍ନ କରିବା ନିମିତ୍ତ ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ ଆଦି ସେନାପତିମାନେ ନାନାପ୍ରକାର ଅମୋଘ ଅସ୍ତ୍ରଶସ୍ତ୍ରଦ୍ୱାରା ମୋତେ ପରାସ୍ତ କରିବାକୁ ଆପ୍ରାଣ ଚେଷ୍ଟା କରିଥିଲେ; କିନ୍ତୁ ସେସବୁ ଅସ୍ତ୍ରଶସ୍ତ୍ର ବ୍ୟର୍ଥ ହୋଇ-ଯାଇଥିଲା । ମୋର କୌଣସି କ୍ଷତି ସେମାନେ କରିପାରିଲେ ନାହିଁ । ଯେ ମୋ ରଥ ଉପରେ ବସି ମୋତେ ରକ୍ଷା କରୁଥିଲେ, ଶତ୍ରୁମାନଙ୍କ ତେଜ ଓ ବଳକୁ ହରଣ କରୁଥିଲେ, ମୋତେ ବାଣରୁ ରକ୍ଷା କରୁଥିଲେ, ଆଜି ସେ ମୋତେ ଗଭୀର ସମୁଦ୍ର ମଧ୍ୟରେ ଛାଡ଼ିଦେଇ ଅଦୃଶ୍ୟ ହୋଇଗଲେ । ମୋ ଆଗରୁ ସେ ଉଭେଇ ଗଲେ । ତାଙ୍କ ବିନା ଏ ସଂସାର ଶୂନ୍ୟ ଦେଖାଯାଉଛି । ରାଜନ୍ ! ବର୍ତ୍ତମାନ ଏ ସଂସାର ଅନ୍ତଃସାର ଶୂନ୍ୟ ହୋଇଯାଇଛି । ଆମର ଭଲ ମନ୍ଦ ବିଷୟ ପଚାରିବା ପାଇଁ ଆଉ କେହି ନାହିଁ ।' ଅର୍ଜ୍ଜୁନ ଏହିପରି କହୁଁ କହୁଁ ଉଚ୍ଚସ୍ୱରରେ କାନ୍ଦି ଉଠିଲେ ।

## ଛପ୍‌ପୟ

ବାର ବାର ଯେଉଁ କହେଁ ଫେରେଁ ରଣମହଁ ନେଁ
ମୋ କୁଁ ।
ଶତ୍ରୁପକ୍ଷ କେ ଅସ୍ତ୍ର ପରସି ପାଓତ୍ୱ ନହି ତୋକୁଁ ।
ଦରସାଓଁ ନିଜ କଲା ବିବିଧ ବିଧି ରଥକୁଁ ହାଁକେ ।
ତକେ ତେଜ ବଲ ବୀର ଜାହି ତରଚ୍ଛେ ହେଁ ତାକେଁ ॥
ରାଜନ୍ ! ରଣମେଁ କାଲ ବନି ସଂହାରେ ସବହୀଁ ଜନେ ।
ଅବନି ତ୍ୟାଗି ଅବ ଅଖିଳପତି, ବରି ବୈକୁଣ୍ଠବାସୀ ବନେ ॥



Digitized by srujanika@gmail.com

## ଶ୍ରୀକୃଷ୍ଣଙ୍କ ରଥଚାଳନାରେ
## ଅର୍ଜ୍ଜୁନଙ୍କ ଅନୁତାପ

ସୌଚଢ୍ୟ ବୃତଃ କୁମତନାମୃଦ ଈଶ୍ୱରେ ମେ
ଯତ୍ପାଦପଦ୍ମମଭବାୟ ଭଜନ୍ତି ଭବ୍ୟାଃ ।
ମାଂ ଶ୍ରାନ୍ତବାହମରୟୋ ରଥିନୋ ଭୁବିଷ୍ଠଂ
ନ ପ୍ରାହରନ୍ୟଦନୁଭାବନିରସ୍ତଚିତ୍ତାଃ ।

( ଭାଗବତ ୧ । ୧୫ । ୧୭ )

### ଛପ୍ପୟ

ଜିନକେ କମଲ ସମାନ, ପୂଜି ପଗ ମୁନି ନ ଅଘାଓଁ ।
ହୃଦୟକମଲ ମହଁ ଧ୍ୟାଇ, ପାର ଭବ ସାଗର ଜାଓଁ ।।
ନହି ପୂଜେ ପଦପଦ୍ମ ନିନ୍ଦ୍ୟ କାରଜ କରବାୟୋ ।
ମନ ମୋହନ ତେଁ ମହାମୋହବଶ ରଥ ହିଁ କଢ୍ୱାୟୋ ।।
ସମୁଝି ସକେୟା ନହିଁ ଶ୍ୟାମ କୁଁ, ମୋହେୟା ତବ ମେଁ ମନ୍ଦମତି ।
ହାୟ ଲୁଟେୟା ବଞ୍ଚିତ ଭୟୋ, ହୃଦୟ ଫଟତ ମନ ଦୁଃଖିତ ଅତି ।।

ସମ୍ମାନନୀୟ ଗୁରୁଜନଙ୍କ ପାଖରେ ସବୁବେଳେ ରହୁଥିଲେ ହେଲେ ଭୟ କଟିଯାଏ ଓ ସଙ୍କୋଚ ଦୂର ହୋଇଯାଏ । ସେହିପରି ସାଧାରଣ ଲୋକଙ୍କ ସହିତ ମିଳାମିଶା ଓ କଥାବାର୍ତ୍ତା କଲେ ବଡ଼ଲୋକମାନଙ୍କର ଅହଙ୍କାର ଓ ଭେଦଭାବ ଦୂର ହୋଇଯାଏ । ଆମ୍ଭେମାନେ ବଡ଼ମାନଙ୍କର ସେ ପ୍ରକାର ଦୟା ଓ ଉଦାରତା ମଧ୍ୟରେ ସେମାନଙ୍କ ମହତ୍ତ୍ୱ ଭୁଲିଯାଉଁ ଏବଂ ନିଜ ଭଳି ବ୍ୟବହାର କରୁଁ । ଆମକୁ ଛାଡ଼ି ଚାଲିଗଲା ପରେ ସେମାନଙ୍କ ମହତ୍ତ୍ୱ ସ୍ମରଣ ହୁଏ । ସେମାନଙ୍କ ସମସ୍ତ କଥା

Digitized by srujanika@gmail.com

ମାନସପଟରେ ଚଳଚ୍ଚିତ୍ର ଭଳି ନାଚଯାଏ । ଯଦି କେତେବେଳେ ଆମେ କୌଣସି ପ୍ରକାର ଅନୁଚିତ କାର୍ଯ୍ୟ ବିଷୟରେ ପ୍ରସ୍ତାବ କରୁ, ସେତେବେଳେ ସେ ବୁଝାଇବାକୁ ଯାଇ କହନ୍ତି – ଭାଇ, ଏ କାମ ମୋ ପଦ ଓ ପ୍ରତିଷ୍ଠାର ପ୍ରତିକୂଳ, ତାହା ମୋ ସାହାଯ୍ୟରେ କରନାହିଁ । ପରେ ଆମେ ଆନନ୍ଦିତ ହେଉ ଯେ, ଆମକୁ ସେ ପାପ-କାର୍ଯ୍ୟରୁ ରକ୍ଷା କଲେ; କିନ୍ତୁ ଉଦାରତାବଶତଃ ସେ ଯଦି ନିଷେଧ ନ କରି ଆମର ପ୍ରସନ୍ନତା ନିମିତ୍ତ କୌଣସି ଅକାର୍ଯ୍ୟକୁ ଅନୁମୋଦନ କରନ୍ତି, ତେବେ ପରେ ବିଶେଷ ଅନୁତାପ ଆସେ । ଆମେ ନିଜର ସ୍ୱାର୍ଥସିଦ୍ଧି ପାଇଁ ସମ୍ମାନାସ୍ପଦ ଗୁରୁଜନଙ୍କ ଦ୍ୱାରା ଅତୀବ ନିନ୍ଦିତ କାର୍ଯ୍ୟ କରାଇଲୁ ଓ ତାଙ୍କ ପଦମର୍ଯ୍ୟାଦା ପ୍ରତି ଆଦୌ ଧ୍ୟାନ ଦେଲୁ ନାହିଁ । ଏହି ସବୁକଥା ରହି ରହି ହୃଦୟ ଓ ମନକୁ ଆନ୍ଦୋଳିତ କରେ ।

ଭଗବାନଙ୍କୁ ନିଜର ସାରଥି କରାଇ ଅର୍ଜୁନଙ୍କ ମନରେ ଭୀଷଣ ଅନୁତାପ ଜାତ ହୋଇଥିଲା । ସେ ଚାଲିଯିବା ପରେ ତାଙ୍କର ମହତ୍ତ୍ୱ ଏବେ ଜଣା ପଡ଼ିଲା । ଯାହାର ପୂଜା କରିବା ଉଚିତ ଥିଲା ତାଙ୍କୁ ନିଜର ଭୃତ୍ୟ ସେବକ ଓ ସାରଥିତୁଲ୍ୟ ବ୍ୟବହାର କରିଥିବାରୁ ଅର୍ଜୁନଙ୍କ ହୃଦୟ ଭାଙ୍ଗିପଡ଼ିଥିଲା । ଯୁଦ୍ଧପାଇଁ ଉଦ୍ଦିଷ୍ଟ ରଥରେ ସବୁଠୁ ଉଚ୍ଚ ଆସନରେ ରଥୀ ବସେ । ରଥୀଙ୍କ ପଛରେ ରଥର ଧ୍ୱଜ ଦଣ୍ଡ ରହେ । ସେହି ଦଣ୍ଡରେ ପୃଥକ୍ ପୃଥକ୍ ଚିହ୍ନରେ ଚିହ୍ନିତ ବିଶାଳ ପତାକା ଉଡ଼ୁଥାଏ । ସେହି ଧ୍ୱଜରୁ ହିଁ ଆସୁଥିବା ରଥୀର ପରିଚୟ ମିଳେ । ଧ୍ୱଜଦଣ୍ଡ ପଛରେ କେତେକ ଯୋଦ୍ଧା ରହିବାର ସ୍ଥାନ ଥାଏ । ସେମାନେ ପୃଷ୍ଠଭାଗ ରକ୍ଷାରେ ନିଯୁକ୍ତ ରହନ୍ତି । ଦୁଇଚକ ପାଖରେ ଥିବା ସ୍ଥାନରେ ପାର୍ଶ୍ୱ-ରକ୍ଷକମାନେ ରହନ୍ତି । ସମ୍ମୁଖ ଭାଗରେ ଏକ ନିମ୍ନ ସ୍ଥାନରେ ରଥ ବାହକ ସାରଥି ବସେ । ରଥ ପଛରେ ଥିବା ଏକ କ୍ଷୁଦ୍ର ରଥାକାର ସ୍ଥାନରେ ଅସ୍ତ୍ରଶସ୍ତ୍ର ସଂରକ୍ଷିତ ଥାଏ । ରଥରେ ଥିବା ଅନ୍ୟାନ୍ୟ ସୈନ୍ୟ ଧର୍ମତଃ ଯୁଦ୍ଧ କରନ୍ତି ନାହିଁ । ରଥରେ ଥିବା ବାଣ, ରଥୀ ଓ ସାରଥିର ସୁରକ୍ଷା ହେଉଛି ସେମାନଙ୍କର କାର୍ଯ୍ୟ । ରଥୀ କେବଳ ପ୍ରତିପକ୍ଷମାନଙ୍କ ସହିତ ଯୁଦ୍ଧ କରେ । ଯୁଦ୍ଧ କୋଳାହଳ ମଧ୍ୟରେ ରଥୀ ସାରଥିକୁ ମୁହଁରେ ଆଦେଶ ଦିଅନ୍ତି ନାହିଁ । କାରଣ ଏକେତ ତ ଯୁଦ୍ଧ କୋଳାହଳ; ଦ୍ୱିତୀୟରେ ରଥୀ ଶତ୍ରୁମାନଙ୍କ ସଂହାର ପ୍ରତି ଏକାଗ୍ରଥାଏ । ତୃତୀୟ ରଥୀର କଥା ଶୁଣାଗଲେ ଶତ୍ରୁ ତଦନୁସାରେ ପ୍ରସ୍ତୁତ ହୋଇଯିବ । ଚତୁର୍ଥରେ ରଥରେ ଥିବା ଅନ୍ୟ ସୈନିକମାନଙ୍କ ଏକାଗ୍ରତାରେ ବାଧା ସୃଷ୍ଟି ହେବ । ଏହି ସବୁ କାରଣରୁ ରଥୀ ମୌନ ରହି ଇଙ୍ଗିତରେ ସାରଥିକୁ ଆଦେଶ ଦିଅନ୍ତି । ରଥୀ କଥାବାର୍ତ୍ତା କେବଳ ଶତ୍ରୁ ସହିତ କରନ୍ତି । କିନ୍ତୁ ରଥର ସମସ୍ତେ ରଥୀର ସଙ୍କେତରେ ପରିଚାଳିତ ହୁଅନ୍ତି । ଏହା ହିଁ ତତ୍କାଳୀନ ରଥ ଓ ରଥୀର ଅବସ୍ଥା ।

Digitized by srujanika@gmail.com

ସାରଥିର ଦୁଇ କାନମୂଳରେ ରଥୀର ଦୁଇପାଦର ବୁଢ଼ା ଅଙ୍ଗୁଳି ରହିଥାଏ । ଯେଉଁ ଆଡ଼କୁ ରଥ ବୁଲାଇବା ଦରକାର ପଡ଼େ ସେହି ପାଖର କାନମୂଳରେ ଅଙ୍ଗୁଳି ଦାବି ଦିଆଯାଏ । ସାରଥି ତୁରନ୍ତ ସେ ପାଖକୁ ରଥ ନେଇଯାଏ । ପଛକୁ ରଥ ବୁଲାଇବା ଆବଶ୍ୟକ ହେଲେ ରଥୀ ଦୁଇ ପାଦରେ ସାରଥୀର ମୁଣ୍ଡକୁ ଜୋରକରି ପଛଆଡ଼କୁ ବୁଲାଇ ଦିଅନ୍ତି ! ଏହାଦ୍ୱାରା ସାରଥୀ ଯଥାଶୀଘ୍ର ରଥ ନେଇ ପଛକୁ ପଳାଇଯାଏ । ଅର୍ଜୁନ ମଧ୍ୟ ଏ ପ୍ରକାର ସମସ୍ତ କାର୍ଯ୍ୟ କରିଥିଲେ । ତାଙ୍କ ପାଦର ବୁଢ଼ା ଅଙ୍ଗୁଳି ଦୁଇଟି ଶ୍ୟାମସୁନ୍ଦରଙ୍କ ଘନକୃଷ୍ଣ କୁଞ୍ଚିତ କେଶ ଆବୃତ କର୍ଣ୍ଣମୂଳ ଉପରେ ରହୁଥିଲା । ଆଜି ସେହି କଥା ମନେ ପଡ଼ି ଅର୍ଜୁନଙ୍କ ନୟନଯୁଗଳରୁ ଅବିରତ ଅଶ୍ରୁଧାରା ବହିବାଲାଗିଛି । ହାୟ, ଯାହାର ପାଦପଦ୍ମକୁ ଋଷି, ମୁନି, ଜ୍ଞାନୀ, ଧ୍ୟାନୀ, ବ୍ରହ୍ମର୍ଷି, ଦେବର୍ଷି ଓ ତପୋଧନ ପୁରୁଷମାନେ ମୋକ୍ଷ ପ୍ରାପ୍ତି ନିମିତ୍ତ ଆଜୀବନ ପୂଜା କରନ୍ତି, ତ୍ରୈଲୋକ୍ୟ ସୁନ୍ଦରୀ ଲକ୍ଷ୍ମୀ, ନିଜର କଠୋର କରଦ୍ୱାର ପୀଡ଼ା ସୃଷ୍ଟି ହେବା ଭୟରେ ଧୀରେ ଧୀରେ ସ୍ପର୍ଶ କରନ୍ତି, ବ୍ରହ୍ମାଦି ଦେବଗଣ ଯେଉଁ ପାଦରଜ ଲାଭ କରି ନିଜକୁ କୃତକୃତ୍ୟ ମନେ କରନ୍ତି, ଭଗବତୀ ଭାଗୀରଥୀ ଗଙ୍ଗା ଯେଉଁ ପାଦପଦ୍ମ ପ୍ରକ୍ଷାଳନ ଜଳରୁ ସୃଷ୍ଟି ହୋଇ ତ୍ରିଲୋକକୁ ପବିତ୍ର କରୁଛନ୍ତି, ସେହି ଅରୁଣଚରଣକୁ ମୁଁ ପୂଜାକରି ପାରିନାହିଁ । ସେହି ଚରଣ ଧୂଳିକୁ ମସ୍ତକରେ ଧାରଣ କରିନାହିଁ; କିନ୍ତୁ ଜଗଦ୍‌ବନ୍ଦ୍ୟ ସେହି ପ୍ରଭୁଙ୍କର ମସ୍ତକକୁ ମୁଁ ମୋର ଏହି କଳୁଷିତ ପାଦରେ ପଦାଘାତ କରିଛି ।

ସେ କେତେ ମହାନ୍, ତାଙ୍କ ମହାନତାର ତୁଳନା ନାହିଁ । ମୁଁ ଯେପରି ଇଚ୍ଛା କରିଛି, ଯାହା ଇଚ୍ଛାକରି ଏବଂ ଯାହା କହିଛି, ସେ ତାହା ଶୁଣିଛନ୍ତି ଓ କରିଛନ୍ତି । ସେ ଅତି ଆଦରରେ ମୋତେ —ଅର୍ଜୁନ ! ଭାଇ ପୃଥାନନ୍ଦନ ! ମିତ୍ରବର ! କୁରୁକୁଳତିଳକ ଆଦି ନାମରେ ସମ୍ବୋଧନ କରନ୍ତି । ସେ ଯେତେବେଳେ ମୋତେ ଭାଇବୋଲି କହି ଡାକନ୍ତି ସେତେବେଳେ ତାଙ୍କ ମଧୁର ବାଣୀରେ ହୃଦୟ ମୋର ପୁରିଉଠେ । ଆଜି ଆଉ ସେଭଳି ଆଦରରେ କିଏ ଡାକିବ ? କିଏ ଆଉ ନାନାପ୍ରକାର କଥା କହି ମୋର ଉତ୍ସାହ ବଢ଼ାଇବ ? ସେ କଥା ମନେ ପଡ଼ିଲେ ଆଜି ଛାତି ଫାଟିଗଲା ଭଳି ଲାଗୁଛି ।

ହସ୍ତିନାପୁରରେ ରାତିରେ ସେ ବହୁତ ସମୟ ପର୍ଯ୍ୟନ୍ତ ଗୃହିଁ ରହି ମୋତେ ଅପେକ୍ଷା କରନ୍ତି । ମୁଁ ପହଞ୍ଚିଲେ ସେ କହନ୍ତି —'ଭାଇ ଅର୍ଜୁନ ! ତୁମେ ନ ଆସିବାଯାଏ ମୋତେ ନିଦ ଲାଗୁନାହିଁ । ବୁଲିବାକୁ କୁଆଡ଼େ ଗଲେ ପିଲାଙ୍କ ଭଳି ଡରି ଡରି ସେ ଆପଣଙ୍କ ପାଖକୁ ଆସନ୍ତି । ଶ୍ରେଷ୍ଠପିଲା ଯେପରି ପିତାମାତା ବା ଗୁରୁଜନଙ୍କ ଅନୁମତି ପ୍ରାର୍ଥନା କରିବାକୁ ଆସେ ସେହିପରି ଆପଣଙ୍କ ଆଗରେ ଅତୀବ ଭୟଭୀତ ଭାବେ ଠିଆହୋଇ ସେ ଧୀରସ୍ୱରରେ କହନ୍ତି-- 'ଅମ୍ଭେମାନେ ବୁଲିଯିବାକୁ ଇଚ୍ଛା

Digitized by srujanika@gmail.com

କରୁନ୍ତୁ । ଆପଣ ଅନୁମତି ଦେଲେ ଯିବୁ ଏବଂ ଶୀଘ୍ର ଫେରିଆସିବୁ । ଆପଣ ଆଦେଶ ଦେବାମାତ୍ରେ ସେ ମୋ ଗଳାରେ ବାହୁ ଭିଡ଼ି ବାହାରି ପଡ଼ନ୍ତି । ସେତେବେଳେ ତାଙ୍କ ଆନନ୍ଦର ସୀମା ନ ଥାଏ ।'

ବସିବା ସ୍ଥାନରେ ଯୋଡ଼େ ଆସନ ଥିଲେ ବି ସେ ମୋହରି ଆସନରେ ଜାକଜୁକ ହୋଇ ବସନ୍ତି । ଆଉ ମୁଁ 'ପିଲାଳିଆମି ଗଲା ନାହିଁ ତୁମର' ବୋଲି କହିଲେ ସେ ହସି ହସି କହନ୍ତି—'ଅର୍ଜୁନ ! ମୁଁ ପିଲାଙ୍କ ଭଳି ହସି ଖେଳି ରହିବାକୁ ଚାହେଁ । ସେହି ପିଲାମି ହେଉଛି ମୋର ସମ୍ପତ୍ତି । ହସ ହେଉଛି ଜୀବନର ବ୍ୟାପାର । ଯାହାର ଆଈ ମରିଯାଏ ସେ କାନ୍ଦେ । ମୋର ତ ଅଜା ଆଈ ବଞ୍ଚିଛନ୍ତି । ଏକ ନୁହେଁ ସାତ ସାତଜଣ ମା ଅଛନ୍ତି । ସମସ୍ତେ ମୋତେ ଅଧିକରୁ ଅଧିକ ଆଦର କରନ୍ତି । ମୁଁ କାନ୍ଦିବ କାହିଁକ ? ମୁଁ କହେ—ତେବେ ଏଇ ଯେ ଷୋଳ ହଜାର ସୈନ୍ୟ ଘରେ ରଖିଛନ୍ତି, ସେମାନଙ୍କ କଥା ? ମୋ' କଥା ଶୁଣି ସେ ହସିଦେଇ କହନ୍ତି— ସେମାନେ କେବେ ଦୁଃଖ କରନ୍ତି ନାହିଁ । କଥା କଥାକେ ହସିଖେଳି ସମୟ କଟାଇବା ସେମାନଙ୍କର ସ୍ୱଭାବ ।

ଦ୍ୱାରକାରେ ଥିବାବେଳେ ଖାଇବା ସମୟ ହୋଇଗଲେ ବାରମ୍ବାର ଲୋକ ତାଙ୍କୁ ଡାକିବାକୁ ଆସିଲେ ସେ ମୋତେ ଖୋଜନ୍ତି । ମୁଁ ଆସି ପହଞ୍ଚିଲେ ମୋତେ ସାଙ୍ଗରେ ନେଇ ଖାଇବାକୁ ଯାଆନ୍ତି । ସାଙ୍ଗରେ ଖାଇବାବେଳେ ସେ ନାନା କଥା କହନ୍ତି । ସେ କହନ୍ତି—ମୁଁ ଏହା କଲି, ତାହା କଲି, ତାକୁ ମାରିଲି, ଏହାକୁ ମରାଇଲି, ତାକୁ ଯମପୁରକୁ ପଠାଇଲି ଇତ୍ୟାଦି । ମୁଁ କହେଁ ତୁମେ ଏଡ଼େ ବଡ଼ ବଡ଼ କଥା କହୁଛ, କିନ୍ତୁ ମାଟି ଖାଇଲାବେଳେ ମା' ଯଶୋଦାଙ୍କୁ ମିଛ କହିଛ । ଭୟରେ ମଥୁରା ଛାଡ଼ି ଦ୍ୱାରକାରେ ରହିଲ । ବାହାଦୂରୀ ଦେଖେଇବା କଥା ତ, ଯେଉଁ ରାଣୀମାନଙ୍କୁ ଛେଳି ଭଳି ଏକାଠି କରିଛ, ସେଇମାନଙ୍କ ଆଗରେ ବାହାଦୂରୀ ଦେଖାଅ । ମୋ ଆଗରେ ଆକାଶ କୁସୁମ ଚାଳିବା ମାଛ କଥା କୁହ ନାହିଁ । ତାଙ୍କର ସ୍ତ୍ରୀମାନଙ୍କ ଆଗରେ ଏଭଳି କଠୋର କଥା କହିଲେ ମଧ୍ୟ ସେ ମୋ ଉପରେ ରାଗନ୍ତି ନାହିଁ । ମା ଗ୍ରେଟ- ପିଲାର ମାଡ଼କୁ ପିତା ଯୁବକ ପୁଅର କଟୁ କଥାକୁ 'ସହିଗଲା ଭଳି ଓ ଉପେକ୍ଷା କଲା ଭଳି, ସେ ମୋ କଥାକୁ ମନରେ ଆଦୌ ଘେନନ୍ତି ନାହିଁ ।

ମହାଭାରତ ଯୁଦ୍ଧ ହେବାର ସିଦ୍ଧାନ୍ତ ପରେ ଆପଣ ମୋତେ ଯୁଦ୍ଧ ନିମନ୍ତ୍ରଣ ଦେବା ପାଇଁ ଦ୍ୱାରକା ପଠାଇଲେ । ଆମକୁ କୌଣସି ରାଜା ସାହାଯ୍ୟ ନ କରନ୍ତୁ ବୋଲି ଦୁର୍ଯ୍ୟୋଧନ ଯଥାସମ୍ଭବ ଚେଷ୍ଟା କରୁଥାଏ । କ୍ଷତ୍ରୀୟମାନଙ୍କର ନିୟମ ହେଉଛି, ଯାହାର ଯୁଦ୍ଧ ନିମନ୍ତ୍ରଣ ପ୍ରଥମେ ମିଳିବ ତାହାରି ପକ୍ଷରେ ସେ ରାଜା

Digitized by srujanika@gmail.com

ଯୁଦ୍ଧରେ ଯୋଗ ଦେବେ । ମୁଁ ଶ୍ୟାମସୁନ୍ଦରଙ୍କୁ ଯୁଦ୍ଧ ନିମନ୍ତ୍ରଣ ଦେବା ନିମିତ୍ତ ଯାଉଥିବାର ଶୁଣି ଦୁର୍ଯ୍ୟୋଧନ ଦ୍ରୁତଗାମୀ ରଥରେ ମୋ ପୂର୍ବରୁ ଦ୍ୱାରକାରେ ପହଞ୍ଚିଗଲେ । ଭଗବାନ୍ ସେତେବେଳେ ଶୋଇଥିଲେ । ଅଭିମାନୀ ଦୁର୍ଯ୍ୟୋଧନ ଶୟନ କକ୍ଷକୁ ଯାଇ ତାଙ୍କ ମୁଣ୍ଡ ପାଖରେ ବସି ରହିଲେ । ଦ୍ୱାରକାରେ ପହଞ୍ଚି ଏ ଖବର ପାଇବା ମାତ୍ରେ ମୁଁ ମଧ୍ୟ ଶୟନ ଗୃହ ଆଡ଼କୁ ଚାଲିଗଲି । ଶ୍ୟାମସୁନ୍ଦର ସୂର୍ଯ୍ୟୋଦୟ ପୂର୍ବରୁ ସର୍ବଦା ଶଯ୍ୟାତ୍ୟାଗ କରନ୍ତି; କିନ୍ତୁ ସେଦିନ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଶୋଇଥାନ୍ତି । ମୁଁ ଯେତେବେଳେ ଯାଇ ତାଙ୍କ ପାଦ ପାଖରେ ବସିପଡ଼ିଲି ସେତେବେଳେ ସେ ରାମ, ରାମ, ନାରାୟଣ, ନାରାୟଣ କହି ଆଖି ମଳି ମଳି ଉଠିଲେ । ଦୁର୍ଯ୍ୟୋଧନଙ୍କୁ ଦେଖି ନ ଦେଖିଲା ପରି ବିଛଣାରେ ବସି ପଡ଼ି କହିଲେ—'ଓହୋ, ଆଜି ସକାଳୁ ସକାଳୁ ଅର୍ଜୁନ ଆସି ଯାଇଛନ୍ତି । ସ୍ୱାଗତମ୍, ସ୍ୱାଗତମ୍ ।' ଏତିକବେଳେ ଦୁର୍ଯ୍ୟୋଧନ କହି ଉଠିଲେ—'ମହାରାଜ ! ମୁଁ ଅର୍ଜୁନଙ୍କ ପୂର୍ବରୁ ଆସି ଆପଣଙ୍କୁ ଅପେକ୍ଷା କରିଛି ।' ଏହା ଶୁଣି ନ ଜାଣିଲା ଭଳି ପଛକୁ ବୁଲିପଡ଼ି ସଂଭ୍ରମତାର ସହିତ ଶ୍ରୀକୃଷ୍ଣ କହିଲେ—'ଆଚ୍ଛା, ଆଚ୍ଛା, ମହାରାଜ ଦୁର୍ଯ୍ୟୋଧନ ମଧ୍ୟ ଆସି ଯାଇଛନ୍ତି । ଧନ୍ୟବାଦ, ଧନ୍ୟବାଦ ।'

ଦୁର୍ଯ୍ୟୋଧନ ଦୃଢ଼ସ୍ୱରରେ କହିଲେ—'ଧନ୍ୟବାଦ କଥା ପରେ ହେବ । ଧାର୍ମିକ କ୍ଷତ୍ରିୟ ପ୍ରଥମ ଆସିଥିବା ଯୁଦ୍ଧ ନିମନ୍ତ୍ରଣ ସ୍ୱୀକାର କରନ୍ତି । ତେଣୁ ଆପଣଙ୍କୁ ମୋ ପକ୍ଷରୁ ଯୁଦ୍ଧ କରିବାକୁ ପଡ଼ିବ ।' ଭଗବାନ୍ କହିଲେ—'ହଁ ଭାଇ, ତାହା ହିଁ ତ ଯୁଦ୍ଧର ନିୟମ । ଦୁଇ ପକ୍ଷରୁ ଯେ ପ୍ରଥମେ ଆସିବ ଧର୍ମାତ୍ମା କ୍ଷତ୍ରିୟ ତାର ନିମନ୍ତ୍ରଣ ସ୍ୱୀକାର କରନ୍ତି; କିନ୍ତୁ ଆପଣ ଦୁହେଁ ମୋର ଏକ ସମ୍ପର୍କୀୟ । ଉଭୟଙ୍କ ସାହାଯ୍ୟ କରିବା ମୋର କର୍ତ୍ତବ୍ୟ । ଆପଣ ପ୍ରଥମେ ଆସିଛନ୍ତି, ମୁଁ ମାନୁଛି; କିନ୍ତୁ ମୁଁ ତ ପ୍ରଥମେ ଅର୍ଜୁନଙ୍କୁ ଦେଖିଲି । ତେଣୁ ଆପଣ ପୂର୍ବରୁ ଆସିବା ଓ ମୋର ପ୍ରଥମେ ଅର୍ଜୁନଙ୍କୁ ଦେଖିବା ଦୁଇଟିଯାକ ସମାନ କଥା । ବର୍ତ୍ତମାନ ମୁଁ ଉଭୟଙ୍କୁ ସମାନଭାବେ ସହାଯ୍ୟ କରିବି । ଦୁର୍ଯ୍ୟୋଧନ କହିଲେ—'ମହାରାଜ ! ଆପଣ ଅନ୍ୟାୟ କରୁଛନ୍ତି । ସମସ୍ତଙ୍କୁ ପଚାରନ୍ତୁ, ମୁଁ ପ୍ରଥମେ ଆସିଛି ।' ଭଗବାନ୍ ଟିକିଏ ରାଗିଯାଇ କହିଲେ—'ମହାରାଜ ! ଆପଣ କି କଥା କହୁଛନ୍ତି । ମୁଁ ଅନ୍ୟର ସାକ୍ଷ୍ୟ କାହିଁକି ନେବି । ଆପଣଙ୍କ କଥାରେ କ'ଣ ମୋର ବିଶ୍ୱାସ ନାହିଁ ? ଆପଣ ନିଶ୍ଚୟ ପ୍ରଥମେ ଆସିଥିବେ; କିନ୍ତୁ ଉଠିବା ମାତ୍ରେ ମୁଁ ପ୍ରଥମେ ଅର୍ଜୁନଙ୍କୁ ଦେଖିଛି । ଦେଖ, ମୋ ପାଖରେ କୋଟିଏ ନାରାୟଣୀ ଯୋଦ୍ଧା ଅଛନ୍ତି । ଗୋଟିଏ ପକ୍ଷରେ ନାରାୟଣୀ ସେନା ଓ ଅନ୍ୟ ପକ୍ଷରେ ମୁଁ ଅଛି । ମୁଁ ଯୁଦ୍ଧରେ ଅସ୍ତ୍ରଧାରଣ କରିବି ନାହିଁ କି ଯୁଦ୍ଧ କରିବି ନାହିଁ । କେବଳ ବାହାର କାମ ଚଳାଇବି । ଏହି ଦୁଇଟିରୁ ଆପଣ ଇଚ୍ଛା ଅନୁସାରେ ଗୋଟିଏ ସ୍ୱୀକାର କରନ୍ତୁ । ଯେ କୌଣସି ଜିନିଷ ପାଇବାରେ ପ୍ରଥମେ ସାନମାନଙ୍କୁ ସୁଯୋଗ

Digitized by srujanika@gmail.com

ଦିଆଯାଏ । ପିଲାମାନଙ୍କ ପରେ ବଡ଼ମାନେ ନିଅନ୍ତି । ତେଣୁ ପ୍ରଥମେ ଏ' ଦୁଇଟିରୁ ଅର୍ଜ୍ଜୁନ କେଉଁଟିକୁ ନେବେ ନିଅନ୍ତୁ ।

ଦୁର୍ଯ୍ୟୋଧନ ଭାବୁଥିଲେ ମୁଁ ପ୍ରାୟ ନାରାୟଣୀ ସେନା ମାଗି ନେବି । ତାହାହେଲେ ସବୁ ମାଟି ହୋଇଯିବ; କିନ୍ତୁ ମୋର ସେନା କ'ଣ ଦରକାର ଥିଲା । ମୁଁ ସାଙ୍ଗେ ସାଙ୍ଗେ କହିଲି—'ଭଗବାନ୍ ! ମୋର ସେନା ଦରକାର ନାହିଁ ମୁଁ ଆପଣଙ୍କୁ ଚାହୁଁଛି ।' ଭଗବାନ୍ ମୋଆଡ଼କୁ ବିସ୍ମିତ ହୋଇ ଚାହିଁ କହିଲେ— ଭାଇ, ଭଲଭାବରେ ଶୁଣିଛ ତ, ମୁଁ ଯୁଦ୍ଧ କରିବି ନାହିଁ । ଯୁଦ୍ଧରେ ଅସ୍ତ୍ରଧାରଣ କରିବି ନାହିଁ । ତୁମେ ମୋହରେ ପଡ଼ିଯାଅ ନାହିଁ । ନିଜର ଭଲ ମନ୍ଦ ଚିନ୍ତା କରି କୌଣସି ଗୋଟିଏ ସ୍ୱୀକାର କର ।' ହଠାତ୍ ଦୁର୍ଯ୍ୟୋଧନ କହିଲେ – 'ମହାରାଜ ! ଆପଣ ବଡ଼ ଗୋଲମାଲ କରୁଛନ୍ତି । ସେ ଯେତେବେଳେ ଆପଣଙ୍କୁ ସ୍ୱୀକାର କରି ନେଇଛି ସେତେବେଳେ ଆପଣ ଏପାଖ ସେପାଖ କରିବା ଉଚିତ୍ ନୁହେଁ । ବର୍ତ୍ତମାନ ଆପଣଙ୍କ ପ୍ରତିଜ୍ଞା ଅନୁସାରେ ସମସ୍ତ ସେନା ମୋର ହେଲା ଆଉ ଆପଣ ଏକା ଅର୍ଜ୍ଜୁନ ଭାଗରେ ରହିଲେ । ଏଥିରେ ଆଉ ଫେରଫାର କରିବା ଠିକ୍ ନୁହେଁ । ମୁଁ ଏହି ସିଦ୍ଧାନ୍ତ ଖୁସିରେ ଗ୍ରହଣ କରୁଛି ।

ଭଗବାନ୍ ହସି ହସି ଅର୍ଜ୍ଜୁନଙ୍କୁ କହିଲେ—'ଆରେ, ମୋ ଭଳି ଅଯୋଗ୍ୟକୁ ନେଇ ତୁମେ ଠକିଗଲ । ଲଢ଼ୁଆ ନାରାୟଣୀ ସେନା ତୁମେ ମାଗିଲ ନାହିଁ କାହିଁକି ? ମୁଁ ଦୃଢଭାବରେ କହିଲି—'ବାସୁଦେବ ! ମୋର ସେନା ଦରକାର ନାହିଁ । ମୁଁ କେବଳ ଆପଣଙ୍କୁ ଚାହେଁ ।' ଦୁର୍ଯ୍ୟୋଧନ ହଠାତ୍ ଆସନରୁ ଉଠି କହିଲେ—'ଯଦୁନନ୍ଦନ ! ଆପଣ ନିଜର ପ୍ରତିଜ୍ଞାରେ ଦୃଢ଼ ରହିବେ । ଆପଣଙ୍କ ସମସ୍ତ ସେନା ମୋର ।' ଏହା କହି ସେ ବଳଦେବଙ୍କ ପାଖକୁ ଚାଲିଗଲେ ।

ଦୁର୍ଯ୍ୟୋଧନ ଚାଲିଯିବା ପରେ ଶ୍ୟାମସୁନ୍ଦର ମୋତେ କୁଣ୍ଢେଇ ପକେଇ କହିଲେ—ଅର୍ଜ୍ଜୁନ ! ତୁମେ ସେନାବାହିନୀ ନ ମାଗି ମୋଭଳି ଅକର୍ମାକୁ କାହିଁକି ଚାହିଁଲ । ମୋ ଦ୍ୱାରା ତୁମେ କି କାମ କରାଇ ପାରିବ । ସେ ସମୟରେ ଶ୍ୟାମସୁନ୍ଦର ମୋର ବୁଦ୍ଧି ହରଣ କରିନେଲେ । ନିଜର ସମସ୍ତ ଐଶ୍ୱର୍ଯ୍ୟ ମୋତେ ଲୁଚାଇଲେ ।' ସେତେବେଳେ ମୋର କହିବା ଉଚିତ ଥିଲା –'ପ୍ରଭୋ ! ମୁଁ ପ୍ରତିଦିନ ଆପଣଙ୍କ ପୂଜା କରିବି । ଆପଣଙ୍କ ଚରଣ ଧୋଇ ପାଦୋଦକ ପାନ କରିବି । ଯୁଦ୍ଧକୁ ଯିବାବେଳେ ଓ ଫେରିବାବେଳେ ନିଜର ଚକ୍ଷୁପଲକରେ ଆପଣଙ୍କ ପାଦପଦ୍ମକୁ ଝାଡ଼ିଦେବି । 'ଆପଣଙ୍କୁ ହୃଦୟ ମନ୍ଦିରରେ ବସାଇ ସର୍ବଦା ପୂଜା କରିବି; କିନ୍ତୁ ଏସବୁ କଥା ନ କହି ମୁଁ କହିଲି –'ଶ୍ୟାମସୁନ୍ଦର ! ମୁଁ ତୁମକୁ ମୋର ସାରଥୀ କରିବାପାଇଁ ଚାହୁଁଛି । ହେ ବାସୁଦେବ ! ଆପଣ ମୋର ସାରଥୀ ହେଲେ, ମୁଁ ଏକା ଏକା ତ୍ରିଲୋକ ବିଜୟ ପାଇଁ ସମର୍ଥ ହୋଇପାରିବି ।

Digitized by srujanika@gmail.com

ରାଜନ୍ ! ସେତେବେଳେ ଯଦି ସେ ମୋତେ ସ୍ନେହରେ ହେଉ ବା କ୍ରୋଧରେ ହେଉ କହିଥାନ୍ତେ ଯେ; ସେ କାମ ମୋ'ଦ୍ୱାରା ହୋଇପାରିବ ନାହିଁ । ସେସବୁ ମାଟକାଡିର କାମ । କିନ୍ତୁ, ସେ ସେପରି ନ କହି ଅତି ଆନନ୍ଦରେ ମୋତେ ପ୍ରଶଂସା କରି କହିଲେ—'ବାଃ, ତୁମେ ଖୁବ୍ ଭଲ କଥା କହୁଛ । ରଥ ଚଳାଇବା ବିଷୟରେ ମୁଁ ବେଶ୍ ପ୍ରବୀଣ । ମୁଁ ତୁମ ରଥ ଚଳାଇବି ।'

ମହାରାଜ ! ଆଜି ମୁଁ ଭାବୁଛି, ସାମାନ୍ୟ ବିଜୟ, ପ୍ରଶଂସା ଓ ପ୍ରତିଷ୍ଠା ପାଇଁ ମୁଁ ଅଖିଳ ଭୁବନର ଈଶ୍ୱରଙ୍କୁ ସାରଥି କାର୍ଯ୍ୟରେ ନିୟୋଜିତ କଲି । ଯାହାର ପାଦପଦ୍ମ ପୂଜା କରି ବଡ଼ ବଡ଼ ମୁନି ଋଷି ମୋକ୍ଷଲାଭ କରନ୍ତି ସେହି ପ୍ରଭୁଙ୍କ ମୁଣ୍ଡରେ ପାଦ ଦେଇ ମୋ ଆଜ୍ଞା ପାଳନ ନିମିତ୍ତ ବାଧ କଲି । ସେ ମଧ ଜଣେ ସାଧୁ ସେବକଭାବେ, ବେତନଭୋଗୀ ଭୃତ୍ୟଭାବେ ମୋର ଆଦେଶ ପାଳନ କଲେ । ଯେଉଁଦିନ ଆପଣଙ୍କ ପୁତ୍ରହନ୍ତା ଜୟଦ୍ରଥର ବଧ ନିମିତ୍ତ ମୁଁ ପ୍ରତିଜ୍ଞା କଲି ସେଦିନଟି କେବେହେଲେ ଏ ଜୀବନରେ ଭୁଲିପାରିବି ନାହିଁ । ମୋର ପ୍ରତିଜ୍ଞା ଥିଲା, ସୂର୍ଯ୍ୟାସ୍ତ ପୂର୍ବରୁ ଜୟଦ୍ରଥକୁ ମାରି ନ ପାରିଲେ ଅଗ୍ନିରେ ପଶି ଜୀବନ ତ୍ୟାଗ କରିବି । ଏଡ଼େ ବଡ଼ ଯୁଦ୍ଧରେ ବହୁ ସୈନ୍ୟଙ୍କ ସହିତ ଦ୍ରୋଣ, କର୍ଣ୍ଣ, ଶଲ୍ୟାଦି ଯୋଦ୍ଧାମାନଙ୍କ ଗହଣରେଥିବା ଜୟଦ୍ରଥକୁ ଖୋଜି ପାଇବା ଓ ମାରିବା ଅତି ଦୁରୂହ ବ୍ୟାପାର ଥିଲା । ସୁମେରୁ ପର୍ବତର କୌଣସି ଏକ ବିଲରେ ଲୁଚିରହିଥିବା ମୂଷାକୁ ଯେପରି ଖୋଜି ବାହାର କରିବା ଅସମ୍ଭବ ସେହିପରି ଜୟଦ୍ରଥକୁ ମୋ ପକ୍ଷରେ ଅସମ୍ଭବ ଥିଲା, କିନ୍ତୁ ଶ୍ରୀକୃଷ୍ଣଙ୍କ ଦୟାରୁ ଅସମ୍ଭବ ପ୍ରତିଜ୍ଞା ମୋର ପୂର୍ଣ୍ଣ ହେଲା ଏବଂ ପୂର୍ଣ୍ଣ ନ ହେଲା ଭଳି କେତେକ ପ୍ରତିଜ୍ଞା ମଧ ଫଳବତୀ ହେଲା ।

ସେ ସାରଥି ହୋଇ ଯେପରି ବୁଦ୍ଧିମତ୍ତାର ପରିଚୟ ଦେଇଥିଲେ ତାହା କୁଳ ପରମ୍ପରାଗତ ସାରଥି ପକ୍ଷରେ ଏକାନ୍ତ ଅସମ୍ଭବ । ଜୟଦ୍ରଥ ବଧ ଦିନ ମୋତେ ସମସ୍ତ ମହାରଥି ଘେରିଗଲେ । ସମସ୍ତେ ଏକ ସଙ୍ଗରେ ଅସଂଖ୍ୟ ବାଣ ମୋ ଉପରେ ବର୍ଷା କଲେ । ସେଦିନ ମୋତେ ମାରି ଜୟଦ୍ରଥର ପ୍ରାଣରକ୍ଷା କରିବା ଥିଲା ସେମାନଙ୍କର ଲକ୍ଷ୍ୟ । ବିଭିନ୍ନ ବ୍ୟୂହରଚନା କରି ସେମାନେ ଜୟଦ୍ରଥକୁ ଏଭଳିଭାବେ ସୁରକ୍ଷିତ ରଖିଥିଲେ ଯେ, ତା'ପାଖକୁ ଯିବା ମୋ' ପକ୍ଷରେ ଅସମ୍ଭବ ହୋଇପଡ଼ିଲା । ମହାରଥୀମାନେ ମୋ' ରଥର ଘୋଡ଼ାମାନଙ୍କୁ ଆଘାତ କରି ଅଚଳ କରିଦେଲେ । ଚାରିପାଖରେ ଅସଂଖ୍ୟ ସୈନ୍ୟ ଓ ବୀର-ଯୋଦ୍ଧାମାନେ ଘେରି ରହିଥିବାବେଳେ ଶ୍ୟାମସୁନ୍ଦର କହିଲେ—'ଅର୍ଜ୍ଜୁନ ! ଏବେ ଆଉ ଘୋଡ଼ାମାନେ ଚାଲିପାରିବେ ନାହିଁ ।' ଏହା ଶୁଣିବାମାତ୍ରେ ମୋ ମୁହଁ ଶୁଖିଗଲା । ମୁଁ ଭାବିଲି—'ଆଜି ମୋର ପ୍ରତିଜ୍ଞା ପୂର୍ଣ୍ଣ ହେବ ନାହିଁ । ମୋତେ ଜୀବନ ଥାଉଁ ଥାଉଁ ଅଗ୍ନିରେ ପ୍ରବେଶ କରିବାକୁ ପଡ଼ିବ ।' ଭୟଭୀତ ହୋଇ

Digitized by srujanika@gmail.com

ବ୍ୟାକୁଳଭାବେ ମୁଁ କହିଲି—'ଶ୍ୟାମସୁନ୍ଦର ! କୌଣସି ଉପାୟରେ ମୋ ରଥକୁ ଜୟଦ୍ରଥ ଆଗକୁ ନେଇଚାଲ ।' ସେ ରୁକ୍ଷସ୍ୱରରେ କହିଲେ —'ଆରେ ତୁମେ କିମିତି କଥା କହୁଛ । ଯେ ଘୋଡ଼ାଗୁଡ଼ାକର ଚାଲିବା ଶକ୍ତି ଥିଲେ ମୁଁ କ'ଣ ଅଟକି ରହନ୍ତି । ତୁମେ କେବେ ଦେଖ ସେମାନଙ୍କର ସମଗ୍ର ଶରୀର ବାଣରେ ଆଚ୍ଛନ୍ନ ହୋଇ ରହିଛି । ସେମାନେ ଅତୀବ ଶ୍ରାନ୍ତ ଓ କ୍ଲାନ୍ତ, ଆଉ ପାଦଟିଏ ମଧ୍ୟ ଆଗେଇ ପାରିବେ ନାହିଁ ।

ମୁଁ ଚକିତ ହୋଇ କହିଲି—'ପ୍ରଭୋ ! ଆଉ କିଛି ଉପାୟ ଅଛି କି ? ମୋ ପ୍ରତିଜ୍ଞା କିପରି ଆଜି ପୂର୍ଣ୍ଣ କରିବ ? ସେ କହିଲେ—ହଁ ଗୋଟିଏ ଉପାୟ ଅଛି । ଯଦି ପର୍ଯ୍ୟାପ୍ତ ଜଳ ମିଳିବ ତେବେ ବାଣ ବାହାର କରି ଏ ଘୋଡ଼ାଗୁଡ଼ାଙ୍କୁ ମାଲିସ୍ କରିଦେଲେ ସେମାନେ ସୁସ୍ଥ ହୋଇ ଉଠିବେ । ଯୁଦ୍ଧଭୂମିର ମଧ୍ୟ ସ୍ଥଳରେ ଏତେ ଜଳ ଆସିବ କେଉଁଠୁ ? କିନ୍ତୁ ସେ ମୋ' ଅନ୍ତଃକରଣରେ ଥାଇ ପ୍ରେରଣା ଦେଲେ । ମୁଁ କହିଲି—'ବାସୁଦେବ ! ଆପଣ ରଥରୁ ଘୋଡ଼ାମାନଙ୍କୁ ଖୋଲିଦିଅନ୍ତୁ । ମୁଁ ଏଇଠି ଏକ ସରୋବର କରିଦେଉଛି ।

ବିସ୍ମୟ ଭାବ ପ୍ରକାଶ କରି ସେ କହିଲେ—'ଆରେ ଭାଇ ! ଚାରିପାଖରେ ଏତେ ଶତ୍ରୁ ଘେରି ରହିଛନ୍ତି । ତୁମେ ତଳକୁ ଓହ୍ଲାଇବାମାତ୍ରେ ଜୀବନରେ ମାରିଦେବେ । ଏ କି କଥା ତୁମେ କହୁଛ ?' ମୁଁ ଦୃଢ଼ତାର ସହିତ କହିଲି— ଦେବକୀନନ୍ଦନ ! ଆପଣ ଥାଉଁ ଥାଉଁ ମୋତେ କେହି ମାରିପାରିବ ନାହିଁ କି ପରାଜିତ କରିପାରିବ ନାହିଁ । ଆପଣ ଆଉ ମୋତେ ପରୀକ୍ଷା କରନ୍ତୁ ନାହିଁ । ଏଠି ଆଉ ବିଳମ୍ବ କରିବା ପାଇଁ ସମୟ ନାହିଁ । ଜୟଦ୍ରଥ ବଧରେ ବିଳମ୍ବ ହୋଇଯାଉଛି ।'

ଏହା ଶୁଣି ଦ୍ୱାରକାନାଥ ହସି ଦେଲେ । ସେ ଘୋଡ଼ାଗୁଡ଼ିକୁ ଖୋଲି-ଦେଲେ । ମୁଁ ଗାଣ୍ଡୀବ ଧନୁକୁ ଟଙ୍କାରି ଭୂଭାଗରେ ଠିଆହୋଇ ପଡ଼ିଲି । ଚାରି-ପାଖରେ ଥିବା ଶତ୍ରୁମାନେ ଦେଖୁଥାନ୍ତି । ମୋ ସାରଥି ଶ୍ୟାମସୁନ୍ଦର ଘୋଡ଼ାଙ୍କ ଦେହରୁ ଟାଣି ଟାଣି ବାଣସବୁ ବାହାରକରି ଭଲଭାବେ ମାଲିସ କରୁଥାନ୍ତି । ଭଗବାନଙ୍କ କରକମଳ ସ୍ପର୍ଶରେ ନିମିଷକେ ଘୋଡ଼ାଗୁଡ଼ିକ ସୁସ୍ଥ ହୋଇଗଲେ । ଏହା ପରେ ଯଦୁକୁଳ ତିଳକ କହିଲେ—ଅର୍ଜୁନ ! ଏବେ ଘୋଡ଼ାଗୁଡ଼ିକ ପାଇଁ ଜଳ ଦରକାର । ମୁଁ ଧନୁରେ ବରୁଣାସ୍ତ୍ର ଯୋଗ କରି ପୃଥିବୀରେ ଛାଡ଼ିଦେଲି । ଦେଖୁ ଦେଖୁ ଆଖି ପିଛୁଳାକେ ଏକ ସ୍ୱଚ୍ଛ ଜଳାଶୟ ସୃଷ୍ଟି ହୋଇଗଲା ।' ଭଗବାନ୍ ସରୋବର ଦେଖି ଖୁସି ହୋଇଗଲେ । ସେ ଘୋଡ଼ାଙ୍କୁ ଜଳ ପିଆଇଲେ । ନିଜେ ଘୋଡ଼ାଙ୍କ ସହିତ ସେହି ଅଗାଧ ଜଳଭିତରକୁ ପଶିଗଲେ । ଭଗବାନ୍ ଘୋଡ଼ାଙ୍କୁ ନେଇ ଜଳରୁ ଉପରକୁ ଆସିଲେ ଏବଂ ମୋତେ ବହୁତ ପ୍ରଶଂସା କଲେ । ମୋର ଏହି ଆଶ୍ଚର୍ଯ୍ୟଜନକ କାର୍ଯ୍ୟ ଦେଖି ଶତ୍ରୁମାନେ ସ୍ତମ୍ଭୀଭୂତ

Digitized by srujanika@gmail.com

ହୋଇ ରହିଗଲେ । ସେମାନେ ମୋତେ ମାରିବା କଥା ଭୁଲିଗଲେ । ଏକଲକ୍ଷ୍ୟରେ ମୋତେ ଓ ଶ୍ୟାମସୁନ୍ଦରଙ୍କ କାର୍ଯ୍ୟକୁ କୌତୂହଳର ସହିତ ଦେଖୁଥାଆନ୍ତି ।

ଭରତକୁଳ ଭୂଷଣ ! ମହାରାଜ ! ଭଗବାନ୍ କେତେ ସଙ୍କଟରୁ ଉଦ୍ଧାର କରିଛନ୍ତି ତାହା କହିବା ସମ୍ଭବ ନୁହେଁ । ମା ଯେପରି ଗର୍ଭସ୍ଥ ବାଳକକୁ ରକ୍ଷା କରେ ସେ ସେହିପରି ମୋତେ ସର୍ବଦା ରକ୍ଷା କରୁଥିଲେ । ସେହି ଜଗତ୍ପତିଙ୍କୁ ମୁଁ ଲୋଭବଶତଃ ପ୍ରଶଂସା ଓ ପ୍ରତିଷ୍ଠା ପାଇଁ ଯୁଦ୍ଧରେ ସାରଥି କରାଇଲି । ଏ ପର୍ଯ୍ୟନ୍ତ ମୋର ଅଭିମାନ ଥିଲା ଯେ, ମୁଁ ମୋ ବାହୁବଳରେ ମହାଭାରତ ଯୁଦ୍ଧରେ ବିଜୟ ଲାଭ କରିଛି । ମୁଁ ତୀକ୍ଷ୍ଣ ବାଣଦ୍ୱାରା ଭୀଷ୍ମ, ଦ୍ରୋଣ, କର୍ଣ୍ଣାଦି ମହାରଥୀମାନଙ୍କୁ ପରାଜିତ କରିଛି । କିନ୍ତୁ, ଏବେ ମୁଁ ବୁଝିଛି ଯେ ସବୁ ବିଜୟ ମୋର ନୁହେଁ । ମୁଁ ମାରି ନାହିଁ, କାଳରୂପୀ ଶ୍ରୀକୃଷ୍ଣ ହିଁ କଟାକ୍ଷପାତମାତ୍ରେ ନିରର୍ଥକ ସମସ୍ତଙ୍କୁ ସଂହାର କରିଛନ୍ତି । ମୁଁ ସେହି ଅର୍ଜୁନ, ଯାହାକୁ ଆଜି ଜଣେ ସାଧାରଣ ଶବର ହରାଇଦେଲା । ଶ୍ରୀକୃଷ୍ଣହୀନ ହୋଇଯିବାରୁ ମୋର ଧନୁର୍ବାଣ ଆଜି ମାଟିଠାରୁ ତୁଚ୍ଛ ନିରର୍ଥକ ହୋଇପଡ଼ିଛି । ମୋର ଅସ୍ତ୍ରଶସ୍ତ୍ର ମୂଲ୍ୟହୀନ ହୋଇଛି । ଆଜି ସେହି ତପସ୍ୱିନୀର ଅଭିଶାପ ସତ୍ୟ ହେଲା । ଆଜି ମୋର ସମସ୍ତ ଅଭିମାନ ଚୂର୍ଣ୍ଣ ହୋଇଗଲା ।

ରାଜନ୍ ! ବର୍ତ୍ତମାନ ଏ ସଂସାରରେ କେବଳ ଅପମାନ ହିଁ ସହିବାକୁ ହେବ, ପାପୀମାନଙ୍କ ଦ୍ୱାରା ପରାଜିତ ହେବାକୁ ପଡ଼ିବ । ଏସବୁ ସହିପାରିବାର ସାମର୍ଥ୍ୟ ଥିଲେ ଏ ପୃଥିବୀରେ ରହନ୍ତୁ, ନୋହିଲେ ଯଥାଶୀଘ୍ର ଉତ୍ତରାଖଣ୍ଡ ଆଡ଼କୁ ସମସ୍ତେ ପ୍ରସ୍ଥାନ କରିବା ଉଚିତ ହେବ । ବର୍ତ୍ତମାନ କଳିଯୁଗ ଆସିଗଲାଣି । ଆଉ ଏ ପୃଥିବୀରେ କ୍ଷଣମାତ୍ର ରହିବା ଉଚିତ୍ ନୁହେଁ । ଏହା କହୁଁ କହୁଁ ଅର୍ଜ୍ଜୁନ କାନ୍ଦିବାକୁ ଲାଗିଲେ ।

## ଛପ୍ପୟ

କହଁ କହଁ । ତକ ପ୍ରଭୋ ! ଶ୍ୟାମ ମୋକ ଅପନାୟୋ ।
ଘୋଡ଼େ ଘାୟଲ ଭୟେ ଚଲେ ନହି ମେଁ ଘବରାୟୋ ॥
ସବ ଶତ୍ରୁ ନିକଟ ଘିରାୟୋ ଡରୟୋ ହରିନେହ ନିହାରୟୋ ।
ସମୁଝି ଶ୍ୟାମ ସଙ୍କେତ ବାଣ ତେଁ ନୀର ନିକାର୍ୟୋ ॥
ହୟ ପ୍ୟାୟେ ତୈରାଇକେଁ, ଶର ନିକାରି ମଲି ଲୋରି ରଥ ।
ଚଲେ, ଶତ୍ରୁ ମୋହିତ କରେ, ଗୟେ ତ୍ୟାଗି ଅବ ହମ
ବିରଥ ॥



Digitized by srujanika@gmail.com